ଏଣିକି ଯେମିତି ଟୁରିଷ୍ଟ ହୋଇ ଦେଖୁଚି
ସେ । ଦେଖୁଚି ବି ତାକୁ ଦେଖୁଥିବା
ନିର୍ଲିପ୍ତ ପ୍ରକୃତିକୁ । ଛାଇଅନ୍ଧାର ସମୁଦ୍ର
ବାଲିରେ ମୁଣ୍ଡରେ ହାତଦେଇ ହତାଶ
ଭଙ୍ଗୀରେ ବସିଥିବା ଯୁବକଟି,
ବିଦେଶୀ କାର୍‌ଟିଏରୁ ଓହ୍ଲେଇ
କଳରୋଳରେ ଦମ୍ଭ ବିଞ୍ଚି ବିଞ୍ଚି ବାଲିକୁ
ଓହ୍ଲେଇ ଯାଉଥିବା ପରିବାରଟି, ଅଥବା
ଟିକକ ଆଗରୁ ନିଃଶବ୍ଦରେ ଲୁହ
ପୋଛୁଥିବା ଏଲି, କେମିତି ଦିଶୁଥିବେ
ସେମାନଙ୍କ ଦୂରନ୍ତ ଆଖିରେ ?
ବୋଧେ କିଛି ଭିନ୍ନ ନୁହଁ ଆଉରି
ଅଗଣିତ ଚିତ୍ରଠାରୁ, ଯାହା ପ୍ରତିକ୍ଷଣ
ଆଙ୍କି ହୋଇ ଲିଭିଯାଉଥାଏ ତାଙ୍କ
ଆଗରେ, ଯୁଗଯୁଗାନ୍ତରରୁ । ଅଳ୍ପ କିଛି
ବେଳ ଲାଗି ହେଉପଛେ ଏଲି
ମନସ୍ଥକଲା ଆପଣାକୁ ଦେଖିବାଲାଗି,
ଦୂର ନକ୍ଷତ୍ରଟିଏ ବା ଦୃଷ୍ଟି ସେପାରି
ସାନ ତରଙ୍ଗଟିଏରେ ଆସୀନ ହୋଇ ।
ନିଜକୁ, ନିଜ ଚାରିଆଡ଼କୁ ଅତୀତ
ଭବିଷ୍ୟତର ଅଧାଲିଭା ଅଥବା ଅସ୍ପଷ୍ଟ
ଛବି ସବୁକୁ ଏକମାତ୍ର ମିଳିଥିବା
ଦୂରବୀନ୍ ଟି...ନେଇ ଦେଖିବାର
ଝୁଙ୍କଟିଏ ତାକୁ ଡୁବାଇଦେଲା
ପରବର୍ତ୍ତୀ କିଛିକ୍ଷଣ ।

# ଇଷ୍ଟରୂପ

(ଉପନ୍ୟାସ)

ଯଶୋଧାରା ମିଶ୍ର

ପ୍ରକାଶକ :
**ଅପୂର୍ବା**
୪୮, ମଧୁସୂଦନ ନଗର,
ଭୁବନେଶ୍ୱର-୭୫୧ ୦୦୧

ପ୍ରଥମ ସଂସ୍କରଣ : ମାର୍ଚ୍ଚ - ୨୦୦୬

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୭୦ଟଙ୍କା

# ISTARUPA

A Novel by **Yashodhara Mishra**

Publisher :
**Apurba**
48,Madhusudan Nagar,
Bhubaneswar - 751 001

First Edition :
March - 2006

Printed at :
Apurba Off-Set,
Bhubaneswar, Pin-751 001

Cover :
Kshirod C. Pati

**Price : Rs.70 /-(Seventy only)**

ମୋ ପିତା ଶ୍ରୀ ଅନୁପ ଚନ୍ଦ୍ର ମହାନ୍ତି ସ୍ମୃତିରେ

ପୁରୁଣା କାଳିଆ କୋଠା ଆଗରେ ଝିଅଟି ସାଇକଲ ରିକ୍ସା ଅଟକାଇ ଓହ୍ଲେଇପଡ଼ିଲା । ଅଣଓସାରିଆ ଖଣ୍ଡିଆ ଖାବରା ପିଚୁ ରାସ୍ତାଟିର ମଝାମଝି ଠିଆହେଲା । ଏଇ ସେ ଘରଟି, ଅବିକଳ ସେମିତି ଅଛି । ରିକ୍ସା ଭଡ଼ା ଦୁଟେଇଦେଇ ଘର ସାମ୍ନାରେ ଯାଇ ପହଞ୍ଚିଲା ବେଳକୁ ସେ ବୁଝୁଥିଲା, ନା ବଦଳି ଯାଇଚି ଘରଟି । ଲମ୍ବ ବାରଣ୍ଡାର ତିନିଟି ଖମ୍ବ ଉପରେ ଢେଉଢ଼େଉକା ଗୋଲେଇ ଛାତ ଜଣା ପଡୁନାହିଁ । ଦୁଇପାଖ କାନ୍ଥ ବୁଜାହୋଇ ମଝିରେ ଲୁହା କଲାପସିବଲ୍ ଗେଟ୍ ଲଗାଯାଇଚି ।

ଳାଁ ଭାଁ ଯାଉଥିବା ସାଇକେଲ ସ୍କୁଟର ଚଢ଼ାଳୀ ଜଣେ ଅଧେ ଫେରି ଅନାଉଥିଲେ, ଜିନ୍ ସାର୍ଟ ପିନ୍ଧା ଏଡ଼େ ଗୋରା ଝିଅ । ପୁଅଙ୍କ ପରି ବାଳ କଟା । ପୁଣି ଏକୁଟିଆ । ଏ ସହରର ନୁହେଁ, ବାହାରୁ ଆସିଥିବ । ଟୋକାଟିଏ ସାଇକଲ ପେଡ଼ାଲ ମାରି ଚାଲିଯାଉଥିଲା ମନମତାଣିଆ, ପିଠିରେ ବସ୍ତାନୀଟାଏ ପାହାଡ ଚଢ଼ାଳି ଠାଣୀରେ । ବ୍ରେକ୍ ଧରି ଧିମେଇଗଲା ସିଏ, ମୁହଁରେ 'କାହାକୁ ଖୋଜୁଚ ?' ଭାବ ନେଇ ଚାହିଁଲା ଝିଅ ମୁହଁକୁ । ଝିଅଟି ଦଣ୍ଡେ ରହିଲା, ଘରଆଡ଼େ ଆଙ୍ଗୁଠି ଦେଖାଇ ପଚାରିଲା– 'ଡକ୍ଟର ନାୟକଙ୍କ ଘର ତ ?'

ପିଲାଟି ଏଥର ଟେଙ୍ଗା ହେଇ ଅନେଇଲା, ଏଇ ସାନ ସହର କଥା ଛାଡ଼ ଏ ରାଜ୍ୟର ବି ନୁହେଁ ଇଏ । ହାବଭାବ ସଙ୍ଗେ କହିବା କଥା ଦି'ପଦକ କହିଦେଉଚି ଦୂର ବିଦେଶର କିଏସେ । ଭୂଇଁରେ ପାଦ ଥାପି କହିଲା 'କୋଉ ଡକ୍ଟର ନାୟକ ? ଏ ପଡ଼ାରେ କେହି ଡକ୍ଟର ନାୟକ ନାହାନ୍ତି ।'

'ଡକ୍ଟର ନାୟକ । ପ୍ରଫେସର ନାୟକ । ଏ ଘର ତାଙ୍କରି ।'

ଖନେଇଲା ପରି ଜାଗତିଆର ହେଇ ଓଡ଼ିଆ କହୁଚି ସିନା, ପଞ୍ଜାବୀ ଝିଅ ଇଏ ନିଶ୍ଚେ । ହସ ଚାପି ଟୋକାଟା କହିଲା, 'କୋଉଠୁ ଆସିଚନ୍ତି ଆପଣ ?'

ଝିଅଟି ଘର ଉପର କାନ୍ଥକୁ ଅନେଇଲା । ପୁରୁଣା ଶିଉଳୀ ପରସ୍ତ ତଳୁ ପରିଷ୍କାର ପଢ଼ିହେଉଚି, 'କମଳା ନିଳୟ, ୧୯୧୮' ।

ତାଆରି ଉଚ୍ଚାରଣକୁ ନକଲ କରି କିଶୋରଟି କହିଲା ପୁଣି, 'ଏଇ ଘର ରଘୁ ଓକିଲଙ୍କର ଆଛି । ଡାକ୍ତର ପ୍ରଫେସର ଇହାଁ କୋଇ ନହୀଁ ହୈ ।'

ଏଥର ଝିଅଟି ବନ୍ଧୁତା କରିବାକୁ ମନସ୍ଥ କରି ସ୍ମିତ ହସିଲା, କହିଲା, 'ମୋତେ ଓଡ଼ିଆ ଜଣା ଅଛି । ତୁମ ଘର ଏଇ ପାଡ଼ାରେ ?'

ଜୋରରେ ହସି ପକାଇଲା ପିଲାଟି ଏଥର, କିନ୍ତୁ ହିନ୍ଦୀ ଉତ୍ତରରେ ତାର ଏଥର ବ୍ୟଙ୍ଗ ମରିଯାଇଥିଲା, 'କୌଣସି ଟିଭି କି ଖବରକାଗଜରୁ ଆସିଚନ୍ତି ବୋଧେ ଆପଣ ?'

ଘରକାନ୍ଥ ଦେହରୁ ଅକ୍ଷରରେ ମନଦେଇ ଝିଅଟି ଉତ୍ତର ଦେଲା, 'ହଁ, ତା କହିପାର । ମୋ ନାଁ ଏଲି । ତୁମ ନାଁ ?'

ଖୁସି ଦେଖାଗଲା ପିଲାଟି, ପରିଚୟ ଯୋଗ୍ୟ ବିବେଚିତ ହୋଇଥିବାରୁ ।

'ମୋ ନାଁ ରାଜେଶ ସାହୁ । ଜିଲ୍ଲା ହାଇସ୍କୁଲରେ ଦଶମ ଶ୍ରେଣୀରେ ପଢ଼େ । ଏଇ ଆଗ ଗଳିରେ ଆମ ଘର । କାହା ଘରକୁ ଯିବେ, ଠିକଣା ଅଛି ?'

'ଠିକଣା ? ନା, ପାଖରେ ନାହିଁ, ଛାଡ଼ିଆସିଲି । ହଉ ତେବେ ।'

ବୁଲିପଡ଼ି ବିପରୀତ ରାସ୍ତାରେ ମୁହାଁଇଲା ଏଲି । ପକେଟବୁକ୍ ଟି କାଢ଼ି କ'ଣ ଟିକିଏ ପଢ଼ିଲା । ସେ ଜାଣେ ବିଧୂ ନାୟକଙ୍କ ଘର ଏ । ଆଉରି ବି ଜାଣେ ଯେ ସେ ଏଠି ରହୁନାହାନ୍ତି । ମରିସାରିଲେଣି ଦଶବର୍ଷ ତଳୁ । ସେଥିଲାଗି ଏ ପିଲାଟି ଜାଣୁନାହିଁ ତାଙ୍କୁ । ନହେଲେ ବିଧୁ ନାୟକଙ୍କୁ ନଜାଣିଲା ଭଳି କିଏ ବା ଥିବ ଏ ସହରରେ? ତାଙ୍କଠୁ ବଳି ଆଉ ଜଣେ କିଏ ଆଉ ଭଲା ବାହାରିଥିବ ଏ ସରହଦରୁ?

ପିଲାଟି ପଛରୁ ଡାକି କହିଲା, 'ମାଡାମ୍, ଏଇ ପଡ଼ାରେ ବିଧୂ ନାୟକ କେହି ରହୁନାହାନ୍ତି । ଠିକଣା ଥିଲେ କହନ୍ତୁ ପଚାରି ବୁଝିବା ।'

ଏଲି ଫେରି ଚାହିଁ ତାକୁ ହାତ ହଲେଇଲା ଟିକିଏ, 'ଓକେ, ବାଏ । ଦେଖା ହେବ ପୁଣି ।'

ସାଇକେଲକୁ ଉଠୁ ଉଠୁ ରାଜେଶ ପୁଣି ଥରେ ଚେଷ୍ଟା କରି କହିଲା, 'ଘରଟା ଦେଖିବାର ଥିଲେ ଆସନ୍ତୁ, ରାଜୁ ଓକିଲଙ୍କ ସ୍ତ୍ରୀ ଙ୍କୁ ଡାକିଦେବି, ଘରେ ଥିବେ । ମୋତେ ଜାଣନ୍ତି ସିଏ ।' ପୁଣି କଲିଂ ବେଲ୍‌ରେ ହାତମାରି ଦାନ୍ତଦେଖାଇ କହିଲା, 'ଦେଖୁନାହାନ୍ତି, ବେଲ୍‌ଟା କେବେଠୁ କାମ କରୁନି । କବାଟ ବାଡ଼େଇଲେ ବି ଶୁଭିବନି । ତାଙ୍କ ଚାକର ନରି କୁ ଡାକିଦେବି ଯଦି ଆପଣଙ୍କୁ ଭିତରକୁ ନେଇଯିବ, ମାଉସୀ ପାଖକୁ ।'

ଏଲି ଜାଣେ କମଳା ନିଳୟର ଭିତରଟି କେମିତି ଦିଶେ । ପିଲାଦିନେ ଏଇ ଘର ଭିତର ବାରଣ୍ଡାଟି ତାକୁ ଲାଗୁଥିଲା କେଡ଼େ ଲମ୍ବ, ରାସ୍ତାଟିଏ ଭଳି । ବାହାର ବାରଣ୍ଡାରେ ଠିଆହେଇ କାଚବାକ୍ସ ବାଲା ବିକାଳୀ ଠାରୁ ଗୋଲାପୀ ବେଲୁନ ପରି ଦିଶୁଥିବା ଫସଫସିଆ ଦିଲ୍ଲୀକା ଲଡୁ ଖାଇଚି । ଭିତର ଆଗଣାରେ ଧାଁ ଦଉଡ଼ ଲଗେଇଚି ସାଙ୍ଗ ପିଲାଙ୍କ ସାଙ୍ଗେ, ଥରେ ଅଧେ ବର୍ଷାରେ ତିନ୍ତି କଚଡ଼ା ଖାଇଚି ବି । ଅଗଣାର ଗୋଟିଏ ପାଖେ ଥାଏ ପିଲାଦିନେ ତା ମୁଣ୍ଡେ ଉଚ୍ଚ ତୁଳସୀ ଚଉରା । ମନେଅଛି, ଛୋଟିଆ ଦେଉଳ ଭଳି, ଉପରେ ଝଙ୍କାଳିଆ ସାନ ଗଛଟିଏ, ତା ଡାଳରେ

ଭିନ୍ନ ଭିନ୍ନ ପ୍ରକାର ସଜଫୁଲ ବାସି ଫୁଲ ଖୋସା ହୋଇଥାଏ । ନାଲି ଚୁଡ଼ି ଗୋଟେ ଦିଇଟା ଟଙ୍ଗା ହୋଇଥାଏ । ଧଳାଲୁଗା ପିନ୍ଧି ଯିଏ ବଡ଼ମା ଜଣେ ପୂଜା କରନ୍ତି, ଏଲି ଠିଆହେଇ ଅନେଇରହେ, ତାଳରୁ ପାଣି ଢାଳିବା, ଗଛ ମୂଳ ମାଟିନେଇ କପାଳରେ ମାରିବା । ବଡ଼ମା କିନ୍ତୁ ଖୁସି ହୁଅନ୍ତି ନାହିଁ, ସାବଧାନରେ ନିଜକୁ ଘୁଞ୍ଚାଇ ନିଅନ୍ତି ଏଲି ଦେହରେ ଛୁଇଁ ନହେବ ବୋଲି, କହନ୍ତି, 'ଯା ମା, ଯା ସିଆଡ଼େ ଖେଳିବୁ ।'

ବଡ଼ମାଙ୍କଠୁ ଭିନ୍ନ ଥିଲେ ସେ ଘରର ମୁରବୀ, ସାଧୁ ନାୟକ । ପିଲାଦିନର ବିଗ୍, ଫ୍ରେଣ୍ଡଲୀ ଜାଏଣ୍ଟ, ବିରାଟ ରାକ୍ଷସ ବନ୍ଧୁଟି ଏଲିର । ଏବେ ପଛକୁ ଅନେଇଲେ ଦିଶୁଚି, ଏ ଛୋଟିଆ ସହରର ମାଟିଆ ସାହେବ ଥିବେ ସେ କେବେ । ନିଜ ସମୟର ଚିହ୍ନଟ କମଳା ନିଳୟ, ଇଂରେଜ ସାମ୍ରାଜ୍ୟ ବୋଲି ଚିହ୍ନା ପକେଇଦେଉଥିବା ସେ ଅଞ୍ଚଳର ମାତ୍ର କେତୋଟି ଇମାରତ ଭିତରୁ ଅନ୍ୟତମ ।

ଅଞ୍ଜଳି ନାୟକ ତାଙ୍କ ନାତୁଣୀ । ଦୁଇ ଦଶକ ପରେ ଫେରିଆସି ସଡ଼କରେ ଠିଆହେଇ ନିଜ ବାପ ଜେଜେଙ୍କର ଠିକଣା ପଚାରୁଚି । ଡକ୍ଟର ପ୍ୟାଟ୍ରିକ୍ । କୁଷ୍ଠ ରୋଗ ଉପରେ ଗବେଷଣା କରିବାକୁ ଆସିଚି । ପୃଥିବୀର ଖୁବ୍ କମ୍ ଭାଗରେ ଏଯାବତ୍ ଦେଖାଯାଏ ଏ ଚର୍ମରୋଗ, ତା ପୁଣି ଶାରୀରିକ କଷ୍ଟରେ ସୀମିତ ନହୋଇ ସାମାଜିକ ବ୍ୟାଧି ହୋଇ ଜନଜୀବନ ବିପନ୍ନ କରିଥାଏ । ପିଲାଦିନେ କୁଷ୍ଠରୋଗୀଟିଏର ଆଙ୍ଗୁଠି ନଥିବା ହାତ ପାତିବା ବେଳେ ଭୟରେ ପାଟି କରିଥିଲା ଏଲି । ବାପା କହିଥିଲେ, 'ମଣିଷଟିଏ ପରା ସେ, ଡୋରି ପରି । ଏମିତି ଡରି ଛାନିଆ ହେଉଚୁ କଁ'ଣ ? ଚାଲ୍ ତୋତେ ମୁଁ ଦେଖେଇଦେବି ତାଙ୍କ ଗାଁ ।' ବାପାଙ୍କ ସାଙ୍ଗେ ଯାଇ ନୂନର୍ବାସ ଗ୍ରାମଟିଏ ଦେଖିଆସିଥିଲା । ସଫାସୁତୁରା ଗାଁଟି ତା'ର ମନେଅଛି ଅବିକଳ । ଗତ ଦୁଇ ଦଶକ ଭିତରେ ସେ କାହାକୁ ହେଲେ କହିନାଇଁ ସେଇ ଗାଁ କଥା, ଯଦିଓ ଫେଲୋସିପ୍ ପ୍ରପୋଜାଲରେ ତା'ର ଉଲ୍ଲେଖ କରିଚି ।

ତିନିକେନିଆ ଛକରୁ ସେ ଫେରି ଚାହିଁଲା, ରାଜେଶ ଗଲାଣି । କମଳା ନିଳୟ କୁ ଏମିତି ଶେଷଥର ଦେଖିଥିଲା ଏଲି, ଦଶବର୍ଷର ହେଇଥାଏ, ସାନଭାଇ ବବି ହୋଇଥାଏ ଆଠ ବର୍ଷର । ଚକ୍ରଧର ପିଉସାଙ୍କର ପ୍ରାଚୀନ ମଡେଲର ହିଲମ୍ୟାନ ଗାଡ଼ିରେ ବାହାରିଥାନ୍ତି ସେମାନେ ଷ୍ଟେସନ । ମା ଶାଢ଼ୀ ପିନ୍ଧିଥାନ୍ତି । ବୋଧେ ଶାଢ଼ୀ ସେଇ ଶେଷଥର ପାଇଁ ପିନ୍ଧିଥିବେ ସେ, ଇଂରେଜ ପରିବାରରେ ଜନ୍ମ ଲିସା ପ୍ୟାଟ୍ରିକ୍ । ସେଇ ଭିତର ବାରଣ୍ଡାରେ, ସଦ୍ୟ ଧୁଆ ଓଦା ପଚପଚ ଅଗଣାରେ ଶାଢ଼ୀ ପିନ୍ଧି ଖାଲିପାଦରେ ଚାଲନ୍ତି ମା, ଆଖପାଖରେ କେହି ବୁଝୁନଥିଲେ ବି ଏଲି ବୁଝେ ତାଙ୍କ ଲାଗି ତା ସହଜ ସାଧ୍ୟ ନଥିଲା । ହେଇ ଉପର ମହଲା ବାରଣ୍ଡାଟି ଦିଶୁଚି, ସେଇ କଣ ବାଁ ପାଖ କୋଠରୀଟି, ଝରକା ବନ୍ଦ ଅଛି, ସେଇ ଥିଲା ପିଲାଦିନେ ତାଙ୍କ ଶୋଇଲା କୋଠରୀ । ବିରାଟ ଗୋଟିଏ ପଲଙ୍କ ଥାଏ, ଚଢ଼ିବା ଲାଗି ଦୁଇଟି ସାନ କାଠ ପାହାଚ ଲାଗିଥାଏ ତହିଁରେ, ବାକି ଚାରିପାଖ ହାତେ ଉଚ୍ଚ ବାଡ଼ ଦିଆ, ଛୋଟିଆ କୋଠରୀ ଟିଏ ସତେକି । ଏଲି ଆଉ ବବି ଖେଳନ୍ତି ତହିଁ ଭିତରେ । ତଳ ମହଲାରୁ

କୋଳାହଳ ଶୁଭୁଥାଏ । ଧାଇଁ ଯାଉ ଯାଉ କଦବା କିଏ ସଂପର୍କୀୟ ଭାଇ ଭଉଣୀ ପରଦା ଆଢ଼େଇ ଚାହିଁଦିଅନ୍ତି । ଭିତରକୁ ଆସିବାର ସାହସ ନଥାଏ ତାଙ୍କର, ଡାକିବାକୁ ବି ମନାଥାଏ ଏଲି ବବିଙ୍କୁ । ମା କବାଟ ଆଉଜେଇ ନିଅନ୍ତି, କିଛି ନ କହିଲେ ବି ଦାନ୍ତଚିପା ମୁହଁରୁ ଜଣାଯାଏ ତାଙ୍କର ଅସନ୍ତୋଷ ।

'ମମ୍ମି, ଛାତକୁ ଯିବି ଖେଳିବାକୁ ।'

'ନାଇଁ, ଏବେ ନୁହେଁ । ଖରା ହେଉଚି ଛାତରେ । ଏଇଠି ଖେଳ ।'

ଛାତରେ ପିଲାଙ୍କର ଧାଁ ଦଉଡ଼ ଶବ୍ଦ ଶୁଭେ, ଏଲି ବବି ଅନାଅନି ହୁଅନ୍ତି, କଳ୍ପନା କରନ୍ତି, ଉଚ୍ଚାଟିଆ ବୋହୂଚୋରୀ ଖେଳ ଚାଲିଥିବ ଛାତରେ । ଖୋଲା ସିଡ଼ୀ ଘରେ ନାନୀ ମାନେ ଗପ ଜମେଇଥିବେ । କଡ଼କିଆ କାଠ ଗୁମୁଟୀ ଭିତରେ ଅଜସ୍ର ଆଲୁକୁଚି, ଯେତେ ଘାଣ୍ଟିଲେ ଆବିଷ୍କାର ସରେନାହିଁ, ମାତିଥିବେ ନିଶ୍ଚେ ସେଠି ଜଣେ ଦିଜଣ ଝିଅ, କୋଉ ଯୁଗର ତମ୍ବା ପଇସାଟାଏ କି ପୁରୁଣା ପିତ୍ତଳ କାନ ଦୁଲ ପଟେ ପାଇଗଲେ ହାରାମୁଣ୍ଡାଏ ମିଳିଲା ପରି ହେବେ ।

ଶେଷଥର । ଦେଶଛାଡ଼ି ଯାଇଥିଲେ ସେମାନେ, ସବୁଥର ପରି ଛୁଟି ସରିଆସିଥିଲା ଯେବେ । କୋଡ଼ିଏ ବର୍ଷ ତଳେ, ଏଇ ରାସ୍ତା ଉପରୁ ଅନେଇଥିଲା ଏଇ ଘରଟିକୁ । ବାପା କହିଲେ, 'ଆରେ ମା । ଆର ବର୍ଷକୁ ଆସିବା ପରା, ଏତେ କ'ଣ ମନ ଦୁଃଖ କରୁଚୁ ?'

ବବି ମୁହଁକୁ ଚାହିଁଥିଲା ଏଲି, ବର୍ଷଟିଏର ଦୀର୍ଘତା ମାପିବା ଲାଗି ତା ମନ ଆହୁରି ପାକଳ ହେଇନଥାଏ । ହେଲେ ବବିର ମୁହଁ କହୁଥିଲା 'ଆରବର୍ଷ' ତାଲାଗି ଏବେ ଦୁର୍ବୋଧ୍ୟ । ବାହାର ବାରଣ୍ଡାରେ ଠିଆହେଇଥାନ୍ତି ପିଇସୀ ପିଇସା ମାନେ, ସଂପର୍କୀୟ କକେଇ ଖୁଡ଼ୀ, ନାନୀ ଭାଇନା ଭଉଣୀ ସାଙ୍ଗସାଥୀ କେତେ । ଗୋଟିଏ ପୃଥିବୀ ଦୂରଛଡ଼ା ହେଇଯାଉଥାଏ । ଗାଡ଼ିରେ ବସିଲାବେଳକୁ ଏଲି ଆଖିରୁ ଲୁହ ବହିଯାଉଥାଏ । ମା ରୁମାଲ୍‌ରେ ପୋଛିଦେଇ କହିଥିଲେ, 'ମୋ ସୁନାଟି ପରା । ଏମିତି କ'ଣ କାନ୍ଦନ୍ତି ? ପୁଣି ଆସିବା ନାଇଁ ଆମେ ?'

ଗାଡ଼ି ଚାଲିଲା ବେଳକୁ ପଛରେ ଆହୁରି କେତେଟା ଗାଡ଼ି, ରିକ୍‌ସା ଚାଲିଲା ଷ୍ଟେସନ ଯାଏଁ । ମନେପଡୁଚି କିଛି ମୁହଁ, କେତେଟା ଟୁକୁଡ଼ା କଥା । ବୁଢ଼ା ଜଣେ, ଅନ୍ଧାରୁଆ ଗୁମ୍ଫାଟିଏ ପରି ପାକୁଆ ମୁହଁରେ ସଦାବେଳେ ହସଥାଏ । ସିଏ ଗଇଁବାପା, ସବୁଥର ପରି ସେଇ ଘଷରା ଟୋକ୍, 'ମୁଁ ବିଲାତ ଯିବି, ତମ ଘରକୁ ଗଲେ ଜାଗା ଦେବୁ ରହିବାକୁ ?' ରମ୍ପେଲାର ବୁଢ଼ା ଦାଦା, ମୋଟା ଚଷମା ତଳୁ ଏଡ଼େ ବଡ଼ ଦିଶେ ତାଙ୍କ ଆଖି, ବବି ଡରେ ତାଙ୍କୁ । କହନ୍ତି, 'କେବେ ପୁଣି ଦେଖା ହେବରେ, ଫିରିଙ୍ଗୀ ନାତି ନାତୁଣୀ ?' ସେମାନଙ୍କ ଭଲ ନାଁ କି ପରିଚୟ ଜଣାନାଇଁ, ସେବେ ବି ଜଣା ନଥିଲା । କୋଉଠି ଦେଖାହେବ ତାଙ୍କ ସାଙ୍ଗେ, ଜଣାନାଇଁ । ଏତିକି କେବଳ ଜଣାଥିଲା ତାଙ୍କୁ, ଯେ ତା ଜେଜେବାପା ଜଣେ ରଜା ପ୍ରାୟ ଲୋକ, ଏ ଗରିବ ପଛୁଆ ପରି ଦିଶୁଥିବା ଇଲାକାଟିରେ । ଏପରିକି ତା ନିଜ ବାପାଙ୍କଠୁ ବି ବଡ଼ ।

ଜେଜେବାପା ଏଇ ଘରଟି ତିଆରି କରିଥିଲେ, ଶତାବ୍ଦୀ ଟିଏ ତଳେ କହିଲେ ଚଳେ । ଆଜି ଏ ପୃଷ୍ଠଭୂମି ଦେଖି ଜାଣିହେଉଚି, କେଡ଼େ ଆଖିଦୃଶିଆ ହେଉଥିବ ଦିନେ । କେଡ଼େ ବିଶିଷ୍ଟ ହେଉଥିବେ ନିଜେ ସାଧୁ ସାୟକ । ଅନାମଧେୟ କେଉଁ ମଫସଲ ଅଞ୍ଚଳରୁ ଉଠି ସେ ମାଜିଷ୍ଟ୍ରେଟ ହୋଇଥିଲେ, ଦରମା ଖିଆ ସାହେବ ଚାକିରୀ, ଇଂରେଜଙ୍କ ସାଙ୍ଗେ ବସାଉଠା, ଅଧା ଇଂରେଜ ବୋଲାଉଥିବେ । ନିଜ ଇଂରେଜ ବୋହୂଟିକୁ କେବେ କ୍ଷମା କରିନଥିଲେ ସେ, ବଂଶର ରକ୍ତକୁ ବିଧର୍ମୀ କରିଥିବା ଯୋଗୁଁ । ତାଙ୍କରି ଅଧା ଇଂରେଜ ନାତୁଣୀ, ଠିଆ ହେଇଚି ଅଚିହ୍ନା ବାଟୋଇଟିଏ ପରି ।

ନିଜକୁ ଭାବପ୍ରବଣ ହେବାକୁ ମନାକଲା ଏଲି । ପ୍ରତିଜ୍ଞା କରିଥିଲା ଆସିବା ଆଗରୁ, ଗୋଟିଏ ଜନ୍ମଭୂଇଁ ଛାଡ଼ି ଆରେକ ମାତୃଭୂମିକୁ ଆସିବା ପୂର୍ବରୁ, ଯେ ନିଜ ମୁଣ୍ଡ ଥଣ୍ଡା ରଖିବ । ଗବେଷକର ମନୋଭାବ ନେଇ ସେ କାମ କରିବ ଭାରତରେ । ବାପାଙ୍କର ଇଚ୍ଛା ପୂରା କରିବାକୁ ନିଶ୍ଚୟ କରିଚି ସିନା, ଅଯଥା ଭାବପ୍ରବଣତାରେ ବହିଯାଇ ଗଳାଦିନର ଭଉଁରୀରେ ଗୋଡ଼ ଖସାଇବନି ସେ ।

ଅଞ୍ଜଳି ନାୟକ ସେ ନୁହେଁ ଆଉ । ଅଞ୍ଜୁ ନୁହେଁ । ଏଞ୍ଜେଲ ପ୍ୟାଟ୍ରିକ୍, ଆନ୍ତର୍ଜାତିକ ସଂସ୍ଥା ତରଫରୁ ଆସିଚି ନିୟୋଜିତ କାମ କରିବାକୁ ଆଉ ନିଜ ଅଭିଳାଷମତେ କିଛିଦୂର ମାନବ ସେବା କରିବାକୁ । ବାପାଙ୍କର ଗେହ୍ଲାଝିଅ ଏଲି । ଡାକ୍ତର ହେବ ବୋଲି ପଣ କରିଥିଲା ବାପାଙ୍କ ଆଗରେ ।

'ବିଲାତର ଶ୍ରେଷ୍ଠ କଲେଜରେ ପଢ଼ିବ ମୋ ଝିଅ ।' ଜେଜେବାପାଙ୍କୁ ବାପା କହିଥିଲେ । 'ତମେ ଦେଖିବ ବାପା, ବଡ଼ ହେଇ ମୋ ଝିଅ ଏଇଠିକି ଆସିବ । ଅଞ୍ଜଳି ନାୟକ, ଏଫ.ଆର.ସି.ଏସ୍. ।'

ଜେଜେବାପା ତାଙ୍କ ବିଚିତ୍ର ହସ ହସିଥିଲେ, ଯେଉଁଥିରୁ ବୁଝିବା କଷ୍ଟ ସେ ଖୁସି ହେଉଛନ୍ତି ନା ଛିଗୁଲାଉଛନ୍ତି । ମା କୁ କହିଲେ ଜେଜେବାପା, 'ଭଲ ପଢ଼ିବେ ଏ ଦି ପିଲା ତମର । ଏଡ଼େ ଉଚ୍ଚ ବଂଶ, ବ୍ରାହ୍ମଣ ରକ୍ତ, ତହିଁରେ ବିଲାତି ରକ୍ତ ମିଶିଲା ।'

ଏଲି ଜାଣେ, ମା ତାଙ୍କୁ ଏକପ୍ରକାର ଭୟ କରେ, ଯେତେ ମିଠାକରି କହିଲେ ବି ତାଙ୍କ ସାଙ୍ଗେ ବେଶୀ କଥାବାର୍ତ୍ତା କରେନାହିଁ ।

'ମୁଁ ତୋର ବୁଢ଼ାବାପା । ମୋତେ ଏଠି ପଛରେ କହନ୍ତି ବ୍ରାଉନ ସାହିବ, ଚିଡ଼ାଇବାକୁ କହନ୍ତି । ହେଲେ ତୁ ତ ସତସତିକା ବ୍ରାଉନ ସାହିବ, ନା କ'ଣ ?' ହସନ୍ତି ସେ, ସେ ହସର ଉଦ୍ଦେଶ୍ୟ ବିଷୟରେ ସନ୍ଦେହ ଥାଇ ବି ଏଲି ହସେ ।

ଜେଜେ ତାକୁ କହନ୍ତି, 'ଏଇଠି ଆସି ରହିବୁ ତୁ । ଏଇ ହେଲା ତୋର ଅସଲ ଘର । ବିଲାତ ହେଲା ବିଦେଶ । କ'ଣ କିରେ ବବି ? ତୋତେ କିନ୍ତୁ ବିଶ୍ୱାସ ନାହିଁ । ସାହେବ ପରି ଦିଶୁଚୁ, ବିଲାତ ତୋତେ ବେଶୀ ସୁହାଇବ । ଅଞ୍ଜୁ ଆମର ଏଇଠି ରହିବ । ବ୍ରାହ୍ମଣ ପିଲାଟିଏ ବାହାହେବ ।'

ଏଲି ଖୁସି ହେଉଥିଲା । ମା କିନ୍ତୁ ଓଠକୁ ଟିକିଏ ବି ହସ ଆଣୁନଥିଲେ । ବବି କହୁଥିଲା, 'ନା ମୁଁ ଏଠି ରହିବିନି । ଏ ଜାଗା ଭଲ ନୁହେଁ ।'

ବବିର ବାଳ ବେଶୀ କହରା, ଆଖି ନୀଳ । ବାରି ହେଇପଡ଼େ ବେଶୀ । ତାକୁ ଏଇ ଜାଗା ବେଶୀ ସୁହାଏ ନାହିଁ । ଝୁରିହୁଏ ଫେରିଯିବାକୁ । ଘୋଡ଼ାଚଢ଼ା, ପାଣି ପହଁରାକୁ ସେ ଝୁରିହୁଏ । ସାତ

ଆଠ ବର୍ଷର ବବି ବେଶୀ ଗୁଡ଼ାଏ ସେତେବେଳର ସ୍ମୃତି ମୁଣ୍ଡ ଭିତରେ ସାଇତି ପାରିନଥିଲା ।
ଗଲାଦିନ ସାଙ୍ଗେ ଡୋରି କାଟିଦେଇ ମୋଟାମୋଟି ସୁଖରେ ଅଛି ଏବେ ।

କମଳା ନିଳୟ ଆହୁରି ବେଶୀ ପୁରୁଣା ଦିଶୁଚି, ଟିକିଏ ଭିନ୍ନ ବି । ଉପର ମହଲା ବାରଣ୍ଡାର ଗୋଟିଏ ପାଖ ଛାପ୍ପି ଦିଆଯାଇ ବନ୍ଦ ହୋଇଚି । ଏଲି ପୁଣି ଗୋଟିଏ ଗୋଟିଏ ଲେଉଟିଗଲା କମଳା ନିଳୟ ପାଖକୁ । ରାସ୍ତା ଉପରୁ ଏଥର ଆଖ ପାଖର ଘରଗୁଡ଼ିକୁ ଅନାଇଲା ପ୍ରଥମକରି । ହଁ, ଦୃଶ୍ୟ ବଦଳିଯାଇଛି କିଛି କିଛି । ସେଇ କୋଣରେ ଏତେ ବଡ଼ ତିନିତାଲା କୋଠାଟି ନଥିଲା ନିଶ୍ଚୟ, ଯଦିଓ ସେଠି କ'ଣ ଥିଲା ପରିଷ୍କାର ମନେପଡୁନାହିଁ । ଆଉ ରାସ୍ତାର ଠିକ୍ ଆରପାଖେ ଖପରଛାତ ଦୋତାଲା ଘରଟିଏ ଥିଲା, ମନେପଡୁଚି, ଉପର ମହଲାରେ କବାଟ ଆକାରର ଲମ୍ବ ଝରକାର ତଳ ଅଧକରେ କାଠ ରେଲିଂ ଥାଏ ଆଉ ଉପର ଅଧକ ଖୋଲାଥାଏ, ଏଲିକୁ ବିଚିତ୍ର ଲାଗେ । ସେଇ ଝରକା ପାଖରୁ ଦୁଇଟି ଛୋଟ ପୁଅଝିଅ, ଚୁନି ଆଉ ଟିଟୁ ହାତ ହଲାନ୍ତି ଏଲି ବବିଙ୍କୁ ଚାହିଁ, କେବେ ରାତିରେ କେବେ ବା ବଡ଼ି ସକାଳୁ, ହେଲେ କାଇଁକି କେଜାଣି ତାଙ୍କ ସାଙ୍ଗେ ଭେଟ ହୁଏ କ୍ୱଚିତ୍ । ସେ ଘରଟି ଆଉ ନାହିଁ, ଆଉଗୋଟିଏ ଭିନ୍ନ କୋଠା ଘର ସେଇଠି ଠିଆହୋଇଚି ।

ସାନ ସହରଟିର ଦିନ ଏଯାକେ ଭଲକରି ଆରମ୍ଭ ହୋଇନାହିଁ । ସାଇକେଲ ହ୍ୟାଣ୍ଡେଲରେ ଟଙ୍ଗା ଦିଇଟା ବଡ଼ ଦୁଧ କ୍ୟାନ୍ ନେଇ ଟୋକାଟିଏ କମଳା ନିଳୟ ଭିତରୁ ବାହାରିଲା, ବାରଣ୍ଡାର ଲୁହା ଗେଟ୍ କୁ ଠେଲି ବନ୍ଦକଲା । ଏତେବେଳକୁ ଯାଇ ଏଲିର ନଜର ପଡ଼ିଲା, ଭିତର ବାରଣ୍ଡା କାନ୍ଥରେ ଅଛି ନେମ୍‌ପ୍ଲେଟ୍, ରାଘବେନ୍ଦ୍ର ଶର୍ମା ।

ଏଲିକୁ ଦେଖୁଚି ପିଲାଟି, ତା ତାଲା ପକାଉଥିବା ହାତ ରହିଯାଉଚି । ଏଲି ପଚାରିଲା, 'ଓକିଲ ବାବୁଙ୍କ ସାଙ୍ଗେ ଦେଖା ହୋଇ ପାରିବ ?'

ଟିକକ ଆଗରୁ ରାଜେଶ ସାହୁ କହିଥିବା ସେଇ ନରି ବୋଧେ ଏଇ । କହିଲା, 'ଓକିଲ ବାବୁ ଆଉ ମା ଯାଇଚନ୍ତି ଚାଷ ଗାଁକୁ । ଫେରୁ ଫେରୁ ସଞ୍ଜ କି ରାତି ହେବ । ଆପଣ କାଲିକି ଆସନ୍ତୁ ।'

'ତମେ ଏଇଠି ରହ ?'

'ଆଜ୍ଞା, ଏଠି କାମ କରେ । ଓକିଲ ବାବୁଙ୍କ ଅଫିସ୍ ସଜାଡ଼ିବା ଠୁ ବହିକାଗଜ ପତ୍ର ସବୁ ମୋ ଜିମା ।'

ପୁଣି ଏଲିର ବେଶଭୂଷାକୁ ତଉଲି ନେଇ କହିଲା, 'ନାଁ, ଠିକଣା କି କାର୍ଡ ଥିଲେ ଦିଅନ୍ତୁ, ଓକିଲ ବାବୁଙ୍କୁ କହିଦେଇଥିବି । ସକାଳ ଆଠଟା ବେଳକୁ ସେ ଅଫିସ୍ କମରାରେ ଆସି ବସନ୍ତି ।'

ନରି ଆଙ୍ଗୁଠି ଦେଖାଇଥିବା ଦିଗରୁ ଏଲି ବାରିବାକୁ ଚେଷ୍ଟା କଲା, କୋଉ କୋଠରୀଟି ହୋଇଚି ଓକିଲ ବାବୁଙ୍କ ଅଫିସ୍ ?

'ଏ ଘରେ ସାଧୁ ନାୟକଙ୍କ ପରିବାରରୁ କେହି ଆଉ ରହୁନାହାନ୍ତି ?'

'ସାଧୁ ନାୟକ ?' ନରି ମୁଣ୍ଡ ମୁଣ୍ଡାଇ କହିଲା, 'ନାଇଁ ତ ସେ ତ ମଲେଣି କୋଉ କାଳୁ । ତାଙ୍କ ପୁଅ ବିଧୂ ନାୟକ ବି ମଲେଣି କାହିଁ କେତେ ବର୍ଷ ହେଲା । ତାଙ୍କୁ ଆପଣ ଜାଣିଥିଲେ କି ?'

ମୁଣ୍ଡ ଟୁଙ୍ଗାରି ହଁ କଲା ଏଲି ।

ଟୋକାଟି ଦୋଦୋପାଞ୍ଚ ହେଇ ଠିଆହେଇ ରହିଲା । ପଚାରିଲା, 'ତାଙ୍କୁ ଜାଣିଥିଲେ ଆପଣ ? ଜାଣିନାହାନ୍ତି ସେ ମଲେଣି ବୋଲି ?'

'ଜାଣେ । ମୁଁ ତାଙ୍କୁ ଖୋଜୁନାହିଁ । ତାଙ୍କ ପୁଅଟି କୋଉଠି ଅଛି ?'

ତାଲା ପକାଉଥିବା ହାତ ରହିଗଲା, ନରି ପଚାରିଲା, 'ପୁଅ ? ତାଙ୍କ ପିଲାଝିଲା ବିଲାତରେ ଥାଆନ୍ତି ।'

'ଏଠି ଯୋଉ ପୁଅଟି ହେଇଥିଲା ?'

'କେଜାଣି ଆଜ୍ଞା । କହିପାରିବିନି । ଓକିଲ ବାବୁ କେଜାଣି କହି ପାରିବେ ।'

'ଏ ଓକିଲ ବାବୁ ତାଙ୍କର କିଏ ହୁଅନ୍ତି ସମ୍ପର୍କରେ ? ନା କିଣିଚନ୍ତି ଘରଟି ?'

'କେଜାଣି, ସେ କଥା ମୁଁ କହିପାରିବିନି ଆଜ୍ଞା । ଆପଣ କିଏ କି ?'

ଏଲି ଟିକିଏ ଭାବିଲା ଏଥର, 'ଚିହ୍ନା । ବହୁତ ଦିନ ତଳେ ଆସିଥିଲି । ହଉ, କାଲିକି ଆସିବି ତେବେ ।'

ମନେପଡୁଚି, ଜେଜେ ହସି ହସି କହନ୍ତି, ସ୍ପଷ୍ଟ ମନେଅଛି ବେଳେବେଳେ ତାଙ୍କର ସେଇ ଅଧା କାନ୍ଦପରି ଦିଶୁଥିବା ହସ, 'ମୋ ଶ୍ରାଦ୍ଧ କିଏ କରିବ ରେ ? ତୁମେ ସବୁ ତ ମ୍ଳେଚ୍ଛ ହେଇଗଲ, ଏଁ ? ତମ ହାତର ପାଣି ତ ମୁଁ ପାଇବିନି ।'

କାହୁଁ ମ୍ଳେଚ୍ଛ ନୁହେଁ । ହେଲେ ଜେଜେ ବାପା ଆଉ କୋଉଠୁ ଜାଣିଲେ, ସେ ଗଲେଣି କୋଉ କାଳୁ । ପୁଣି ଏଲି ଭାବୁଚି, କେଜାଣି ଜାଣୁଥିବେ ଅବା ।

ଷ୍ଟେସନ ପାଖ ହୋଟେଲକୁ ଫେରିଲା ଏଲି, ଚାଲି ଚାଲି । ସହରଟି ସେମିତି କିଛି ବଦଳି ନାହିଁ । ଲୋକବାକ କିଛି କିଛି ବଦଳିଲାପରି ଦିଶୁଛନ୍ତି । ଶାଢ଼ୀ ନ ପିନ୍ଧି ଭିନ୍ନ ଲୁଗା ପିନ୍ଧିଲେଣି ଝିଅମାନେ । ଅଛ କିଛି କୋଠାବାଡ଼ି ନୂଆ ହେଇଚି ବୋଧେ । ପିଲାଦିନର ସହର ନିହାତି ଝାପ୍‌ସା ମନେଅଛି । ଝଲକାଏ ଲେଖାଁ ଏଠୁ ସେଠୁ, ରାସ୍ତାରୁ, ନଦୀ କୂଳରୁ ।

ବାପା କହନ୍ତି ଏଇ ସହରର କଥା । ରାତିରେ ଗପ କହୁକହୁ ସେ ନିଜ ଜୀବନର ଗପ କହନ୍ତି । କହୁ କହୁ ତାଙ୍କର ସ୍ୱର ବସା ବସା ଶୁଭେ । 'ଆମେ ସଭିଏଁ ସେଠିକି ଫେରିଯିବା ରେ ପିଲେ । ମହାନଦୀ କୂଳ ଆମ ଘରକୁ ଯିବା, ରହିବା ସେଇଠି ଯାଇ । ଏଠିକା ନଦୀ ଭଳି ନୁହଁ ସେ, ତମ ଟେମ୍‌ସ୍ ତ ଗୋଳିଆ ନାଳଟାଏ ତା ପାଖେ । ଆମ ପିଲାଦିନେ, ବନ୍ଧ ବନ୍ଧା ହେଇନଥିଲା ଯେତେବେଳେ, ଏଡ଼େ ଓସାର ନଈଟା ପାଣିରେ ପୂରିଥାଏ ଯେ, ଆଖି ପାଏନାହିଁ ଆରକୂଳକୁ ।'

ଏଲି ମୁଣ୍ଡ ଭିତରେ ବାପାଙ୍କ ପିଲାଦିନର ସହର ବି କିଛି କିଛି ମିଶିଯାଇଛି ।

ହୋଟେଲ୍ ମ୍ୟାନେଜର କହିଲା, 'ଆପଣଙ୍କର ଫୋନ୍ ଆସିଥିଲା, ଡାକ୍ତର ପଟ୍ଟନାୟକଙ୍କ ଠାରୁ ।'

ନିଜ କୋଠରୀରେ ବସି ଏଲି ଠିକଣା ବହି କାଢ଼ିଲା, କାର୍ଯ୍ୟକ୍ରମ ତିଆରି କରିବାକୁ ହେବ । ଏଠି ତ କେବଳ ଡାକ୍ତର ପଟ୍ଟନାୟକଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ ତାକୁ, ଯଦିଓ ମେଡ଼ିକାଲ କଲେଜର ଡାକ୍ତର କେତେଜଣଙ୍କ ଠିକଣା ବି ଅଛି । କାମ ଆରମ୍ଭ କରିବାକୁ ହେବ ।

ତା ପୂର୍ବରୁ ନିଜ ଲୋକଙ୍କୁ ଖୋଜିବାକୁ ହେବ ତାକୁ । ଯିଏ ଜାଣିଥିବେ ଅଞ୍ଜଳିକୁ । କାହ୍ନୁକୁ ।

ଝରକା ସେପାଖରୁ ଆସୁଛି ବରା-ଛଣା ବାସ୍ନା । ସେଇ ଏକାଭଳି ପିଲାଦିନର ଅବିକଳ । ପିଉସୀ ମାନଙ୍କ ଗପ ଆସର ଜମେ, ତଳେ ଚଟାଣରେ ବସିପଡ଼ନ୍ତି ସଭିଏଁ, ମଝିରେ ଥାଳିଏ ବରା ସିଙ୍ଗଡ଼ା । ପାନ ଡାଲା । ଆଉ ଗୀତ । ଏଇ ବାସ୍ନା । ରେଡ଼ିଓରୁ ଆସୁଥିବା କେଉଁ ଗୀତର ସ୍ୱରଟିଏ ଶୁଭୁଚି, ସେଇ ପିଲାଦିନେ ଶୁଣିଥିବା ସ୍ୱରମାନଙ୍କ ପାଖାପାଖି । ନିଜ ଦେଶ ନହେଇ ବି ଏ ସବୁ ଆପଣାର ବୋଲି ଏଲି ବିଶ୍ୱାସ ପାଇଥିଲା । ବାପା ବସନ୍ତି ପିଉସୀ ମାନଙ୍କ ପାଖେ । ସେମାନେ ଅଳି କରନ୍ତି, 'ଆଉ ଗୋଟେ ଗାଆରେ ବାବୁ, ଧୀରାରେ, କି ଧନ ତୁ ନଦେଲୁ ଆଜ । କେଡ଼େ ସୁନ୍ଦର ବୋଲୁ ତୁ ପିଲାଦିନେ, ମନେଅଛି ନା ? ଗାଇଲୁ ଟିକିଏ ।'

ବାପା ପ୍ରଥମେ ନାହିଁ କରନ୍ତି, 'ପଦ ଗୁଡ଼ାକ ଆଉ ମନେ ନାହିଁ ନାନୀ, ସ୍ୱର ମନେଅଛି ଯାହା ।' ନାନୀମାନେ ଆଉରି ଅଳି କରନ୍ତି, 'ଆରେ ତୁ ଗାଆ । ପଦସବୁ ଆମେ ମନେପକେଇ ଦେବୁନି ।' ବାପା ଗାଆନ୍ତି, କେଡ଼େ ଖୋଲା ଗଳାରେ । କେଡ଼େ ଆନନ୍ଦରେ । ସେ ମୁହଁ ସେ ଚେହେରା ତାଙ୍କର ଜମା ଦିଶେନାହିଁ ଲଣ୍ଡନରେ ଥିବାବେଳେ । ସେମାନେ ଭାଇ ଭଉଣୀ ସବୁ ମିଶି ଏକୁ ଆରେକ ମନେ ପକେଇଦିଅନ୍ତି ଗୀତ ପଦମାନ, ମନେ ପକାନ୍ତି ତାଙ୍କ ପିଲାଦିନ, ସ୍କୁଲବେଳ କଥାସବୁ ମନେପକେଇ ହସନ୍ତି ।

ଏଲିର ମା କିନ୍ତୁ ଖଣ୍ଡେ ଦୂରରେ ବସିଥାନ୍ତି, ଚଉକୀ ଉପରେ ଏକୁଟିଆ । ତଳେ ବେଶୀ ସମୟ ବସିବା ତାଙ୍କ ଦେଇ ହୁଏନାହିଁ, ବସିଲେ ଗୋଡ଼ ପେଣ୍ଡାରେ ଔଷଦ ମାଲିସ କରିବାକୁ ହୁଏ ରାତିରେ । ଶିଖିଦେଇ ଶାଢ଼ୀ ପିନ୍ଧିବା ଭିନ୍ନ କଥା । ସମସ୍ତଙ୍କ ଭିତରେ ଥାଇ ବି ଅଲଗା ହୋଇ ଦେଖୁଥାନ୍ତି ସେ ବସିବସି, ଅନ୍ୟ ଗୋଟିଏ ଗ୍ରହରୁ ସତେ ଅବା ।

ସାନ ପିଲାମାନେ ଧାଁ ଦଉଡ଼ ଲଗେଇଥାନ୍ତି ଅଗଣାରେ । ସକାଳୁ ସଞ୍ଜଯାଏଁ ମଉଛବ ଲାଗିଥାଏ ସେ ଘରେ ।

ରାତିରେ ଉପର ମହଲା ନିଜ କୋଠରୀରେ ବାପା କହନ୍ତି, 'କଣ କହୁଚୁ ରେ ଏଲି ? ଆସିବା ନା ଆମେ ସଭିଏଁ, ଏଇ ଘରେ ଏକାଠି ରହିବା ?'

'ସଭିଏଁ କେମିତି ? ଏଲି ତା ନିଜଘର କରିବ ନି କି, ବାହା ହେବନି ?'

'ନାଇଁ ନାଇଁ । ଏଲି ଲାଗି ଆମର ଘର ଜୋଇଁଆ କରିବା । ଜାଣିଚ ନା ଘର ଜୋଇଁଆ କଣ ? ଆମ ଜୋଇଁ ଡାକ୍ତର ହେଇଥିବ, ନାଇଁରେ ମା ? ଏଲି ବି ଡାକ୍ତର । ଏ ଘରେ, ଏ ପାଖେ

ଏଲି, ସେପାଖ ଘରେ ବବି । ସକାଳେ ସବୁଦିନେ ପୁରି ଆଳୁଦମ୍ ଖିଆଯିବ, ସଞ୍ଜବେଳକୁ ବରା ସିଙ୍ଗଡ଼ା । ରାତରେ କ'ଣ କିରେ ?'

'ଖିରୀ ।' ବବି ଯୋଗଦିଏ ଏତେବେଳକେ ।

'ଆଉ କାକରା ?' ଏଲି ମନେପକେଇଦିଏ ।

'ମୁଁ ରହିବିନି ଏଠି ।' ବବିର ମନେପଡ଼ିଯାଏ, ତାର ପସନ୍ଦର ଜାଗା ଏ ନୁହେଁ ।

ବାପା ଫେରିଆସିଥିଲେ ନିଜ ସହରର, ନିଜ ଘରକୁ । ସ୍ୱେଚ୍ଛାରେ ଚାକିରୀରୁ ଅବସର ନେଇ ଚାଲିଆସିଥିଲେ ସେ । ହେଲେ ଏକୁଟିଆ ।

କେମିତି କଟିଥିଲା ତାଙ୍କର ସେ ଦିନମାନ, ଠିକ୍‌କରି ଏଲିକୁ ଜଣାନାହିଁ । ପିଲାଦିନେ ଯେବେ ଏଲି ପଚାରେ ମାଆକୁ, 'ଯିବାକି ମା ଆମେ ସତରେ, ଜେଜେଙ୍କ ଘରେ ଯାଇ ରହିବା ?'

ମା ଏଡ଼େଇଦିଏ ପ୍ରଶ୍ନକୁ । କହେ, 'ତୋ ବାପା ନିଜେ ଆଗେ ଯିବେ ନା ?'

॥୨॥

ରୁମ୍‌ରେ ବସି କେତେଟା ଫୋନ୍ କରିଦେଲା ପରେ ଆଉ କିଛି କାମନାହିଁ । ପଶ୍ଚିମ ଓଡ଼ିଶାରେ କୁଷ୍ଠରୋଗ ଉପରେ କାମ କରିବ ସେ । ରହିବା ଲାଗି ବୁର୍ଲା ମେଡ଼ିକାଲ କଲେଜ ଗେଷ୍ଟହାଉସ୍ ଭଲ ବୋଲି ଡାକ୍ତର ପଟ୍ଟନାୟକ କହିଛନ୍ତି । ଆରମ୍ଭରୁ କିଛିଦିନ ୟୁନିଭର୍ସିଟି ଗେଷ୍ଟହାଉସ୍‌ରେ ରହିବା କଥା ଠିକ୍ ହେଇଛି । ହେଲେ ଉଭୟ ଜାଗା ବେଶ୍ ଦୂର, ସାନ ସହରଟିଏ ଲେଖାଁ, ଯିବା ଆସିବା ସେତେ ସୁବିଧା ନୁହେଁ ଏଲି ଜାଣେ । ଡାକ୍ତର ପଟ୍ଟନାୟକ କହୁଚନ୍ତି, 'ଏଠି ଆମ ଘରଟି ଗେଷ୍ଟହାଉସ୍ ପାଖରେ । ମୋ ସ୍ତ୍ରୀ ନିଜେ ଡାକ୍ତର । ଗାଡ଼ି ରହିବ ପାଖରେ । ସୁବିଧାରେ କାମ କରିବେ । ସେଠି ପୁରୁଣା କାଳିଆ ଅସନା ସହରରେ ରହି କରିବେ କ'ଣ ? ଗାଡ଼ି ପଠେଇଦେଉଚି ଚାଲି ଆସନ୍ତୁ ।'

ଏଲି କହିପାରୁନି ଏଇଟା ତା'ର ପୁରୁଣା ସହର ବୋଲି, ନିଜ ସହର ବୋଲି । କେବଳ କହିଲା, 'ଦିନ କେଇଟା ପରେ ଉଠିଯିବି ଯେ । ଦିନେ ଦି'ଦିନ ଟିକିଏ ବୁଲି ଦେଖେଁ ଆଗ । ଏଠି ସମସ୍ତେ ବଡ଼ ସାହାଯ୍ୟ କରୁଚନ୍ତି, ବଡ଼ ଆତ୍ମୀୟ  ଭାବ ଏଠି ।'

ପଟ୍ଟନାୟକ ହସିଲେ, ଫୋନ୍‌ରେ ପାଞ୍ଚ ସାତ ସେକେଣ୍ଡ କାଳ କେବଳ ତାଙ୍କର ହସ ଆସିଲା, ଆପଣାପଣର ।

'ଏଠି ସ୍ଥାନୀୟ ଲୋକଙ୍କୁ ଆପଣ ଜାଣିନାହାନ୍ତି ।'

ଆଉ ଚାରିସେକେଣ୍ଡର ହସ ପରେ, 'ଏମାନଙ୍କର କଥାବାର୍ତ୍ତାରୁ ଆପଣ କିଛି ଅନୁମାନ କରି ପାରିବେନି ମାଡାମ୍ ।'

ହସ ଏଥର ଚାଲିଲା ସାତ ସେକେଣ୍ଡ ଯାବତ । 'ଆପଣ ବିଦେଶୀ ବୋଲି ଜାଣିଲା ମାତ୍ରେ...'

ଜେଜେବାପା ବି ଏଇଆ କହୁଥିଲେ ତା ମାଆଙ୍କୁ, ବାପାଙ୍କୁ ବି । ସ୍ଥାନୀୟ ଲୋକଙ୍କ ଠାରୁ ଦୂରରେ ରହିଲେ ଭଲ । ଖାଲି ନ୍ୟସ୍ତ ସ୍ୱାର୍ଥ ସମସ୍ତେ । ଏଲି ବୁଝିପାରିନି ଏଯାଏଁ, କଣ ଠିକ୍ ଏ କଥାର ଅର୍ଥ । ଉପଦେଷ୍ଟା ନିଜେ ସ୍ଥାନୀୟ ଲୋକଙ୍କ ଭିତରୁ ଜଣେ ନୁହେଁ କି ?

ଆସିଲାବେଳେ ପ୍ଲେନ୍ ରେ ପାଖରେ ବସିଥିବା ବିଦେଶୀ ଯାତ୍ରୀ ଜଣକ ବଡ଼ ଉତ୍ସାହରେ ମାନଚିତ୍ର ଦେଖାଇ କହିଥିଲା କେଉଁସବୁ ଦର୍ଶନୀୟ ସ୍ଥାନ ସବୁକୁ ସେ ଯିବ, ତାପରେ ଏଲିକୁ ପଚାରିଥିଲା । ଏଲି ମାନଚିତ୍ରରେ ଓଡ଼ିଶାର ଅନାମଧେୟ ଅଞ୍ଚଳଟିକୁ ଦେଖାଇଦେଇ କହିଥିଲା, 'ଏଇଠିକି ଯିବି ମୁଁ । ଏଇ ହେଉଚି ମହାନଦୀ, ଯାରି କୂଳରେ ଛୋଟିଆ ସହରଟି ଏଇ, ଏଠି ମୋ ବାପା ଜନ୍ମହେଇଥିଲେ, ପୁଣି ପାଠ ପଢ଼ି ବିଲାତରେ ପ୍ରଫେସର ହେଇଥିଲେ ।' ଟୁରିଷ୍ଟ ଭଦ୍ରବ୍ୟକ୍ତି ମନେକଲେ ଯାତ୍ରା ମଝିରେ ହିଁ ତାଙ୍କୁ ମହାର୍ଘ ଅନୁଭବ ମିଳିବା ଆରମ୍ଭ ହେଲାଣି । ପଚାରିଲେ 'ସତେ ? ଏଇଠୁ ବାହାରିଥିଲେ ତୁମ ବାପା ?'

ଏଲି କହିବାକୁ ଯାଇ ବି ବୁଝାଇପାରିଲା ନାହିଁ, ଯେ ତା ଜେଜେବାପା ସାଧୁ ନାୟକ ଉଠିଆସିଥିଲେ ବଲାଙ୍ଗୀର ଗଡ଼ଜାତର ଆହୁରି ଅନ୍ଧକାର ଅଞ୍ଚଳରୁ । ଉନବିଂଶ ଶତାବ୍ଦୀର ଶେଷଭାଗରେ କାହିଁକି କେଜାଣି ଦଶ ବାର ବର୍ଷର ପିଲାଟିଏ ଜିଦି ଧରିଥିଲା ପାଠ ପଢ଼ି ବଡ଼ମଣିଷ ହେବ ବୋଲି । ତାର ମାଟିଘର ଦୀପ ଆଲୁଅରେ ପଢ଼ା କୋଉ ବହିର ପାଠ ତାକୁ ଏମିତି ଟାଣିଲା କେଜାଣି, ଦଶଦିନ ବାଟ କେତେମେତେ ଯାତ୍ରା କରି ସେ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ଯାଇଥିଲା କଟକ । ଯାଇଥିଲା ପୁଣି କଲେଜ ପାଠ ପଢ଼ିବାକୁ । କଳା ଆଲଖାଲା ଟୋପିରେ ଗ୍ରାଜୁଏଟ୍ ଡିଗ୍ରୀ ନେଇଥିବା ଫଟୋ ଉଠାଇଲା ପୁଣି, କାନ୍ଥରେ ଶୋଭା ପାଇବ ବୋଲି କାଳକାଳକୁ ।

ହୋଟେଲ୍ ବାଲା ଆସି ନିଜେ ଏଲିକୁ ପଚାରୁଛି, 'ଆଜ୍ଞା ଖାଇବା ରୁମ୍‌ରେ ନେବେ ତ ?'

ସଫା ସୁତୁରା ନୂଆ ହୋଟେଲ ଟିଏ, ସହରର ଶ୍ରେଷ୍ଠରୁ ଗୋଟିଏ ହେଇଥିବ ନିଶ୍ଚୟ । ପିଲାଦିନ କଥା ଆଉ ମନେନାହିଁ ସେତେ । ହେଲେ ଭାରତ ଉପରେ ଉପନ୍ୟାସ ପଢ଼ିଚି ପ୍ରଚୁର, ସିନେମା ଦେଖାଯାଇଚି ତତୋଧିକ । ସମସ୍ତେ ସେଥିରୁ ଗୋଟିଏ ଲେଖାଁ ଚରିତ୍ର ମନେହେଉଚନ୍ତି ।

ଛୋଟିଆ କ୍ୟାମେରାଟିକୁ ବ୍ୟାଗ୍‌ରୁ କାଢ଼ି ସକାଳୁ ଅଳ୍ପ କେତୋଟି ଉଠିଥିବା ଫଟୋ ଦେଖିବାରେ ଲାଗିଲା ସେ । କ୍ୟାମେରାଟି ତା'ର ଅସ୍ତ୍ର । ବୁଲିବା ଲାଗି ବାହାନା । ଲୋକଙ୍କୁ ଭେଟିବା ଲାଗି ବି । ତାଙ୍କ ଚେହେରା ଚିପିନେଇ ପରେ ସ୍ମୃତି ସାଙ୍ଗେ ମିଳେଇବା ଲାଗି, କୋଉ ଛବି ସାଙ୍ଗେ ଏବର କେଉଁ ଛବିଟି ମିଶିଯିବ ଅବା । ପିଲାଦିନର ଯେଉଁ ଛବି ଗୁଡିଏ ମୁଣ୍ଡ ଭିତରେ ସାଇତା ଅଛି, ସେଇ ବୟସର ରଂଗ ବି ଥିବ ତହିଁରେ । ଏବେ ଦେଖିଲେ, ଚିହ୍ନି ହେଉଚି କିଛି, କିଛି କିଛି ନାହିଁ । ସମୟ ତାକୁ ସବୁ ବଦଳାଇ ଦେଇଥିବ । ଘଷରା ହେଇ ଅଚଳନ୍ତି ହେଇଯିବେଣି, ଉଭେଇଯାଇଥିବେ କିଛି ଏ ଭିତରେ ।

ବାକ୍ସରୁ କାଢ଼ିଲା ସେ ଗ୍ରୀଟିଂ କାର୍ଡଟିଏ, କାହିଁ କେତେ ପୁରୁଣା, ପନ୍ଦର ବର୍ଷ ତଳର ହୋଇଥିବ । ସାନ ଗୁଲୁଗୁଲିଆ ପିଲାଟିଏ ବାପାଙ୍କ କୋଳରେ ହସୁଛି । ଏଇ ଫଟୋ ଗୋଟିକ ତାର ସମ୍ବଳ, ରତ୍ନ ଦ୍ୱୀପର ମାନଚିତ୍ର ।

ହୋଟେଲ ମାଲିକ ପଚାରୁଛି, 'ମାଡାମ୍ ଟାକ୍ସି ଡାକିଦେବି ?'

ପାଦରେ ଚାଲି ବୁଲିବାଟା ବୋଧେ ହୋଟେଲ ମାଲିକ ହରଓ୍ୱନ୍ତ ସିଂକୁ ଅସୁନ୍ଦର ଲାଗୁଛି । ଏଲି କହିଲା, 'କିଛି ଯାଏଆସେ ନାହିଁ । ମୋର ଟାକ୍ସି ବନ୍ଧା ହୋଇଛି । ଆପଣ ଚିନ୍ତା କରନ୍ତୁନି ।'

ସଞ୍ଜବେଳେ ମ୍ୟାନେଜର ସାହେବ କହିଲେ, 'ଜଣେ ଭଦ୍ରଲୋକ ଖୋଜୁଚନ୍ତି ଆପଣଙ୍କୁ । ଏଡଭୋକେଟ୍ ରାଘବେନ୍ଦ୍ର ଶର୍ମା ।'

ଏଲି ତଳ ଲାଉଞ୍ଜକୁ ଆସିଲା । ରିସେପସନ ପାଖେ ଦୁଇଟି ସୋଫା, ସେଠି ବସିଥିବା ଭଦ୍ରଲୋକ, କଳା ଡେଙ୍ଗା ପତଳା, କୁଞ୍ଚା ଭ୍ରୁରୁ ତଳୁ ନିରେଖି ଚାହିଁଥିବା ଦୃଷ୍ଟି ।

'ଆଜ୍ଞା ମୁଁ ରଘୁ ଓକିଲ । ଶୁଣିଲି ଆପଣ ମୋତେ ଖୋଜୁଥିଲେ ?'

ଏଲି ଭାବିଲା କି ଉତ୍ତର ଦେବ ବୋଲି । କହିଲା, 'ମୁଁ କମଳା ନିଳୟକୁ ଯାଇଥିଲି । ଆପଣ ସେଇଠି ରହନ୍ତି ?'

'ଆଜ୍ଞା ।'

ସୋଫାରେ ବସି କ'ଣ କେମିତି କଥା ଆରମ୍ଭ କରିବ ଧନ୍ଦି ହେଉଥିଲା ବେଳେ ରଘୁ ଓକିଲ, କହିଲେ 'ଆପଣ ବିଧୁ ନାୟକଙ୍କୁ ଖୋଜୁଥିଲେ ? ସିଏ ଦଶବର୍ଷ ତଳୁ ମରିଗଲେଣି ।'

'ଜାଣେ ।'

'ଆପଣ ତାଙ୍କର କେହି ହୁଅନ୍ତି ବୋଧେ ? କେମିତି ଜାଣିଲେ ତାଙ୍କୁ ?'

'ମୋର ପ୍ରଫେସର ଥିଲେ । ପାଠ ପଢ଼ାଇଛନ୍ତି ମୋତେ ଲଣ୍ଡନରେ । ମୁଁ ଅନ୍ୟ କାମରେ ଆସିଥିଲି । ଭାବିଲି ଦେଖିଯାଏ ତାଙ୍କ ଘରଟି ।'

'ଓ । ସକାଳେ ଆସିଥିଲେ, କେବଳ ଘରଟି ଦେଖିବେ ବୋଲି ?'

ଏଲି କହିଲା ନିଜ କାମ କଥା, କାହିଁକି ସେ ଆସିଚି ଏ ସହରକୁ । ରଘୁ ଓକିଲ ପକେଟରୁ ଚଷମା କାଢ଼ି ପିନ୍ଧିଲେ, ଟିକିଏ ବେଳ ଏଲିକୁ ଚାହିଁ ତା କଥା ଶୁଣିଲେ, ପୁଣି ଚଷମା କାଢ଼ି ପକେଟରେ ରଖିଦେଲେ । କହିଲେ, 'ଆସନ୍ତୁ ତେବେ, ଆମ ଘର ଦେଖିଆସିବେ । ମୋତେ ଖୁସି ଲାଗିବ ଆପଣଙ୍କ ପାଦ ମୋ ଘରେ ପଡ଼ିଲେ ।'

ରଘୁ ଓକିଲଙ୍କ ସ୍କୁଟର ପଛେ ପଛେ ଟାକ୍ସିରେ ଗଲା ଏଲି । ସଞ୍ଜ ଅନ୍ଧାରରେ ଘରଟି ପୂର୍ବ ଅପେକ୍ଷା ଆଉରି ବଦଳିଲା ଦେଖାଯାଉଚି । ରାସ୍ତାର ପୁରୁଣା ଟିଣ ଢଙ୍କା ବଲବ ଯାଇ ଟ୍ୟୁବ୍ ଲଗାଯାଇଚି ।

ରଘୁ ଓକିଲ ତାଲା ଖୋଲିଲେ, ଯଦିଓ ଭିତରୁ କଥାବାର୍ତ୍ତା ସୋରଶବ୍ଦ ଶୁଭୁଥିଲା । ବାରଣ୍ଡା ଉପରକୁ ନିଜ ସ୍କୁଟର ଚଢ଼େଇ ସେ ଡାକିଲେ, 'ଆସନ୍ତୁ ଆଜ୍ଞା ।'

ଭିତର ଘରକୁ ନୁହେଁ, ବାରଣ୍ଡା କଡ଼ରେ ଥିବା ସାନ କୋଠରୀଟିକୁ ପାଛୋଟି ନେଲେ ସେ ଏଲିକୁ ।

'ଏଇ ମୋର ବିନୀତ ଅଫିସ୍ । ଓକିଲାତିର ଏଇ ଛୋଟିଆ ଲାଇବ୍ରେରୀଟିଏ ବି କରିଚି ।'

ମନେପଡ଼ିଲା ଏଥର । ହଁ, ଲାଇବ୍ରେରୀ ଥିଲା ଏ । ମଣିଷେ ଉଚ୍ଚ କାଠ ଆଲମାରୀ ମାନଙ୍କରେ ବହି ଥିଲା, କଦବା ଥରେ ଅଧେ ଦେଖିଥିବ ସେ ।

ପିଲାମାନଙ୍କ ଲାଗି ପ୍ରବେଶ ନିଷେଧ ଥିଲା କୋଠରୀଟି । ଦିନେ ବାପା ନିଜ ସାଙ୍ଗେ ଭିତରକୁ ନେଇ ଦେଖାଇଥିଲେ ଏଲିକୁ । ବଡ଼ ଗର୍ବରେ କହିଥିଲେ, 'ଆମ ପିଲାଦିନେ ମୋ ବାପା ଖାଲି ବହି କିଣିବାକୁ କଲିକତା ଯାଆନ୍ତି ଜାଣିଛୁ । ପିଲାଦିନେ ସେ ନିଜେ ବାଛି ମୋତେ ପଢ଼ିବାଲାଗି ବହି ଦିଅନ୍ତି । ଆଜି ଯଦି ଶୁକ୍ରବାର, ପଢ଼ି ସାରିବାକୁ ହେବ ସୋମବାର ସୁଦ୍ଧା । ବୁଝ ନବୁଝ, ଏମୁଣ୍ଡରୁ ସେମୁଣ୍ଡ ପଢି ମୋତେ ସାରାଂଶ କହିବାକୁ ହୁଏ ତାଙ୍କୁ, ଯାହା ଯେତିକି ବୁଝାପଡ଼ିଲା । ଏମିତି ହୁଏ ଆମର ବହିପଢ଼ା, ବୁଝିଲୁ ?'

ଗୋଟିଏ ଡ୍ରୟାର ଲଗା ଅଫିସ ଟେବୁଲ । ମାଲିକ ପାଖ ଘୁରା ଚଉକୀରେ ନିଜେ ବସି ରଘୁ ଓକିଲ ଆରପାଖ ଚଉକୀ ଧାଡ଼ିକ ରୁ ଗୋଟିଏ ଦେଖାଇଦେଲେ ଏଲିକୁ ।

'ଆପଣଙ୍କର ନାଆଁ ପରିଚୟ କିଛି ହେଲେ ଏ ଯାକେ ପାଇଲିନାଇଁ ଯେ ଆଜ୍ଞା ?'

'ମୁଁ ଏଞ୍ଜେଲ୍ ପ୍ୟାଟ୍ରିକ୍ । ପେଶାରେ ଡାକ୍ତର, ଲଣ୍ଡନରୁ ଆସିଚି କାମରେ...'

ତୃତୀୟ ଥର ଲାଗି ପରିଚୟ ପାଇବି ସନ୍ତୁଷ୍ଟ ଜଣାଗଲେ ନାଇଁ ଓକିଲ ।

'ଆପଣ ବିଧୁ ନାୟକଙ୍କ ଝିଅ ?'

ଚୁପ୍ ରହିଲା ଏଲି । ଓକିଲ ହସିଲେ, ଶିଷ୍ଟାଚାରର ସୀମାରୁ ଟିକିଏ ବେଶୀ ।

'ନିଜ ଘରକୁ ଆସିବାକୁ ମନ କଲେ, ସେଇଆ କହୁନାହାନ୍ତି ।'

'ନିଜ ଘର ବୋଲି କହିବି ବା କ'ଣ । ମୁଁ ବିଧୁଭୂଷଣ ନାୟକଙ୍କ ଝିଅ ସତ, ହେଲେ ଅନେକ ଦିନୁ ଏଇ ଘରକୁ ଆଉ ଆମର ଯିବାଆସିବା ତ ନଥିଲା ।'

'ତାଙ୍କ ସମ୍ପତ୍ତି ବିଷୟରେ ବୁଝାବୁଝି କରିବେ ?'

ରଘୁ ଓକିଲ ରୋକ୍‌ଠୋକ୍ କଥା ଦିପଦ କହିଦେଇ ବିପକ୍ଷ ମହକିଲ ଠୁ ସତ ଓଗାଳି ନେଇ ଥିବାପରି ଓଠ ଚିପି ହସିଲେ । ଏଲି ଆଶ୍ଚର୍ଯ୍ୟ ହେଲା ଲୋକଟିର ବ୍ୟବହାରରେ, ନିଜ ଚତୁରତା କୁ ନେଇ ତାର ବଡ଼ିମାରେ ।

ପଚାରିଲା ଏଲି, 'କ'ଣ ବହୁତ ସମ୍ପତ୍ତି ଛାଡ଼ି ଯାଇଚନ୍ତି ମୋ ବାପା ?'

ରଘୁ ଓକିଲ ଏଥର ଶୀତଳ କଟୁରୀର ଚାହାଣୀରେ ତଉଲିଲେ ତାକୁ ।

'ଆପଣଙ୍କର କ'ଣ ଧାରଣା ? ଏତେ ଦୂର ଆସିଚନ୍ତି ଏଇଥିଲାଗି ଯେତେବେଳେ ?'

ବାକ୍‌ଯୁଦ୍ଧ ଲାଗି ଧୈର୍ଯ୍ୟ ନାହିଁ ଏଲିର । କାହିଁକି ଏସବୁ ଆଉ, ଅକାରଣ । କହିଲା, 'ମୁଁ ପିଲାଦିନେ ଆସିଚି ଏଇ ଘରକୁ, କେଇଥର ଆସି ଦୀର୍ଘ ଛୁଟି କଟାଇଚି । ପିଲାଦିନେ ଏଇ ଘରଟି ଖୁବ୍ ବଡ଼ ମନେ ହେଉଥିଲା । ଏବେ ଦେଖୁଚି ସାଧାରଣ ଘରଟିଏ ।'

ଓକିଲ ଚୁପ୍ ରହିଲେ ଆଉରି ଅପେକ୍ଷା କଲାପରି । ପୁଣି ଏଲି କହିଲା, 'ଗାଁରେ ବି ଜେଜେଙ୍କ ଚାଷ ଜମି ଥିଲା, ଥରେ ଯାଇଥିଲୁ ଧାନ ଅମଳ ଦେଖିବାକୁ ।'

'ଆପଣଙ୍କୁ ଏସବୁ ମିଳିପାରିବ ବୋଲି ଆଶାକରୁଛନ୍ତି ?'

ଏଲି ଓକିଲ ମୁହଁକୁ ଅନେଇ ପରବର୍ତ୍ତୀ ବିଷୟ ଖୋଜିଲା । କହିଲା, 'ମୋ ବାପା ବିଧୂ ଭୂଷଣ ନାୟକ ବିଲାତରେ ପ୍ରଫେସର ଥିଲେ । ଏଠି ଆସି ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ।'

କଥା ନସରୁଣୁ ଓକିଲ ଅଧୈର୍ଯ୍ୟ ହେଲାଭଳି କହିଲେ, 'ତା ସତ । ହେଲେ ଏଠି ଅନ୍ତତଃ ସେ କିଛି ସମ୍ପତ୍ତି କମେଇ ନାହାନ୍ତି । ବରଂ ଉଡ଼େଇଦେଇ ଯାଇଚନ୍ତି । ତାଆରି ଆଶାରେ ଆସିଚନ୍ତି ଆପଣ ?'

'କାହ୍ନୁ କାହିଁ ? ତାକୁ ଭେଟିବାର ଇଚ୍ଛା ଅଛି ।'

ଏଥରକ ରଘୁ ଓକିଲ ଚମକିଲେ ଓ ଏଲିର ଚତୁର ଚାହାଣୀରେ ଚମକୃତ ହେଲାଭଳି ଦିଶିଲେ ।

'ଆଚ୍ଛା । ଆପଣ ତେବେ କାହ୍ନୁ କଥା ବୁଝିବାକୁ ଆସିଲେ ? ଏତେଦିନ ପରେ ? ଯାହେଉ ।'

'କାହ୍ନୁ କୋଉଠି ଅଛି ? ଏଠି ତ ରହୁନି ବୋଧେ ? କାହା ପାଖରେ ଅଛି ?'

ତାକୁ ନିଘାକଲେ କିଛିକ୍ଷଣ ରଘୁ ଓକିଲ, ନାକ ଉପରକୁ ଚଷମା ଖସେଇ । ବୋଧେ ଏଲିର ଉଦ୍ଦେଶ୍ୟ ଅନ୍ଦାଜ କରିବା ଆଉ ସହଜ ହେଉନାହିଁ । କହିଲେ, 'ତା ବାପା ମା ଦିହେଁ ଆଉ ଇହଜଗତରେ ନାହାନ୍ତି, ଜାଣିଚନ୍ତି ତ ?'

'ହଁ, କିନ୍ତୁ ଏଇଟା ତା ଘର ନୁହେଁ କି ?'

ଟେବୁଲ୍ ଉପର କାଗଜ ଖେଳାଇ ଚିଠି ଖଣ୍ଡିଏ ଉଠେଇ ନେଇ ଲଫାପା ଚିରି ପଢ଼ି ବସିଲେ ଓକିଲ, ସେଇଠି ଦୃଷ୍ଟି ରଖି କହିଲେ, 'ଇଏ ତା ଘର ନା ନୁହେଁ, ନିଷ୍ପତ୍ତି ହେବା ଅବସ୍ଥାରେ ଥିଲାକି ସେ ? ପାଞ୍ଚ ବର୍ଷର ପିଲା ନିଜେ ବିଚାର କରିବ ସେ କୋଉଠି ରହିବ ଆଉ ତାର ସମ୍ପତ୍ତି କେତେ ?'

'ସତକଥା । ସେଇଠୁ ?'

'ପିଲାଟି ଯାହା ପାଖରେ ରହିଲା, ଅଥବା ଯିଏ ତାକୁ ପାଳିଲା, ସିଏ ଯୋଉଠି ରହିଲା ପିଲା ତା ପାଖେ ରହିବ । ଏଇଠି ରହିବ କେମିତି ? ଆଉ ତା'ର ପାଳକ ପିତାମାତାଙ୍କର କେତେ ଅଧିକାର ଏଇ ଘରେ, ସେ କଥା ବିଚାରଯୋଗ୍ୟ ନା ନୁହେଁ ?'

'ସେ କଥା ମୁଁ ପଚାରୁନାହିଁ । କାହ୍ନୁ କେଉଁଠି ଅଛି, ଏଠି ତା ନିଜ ଘରେ କାହିଁକି ନାହିଁ, ଏତିକି ଜାଣିବାକୁ ଚାହୁଁଚି କେବଳ ।'

'ଆଜ୍ଞା ମୁଁ ଜାଣେ । ଆପଣ ନିଜ ବାପା ଜେଜେଙ୍କ ସମ୍ପତ୍ତି କଥା ବୁଝିବାକୁ ଆସିଚନ୍ତି ତ ? ପ୍ରଥମେ ଆପଣଙ୍କର ସେଥିରେ ଅଧିକାର କେତେ, ସେକଥା ବୁଝିବା ପରେ ଯାଇ ମୁଁ ଆଲୋଚନା କରିବି ନା ନାଇଁ ?'

ନିଶ୍ୱାସ ଛାଡ଼ି ଏଥର ଏଲି ଥକା ହେଇ ଆଉଜି ପଡ଼ିଲା ଚେଆର ପଛକୁ । ପାରୁପର୍ଯ୍ୟନ୍ତ ଶାନ୍ତ ଗଳାରେ କହିଲା, 'ମୋର ନିଜ ସମ୍ପତ୍ତି ଯଥେଷ୍ଟ ଅଛି ଆଜ୍ଞା, ଏଠିକାର ଏ ସମ୍ପତ୍ତିଠୁ ଢେର ଅଧିକ । ମୁଁ ନିଜେ ଜଣେ ଉଚ୍ଚ ପଦବୀଧାରୀ ଡାକ୍ତର । ରୋଜଗାର ଭଲ । ମୁଁ ଏଠିକି ସମ୍ପତ୍ତି ଲୋଭରେ ଆସିନାହିଁ ।'

'ଓ ! ନିଜ ଭାଇଟି ଲାଗି ଆସିଚନ୍ତି ଆପଣ ? ଯିଏ ଅନାଥ ହେବାର ଦଶବର୍ଷ ହେଇଗଲାଣି, ତାଆରି ସାବତ ଭଉଣୀ ଆପଣ ଆଜି ଆସିଚନ୍ତି ତା ଖବର ନେବାକୁ ?'

'ହଁ, ଏକଥା ଠିକ୍ । ଦାୟିତ୍ୱ ମୁଣ୍ଡେଇବାକୁ ନୁହେଁ । ମୁଁ ଯେଉଁ ଦେଶରେ ବଢ଼ିଚି ସେଠି ସାବତ ଭାଇ ଲାଗି ମୋର କିଛି ଦାୟିତ୍ୱ ନାହିଁ । କୌତୂହଳ ବୋଲି କହି ପାରନ୍ତି । ଏ ଘରକୁ ଆସିଚି, କେବଳ ମୋ ବାପାଙ୍କ ସ୍ମୃତି ଲାଗି ବୋଲି କହିପାରନ୍ତି ।'

ଓକିଲ ହସିଲେ ତାଙ୍କର ରିଆଜ କରା ହସ, ଜାଣିଶୁଣି ବେଶୀ ବକ୍ରଠାଣୀରେ ।

'ବାପା ମରିବାର ଦଶବର୍ଷ ଯାଏଁ ଆପଣ କି ତାଙ୍କ ପୁଅଙ୍କର କିଛି କୌତୂହଳ ଉଦ୍ରେକ ହେଇନଥିଲା ? କର୍ତ୍ତବ୍ୟବୋଧ କଥା ନ ଉଠାଇଲେ ଭଲ, କାରଣ ଆପଣଙ୍କ ବିଦେଶୀ ସଂସ୍କୃତି ବିଷୟରେ ମୁଁ ଅଜ୍ଞ ପ୍ରାୟ । ତଥାପି କୌତୂହଳବଶତଃ ଆପଣଙ୍କ ବାପାଙ୍କ ଖବର ନେଇଥିଲେ କେବେ, ହିନ୍ଦୁ ବ୍ରାହ୍ମଣ ଘରେ ଜନ୍ମ ହେଇବି ଯାହାର ବାର୍ଷିକ ଶ୍ରାଦ୍ଧଟାଏ ବି କରାହୁଏ ନାହିଁ ?'

'ତାଙ୍କ ମରିବା ଖବର ଆମେ ପାଇନଥିଲୁ । ବହୁତ ଡେରୀରେ ପାଇଲୁ ।'

ଏଲିର ଗଳାରେ ବାମ୍ପ ଗୁଳାଟିଏ । ସେ ଚଉକୀ ଛାଡ଼ି ଉଠିଲା । ଓକିଲ ତା ପଛେ ପଛେ ଆସିଲେ । ବାଟେଇ ଦେବାକୁ ଆସି ସେ କହିଲେ, 'ଦେଖନ୍ତୁ, ମୋତେ ଭୁଲ୍ ବୁଝନ୍ତୁ ନାହିଁ । ନିଜ ବାପ ଜେଜେଙ୍କ ସମ୍ପତ୍ତିରେ ଆପଣଙ୍କ ହକ୍ ଅଛି । ମୁଁ ସେକଥା ଅସ୍ୱୀକାର ତ କରୁନାହିଁ । ତଥାପି ଦେଶର ଆଇନ୍ କାନୁନ୍ ମାନିବାକୁ ତ ପୁଣି ପଡ଼ିବ ।'

କାର କବାଟ ଖୋଲି ଏଲି ଚୁପ୍‌ଚାପ୍ ବସିଲା । ଏତେବେଳକେ କଥା କହିବା ଲାଗି ସ୍ୱର ଫୁଟିଲା ତାର, 'କାହ୍ନୁ ବୋଧେ ଆପଣଙ୍କ ପାଖେ ରହୁନାହିଁ । ତା ଠିକଣା ଥିଲେ ଟିକିଏ ହୋଟେଲରେ ଜଣେଇଦେବେ ।'

ଝରକା ପାଖକୁ ଓକିଲ ଆସିଲେ, କହିଲେ, 'ପିଲାଟିର ଦେଖାଚାହାଁ ନେଇ କିଛି ଦାୟିତ୍ୱ ଆଜ୍ଞା ମୋ ଉପରେ ବି ନ୍ୟସ୍ତ । ତା ଭଲମନ୍ଦ କଥା ବୁଝି ବିଚାରି ମୋତେ ଯାହା କରିବାକୁ ହେବ କରିବି ।'

ଗାଡ଼ି ଷ୍ଟାର୍ଟ ହେଲାପରେ ବି ଝରକାରେ ହାତ ରଖି ଯିବାକୁ ନଦେଇ ଓକିଲ କହିଲେ, ଏଥର ଆଦୌ ନହସି, 'ଆପଣ ତ ଧର୍ମ ପରିବର୍ତ୍ତନ ବି କରିଛନ୍ତି । ଅଞ୍ଜଳି ନାୟକରୁ ଏଞ୍ଜେଲ ପ୍ୟାଟ୍ରିକ । ଆପଣଙ୍କ ବାପା ଜେଜେଙ୍କେ ସମ୍ପତ୍ତି ଉପରେ ଦାବୀ କେତେ ରହିଲା ସେକଥା ବିଚାର ସାପେକ୍ଷ ।'

ଏଲି ସେ ଆତ୍ମନିଷ୍ଠିତ ଗମ୍ଭୀର ମୁହଁରୁ କିଛି ଉତ୍ତର କରିବାକୁ ଚେଷ୍ଟାକରି ପରାସ୍ତ ହେଲା । ହାତଯୋଡ଼ି ଓକିଲଙ୍କୁ ନମସ୍କାର କରି ଡ୍ରାଇଭରକୁ କହିଲା, 'ହୋଟେଲ କୁ ଚାଲ ।'

||୩||

ରୁମ୍‌କୁ ଫେରିଲାକ୍ଷଣି ଏଲି ସିଧା ସୋଫାରେ ବସିପଡ଼ି ଗୁଡ଼ାଏ କାନ୍ଦି ପକାଇ, ପୁଣି ହାତମୁହଁ ଧୋଇ ସାଷ୍ଟମ ହେଲା । ବିଛଣାକୁ ଆସି ଛାତକୁ ଚାହିଁ ଭାବୁ ଭାବୁ କେତେବେଳେ ନିଦ ଆସିଗଲା । ଉଡାଜାହାଜ ରେ ଆସିଥିବା ସମୟ ବ୍ୟବଧାନର ଥକା ଜାଣି ହୁଏନାହିଁ । ଶୋଇପଡ଼ି ଉଠିଲା ବେଳକୁ ୯ରକା ବାହାରେ ସଞ୍ଜ ନଇଁ ଆସିଲାଣି ।

ଟେବୁଲ୍ ଉପରେ ଖାଇବା ସେମିତି ଘୋଡ଼ା ହେଇ ରହିଚି । ଏତେବେଳକୁ ଗିଲାସେ ହ୍ୱିସ୍କି ମନେପଡୁଚି । ହେଲେ ଏଠି ଚଳିବ ନାଇଁ, ଥାଉ । ଏକୁଟିଆ ସ୍ୱୀଟିଏ ହୋଟେଲ ରୁମ୍‌କୁ ମଦ ମଗାଇଲେ, କାଲିକି ହୁଏତ ଆଉ ସିଂ ମ୍ୟାନେଜର ସମ୍ଭ୍ରମରେ କଥା କହିବ ନାହିଁ । ଫୋନ୍ ଉଠାଇ ଚା ମଗାଇଲା ସେ । ଡ୍ରେସ୍ ପିନ୍ଧା ହୋଟେଲ ଟୋକା ଆଣି ଥୋଇଲା । ଟିପଟ୍ ରେ କଡ଼ା ଚା, ଚୀନା ବାସନରେ ଚିନି, ପ୍ଲେଟରେ ବିସ୍କୁଟ । ଦାନ୍ତ ନିକୁଟି ସେ କହିଲା ହିନ୍ଦୀରେ, 'ଚିନି ଅଲଗା ଲାୟା ହୁଁ, ମିଶାକେ ପିଜିଏ ।'

ଏଲି ପର୍ସରୁ କାଢ଼ି ବକ୍‌ଶିସ ଦେଇ ଓଡ଼ିଆରେ କହିଲା, 'ହଉ ଧନ୍ୟବାଦ । ଖାଇବା ଥାଳିଟା ଉଠେଇ ନେବ ପ୍ଲିଜ୍ ।'

ଥାଳି ଉଠେଇ ନେଉ ନେଉ ପୁଣି ଦାନ୍ତ ନିକୁଟି ଖନେଇ ହିନ୍ଦୀ କହିଲା ଟୋକାଟି, 'ମାଡାମ ଆପ ତୋ ଭାତ ନହୀଁ ଖାୟା । ଆମ ଦେଶ ଖାନା କ୍ୟା ପସନ୍ଦ ନେହିଁ ହୈ ?'

ଏଲି ଯେବେ ଓଡ଼ିଆରେ କଥା କହେ, ସବୁଠି ଜବାବ ମିଳେ ହିନ୍ଦୀ ନଚେତ୍ ଇଂରାଜୀରେ । କପରେ ଚା ଢାଳି ଢାଳୁ ସେ ତା ଆତ୍ମୀୟତାର ଉତ୍ତର ଦେଲା, 'ନାଇଁ, ଭୋକ ନଥିଲା । ତମ ହୋଟେଲ୍ ଖାଇବା ଖୁବ୍ ଭଲ ।'

ଖୀର ଦିଆ ଏ କଡ଼ା ଚା' ର ସ୍ୱାଦ ମନେଅଛି । ପିଲାଦିନେ ଏଥିରେ ଗୋଲ ଗୋଲ ଗରମ ପୁରି ବୁଡ଼େଇ ଖିଆଯାଏ । କମଳା ନିଳୟର ଭିତର ବାରଣ୍ଡା ପଛକୁ ଅଗଣା କଡ଼ରେ ଅଲଗା ହେଇ ଗୋଷେଇ ଘର, ଖପର ଛାଆଣୀ । ତାଆରି ପାଖକୁ ଅଣଓସାରିଆ ଜଳଖିଆ ପିଣ୍ଡା, ସେଇଠି ସକାଳୁ ଧାଡ଼ିହେଇ ପ୍ରଥମେ ବସନ୍ତି ସାନ ପିଲାମାନେ ।

'ପୁରି ସାଙ୍ଗରେ ଆଳୁଭଜା, ଖାଇବ ?'

ପିଲାଙ୍କ ଠୁ ଉତ୍ତର ଆସେ 'ନାଇଁ, ଆମକୁ ଚା' ଦିଅ ।'

ଏଇ ନିୟମ ଥାଏ, ସାନ ପିଲାଙ୍କୁ ଚା' ଦିଆଗଲେ ଆଉ ଆଳୁ ନାଇଁ । ଘର ଗାଈଦୁହାଁ ସଜ ଦୁଧର ବହଳିଆ ମିଠା କଡ଼ା ଚାହାରେ ଗରମ ପୁରି ବୁଡ଼େଇ ଖିଆଯାଏ ।

ରଘୁ ଓକିଲଙ୍କ ଆରମ୍ଭର ଉତ୍ସାହ ଦେଖି ଏଲି ଭାବିଥିଲା, ଏଣିକି ଆଉକିଛି ଅସୁବିଧା ନାହିଁ । ଦ୍ୱାର ଖୋଲିଗଲା କମଳା ନିଳୟର, ଭିତରକୁ ପାଦ ପକେଇଲେ ଏଣିକି ପିଲାଦିନର ଚିତ୍ରମାନ ଆପେ ପାଖେଇ ଆସିବ, ଆଉ ବର୍ତ୍ତମାନ ଯାଏଁ ମିଶିଯାଇ ମଝିର ବୁଜା ଚିତ୍ରଯାକ ବି ଆଙ୍କି ହେଇଯିବ ବଳେ ବଳେ । କାହିଁ ? କମଳା ନିଳୟ ହିଁ ନିଜେ ଅଚିହ୍ନା ପାଲଟି ଯାଇଛି ।

ହୋଟେଲର ଫୋନ ପାଖରୁ ମେନୁ କାର୍ଡଟି ଉଠାଇ ଏଲି ଭାବୁଛି ରାତି ପାଇଁ କ'ଣ ଖାଇବାକୁ ଅର୍ଡର ଦେବ, ଫୋନ୍ ଆସିଲା ମେନେଜରଙ୍କର ।

'ମାଡାମ୍, ଆପଣଙ୍କୁ ଡିଷ୍ଟର୍ବ କଲି । ଗୋଟିଏ କାମ ଥିଲା । ମୋ ଝିଅ ଆସିଛି । ଆପଣଙ୍କୁ ଦେଖା କରିବାକୁ ଚାହୁଁଛି ।'

'ମୋତେ ?'

'ଆଜ୍ଞା । ସେ ଆପଣଙ୍କର ବିଷୟରେ ଶୁଣିଛି । ତାକୁ ନେଇ ଆସିବି ଆପଣଙ୍କ ରୁମ୍‌କୁ ?'

'ହଉ । ଆସନ୍ତୁ ।'

ଶିଖ ମେନେଜର, ସାଙ୍ଗରେ ତାଙ୍କ ଝିଅଟି ବୟସ ତିରିଶ ପଇଁତିରିଶ ହେବ । ଡେଙ୍ଗା ଗୋରା । ଆତ୍ମବିଶ୍ୱାସ ର ସୁନ୍ଦର ହସ ।

'ଇଏ ଆଜ୍ଞା ମୋ ଝିଅ ନୀଲମ୍ । ବାହା ହେଇଚି ଆମେରିକାରେ । ସେଇଠି ନିଜେ ବି ଚାକିରୀ କରେ । ଏବେ ତିନିବର୍ଷ ପରେ ଦେଶକୁ ଆସିଚି, ଭାଇ ବାହାଘରକୁ ।'

ବାଧ୍ୟ କରି ରୁମ୍‌ରେ ତା ଲାଗି ଖାଇବା ବରାଦ କଲେ ସିଂ, ଆପଣ ଆମ ଅତିଥି ଆଜି । ମୁଁ ଯାଏଁ ତେଣେ କାମ ଅଛି, ଆପଣ ଦିହେଁ କଥା ହୁଅନ୍ତୁ ।'

ନୀଲମ୍‌ର ପୁଅ ଝିଅ ବାରଣ୍ଡାରେ ଖେଳୁଥିଲେ, ତାଙ୍କ ଉଚ୍ଚାରଣ କହିବା ଢଙ୍ଗ ବିଦେଶୀ । ଏଲି ବୁଝୁଥିଲା ଏମିତି ଅନେକ ଥିବେ ଏ ସହରରୁ ଏବେ । ପିଲାଦିନର ଏଲି, ବବି ପରି ବାରି ହେଇ ପଡୁନଥିବେ ।

ମେନେଜର ଉଠି ଚାଲି ନଯାଉଣୁ ନୀଲମ୍ ଆତ୍ମୀୟ ସମ୍ମାନରେ କହିଲା, 'ଆପଣ ପ୍ରଫେସର ବି.ବି. ନାୟକଙ୍କ ଝିଅ ନା ?'

ଏଲି ତାର ଏ ପରିଚୟ ଏଯାଏଁ ଏଠି କାହାରିକୁ କହିନି ।

'ହଁ । ଆପଣ କେମିତି ଜାଣିଲେ ?'

'ଛୋଟ ସହର ତ । ଚିହ୍ନା ପରିଚୟ ସମସ୍ତେ । ପ୍ରଫେସର ବି.ବି. ନାୟକ ଆମର କୁଳପତି ଥିଲେ । ମୁଁ ସେତେବେଳେ ଏଇ ୟୁନିଭର୍ସିଟିରେ ପଢୁଥିଲି ।'

'ସତେ ?'

'ଚମତ୍କାର ଲୋକ । ମୋର ତ ଭାଗ୍ୟ ଖୋଲିଗଲା ତାଙ୍କ ସଂସ୍ପର୍ଶରେ ଆସି । ନହେଲେ ଏ ପଛୁଆ ଅଞ୍ଚଳର ପାଠ ପଢ଼ାକୁ, ଡିଗ୍ରୀକୁ କିଏ ପଚାରନ୍ତା ବିଦେଶରେ ?'

'ମୁଁ ଆଜ୍ଞା ସାରଙ୍କ ସୁପାରିଶରେ ଗୋଟିଏ କଲେଜରେ ପାଠ ପଢ଼ିଲି ସେଠି, ପୁଣି ମୋତେ ଚାକିରୀ ବି ମିଳିଗଲା । ସେଠି ସିଟ୍ ମିଳିଲା, ଫେଲୋସିପ୍ ମିଳିଲା, ସବୁ ପ୍ରଫେସର ନାୟକଙ୍କ ଲାଗି । ଏତେ ପ୍ରଶସ୍ତ ଥିଲା ତାଙ୍କ ଦୃଷ୍ଟି । ଏ ଅଞ୍ଚଳ ଲାଗି ବରଦାନ ଥିଲା ତାଙ୍କ ଅଳ୍ପଦିନର ରହଣୀ ।'

କୃତଜ୍ଞତାରେ ଗଦ୍‌ଗଦ୍ ଦିଶୁଚି ସୁନ୍ଦର ମୁହଁଟି । କଥାବାର୍ତ୍ତା ବାଟ ଭାଙ୍ଗିଲା ଉପସ୍ଥିତ ଜୀବନ, ପରିବାର ଆଡ଼କୁ, ଏଲିର ଭାରତରେ ନେଇଥିବା କାମ ଆଡ଼କୁ । କିନ୍ତୁ ବାରମ୍ବାର ଫେରି ଆସୁଥାଏ,

ବି.ବି. ନାୟକଙ୍କ ପାଖକୁ, ତାଙ୍କ ଉପରେ ଉପରଠାଉରିଆ ଦିପଦ କଥା ପରେ କିନ୍ତୁ ପୁଣି ଟାଣି ନିଆହୁଏ ଅନ୍ୟାନ୍ୟ, ସୁରକ୍ଷିତ ବିଷୟକୁ ।

'ଆଚ୍ଛା, ମୋ ବାପାଙ୍କର କିଛି ଅସୁବିଧା ବି ହେଉଥିଲା ନା, କୁଳପତି ଥିବାବେଳେ ?'

ଅପ୍ରସ୍ତୁତ ହସି ନୀଲମ୍ କହିଲା, 'ସେସବୁ ତ ସବୁ ମହାନ୍ ଲୋକଙ୍କ ଜୀବନରେ ହୁଏ ଆଜ୍ଞା । ଡ. ନାୟକ ବିଦେଶରେ ରହିଥିଲେ ଆଜୀବନ, ଏଠିକା ଜୀବନ ସାଙ୍ଗେ ନିଜକୁ ଖାପ୍ ଖୁଆଇ ପାରିଲେ ନାହିଁ ବୋଲି ଭାବନ୍ତୁ । ସେମିତି ଗୁଣ ନଥିଲେ ଲଣ୍ଡନର ଇମ୍ପିରିଆଲ କଲେଜରେ ତିରିଶ ବର୍ଷ କାଳ ପାଠ ପଢ଼େଇ ନଥାନ୍ତେ ।'

ଏଲି ପଚାରିଲା, 'କଥାଟିଏ ପଚାରିବି ନୀଲମ୍ ? ଶେଷ ଜୀବନ ତାଙ୍କର ଭଲରେ କଟି ନଥିଲା ନା ?'

ନୀଲମ୍ ଜମା ତିଆର ହେଲାନାହିଁ ତଥାପି ସେସବୁ କଥାରେ ପଶିବା ଲାଗି । ହୋଟେଲର ଟୋକା ଆସି ପଚାରିଲାଣି, 'ଆଜ୍ଞା ଖାଇବା ଆଣିଦେବି ତୁମ୍‌କୁ ? ଡାଇନିଂ ହଲ ବନ୍ଦ ହେଇଯିବ ।'

ନୀଲମ୍ ଉଠିଲା, କହିଲା, 'ତାଙ୍କ ଶେଷ ଜୀବନ କଥା ମୁଁ ତ ବିଶେଷ ଜାଣିନି, ମୁଁ ସେତେବେଳକୁ ଦେଶ ଛାଡ଼ି ସାରିଥିଲି । କିନ୍ତୁ ଯାହା ଯେମିତି ଘଟିଗଲା, ବଡ଼ ଦୁଃଖର କଥା ।'

'କ'ଣ ସବୁ ଘଟିଲା ନୀଲମ୍ ? ମୁଁ କିଛି ଜମା ଜାଣିନାହିଁ ।'

ଏଲି ମୁହଁକୁ ଚାହୁଁଥିବା ଦୃଷ୍ଟିରେ ପ୍ରଚ୍ଛନ୍ନ ଆକ୍ଷେପ ଥିଲା, 'ଆପଣଙ୍କୁ କେବେ ଜଣାଗଲା ତାଙ୍କ ମୃତ୍ୟୁ କଥା ?'

'ବହୁତ ପରେ । ଆମମାନଙ୍କ ସହିତ ସେ ସମ୍ପର୍କ ରଖି ନଥିଲେ । ଅନେକ ପୂର୍ବରୁ ମୋ ମାଙ୍କ ସହ ତାଙ୍କର ବିଚ୍ଛେଦ ହୋଇଯାଇଥିଲା ।'

ନୀଲମ୍‌ର ଦୃଷ୍ଟିରେ ଆକ୍ଷେପ ଆହୁରି ଗାଢ଼ ହେଲା । ସତେବା ପଚାରୁଥିଲା, ପିଲାଙ୍କ ସହ ବି ବିଚ୍ଛେଦ ହେଇଯାଏ କି ବାପ ସାଙ୍ଗେ ? ଏଲି ଶୁଖିଲା ଗଳାରେ କହିଲା, 'ବଡ଼ ଦୁଃଖର କଥା ଯେ ତାଙ୍କ ମୃତ୍ୟୁ ବେଳକୁ କେହି ପାଖରେ ନଥିଲୁ ଆମ୍ଭେମାନେ । କିନ୍ତୁ ସେ ନିଜ ଦେଶକୁ ଫେରିଆସି ସୁଖରେ ଥିଲେ ବୋଲି ଆମେ ସବୁ ଭାବୁଥିଲୁ । ତାଙ୍କଠୁ କଦବା କେବେ ଚିଠି ପତ୍ର ଆସିଲେ, କି କିଏ ପରିଚିତ ଲୋକ ସଂଗେ କଥାବାର୍ତ୍ତା ହେଲେ ବି ସେଇ ଧାରଣା ହେଉଥିଲା ।'

ନୀଲମ୍ ଏଥର ଭୂଇଁରେ ଦୃଷ୍ଟି ରଖି ଚୁପ୍ ରହିଲା ।

'ପଶ୍ଚିମ ଦେଶରେ ହିଁ ମୁଁ ଜନ୍ମ ନେଇଚି ନୀଲମ୍, ସେଇଠିକାର ଶିକ୍ଷା ଆଉ ସଂସ୍କାର ପାଇଚି । ବୟସ୍କ ପିଲାମାନେ ସେଠି ବାପା ମାଙ୍କ ପରିବାରର ଅଂଶ ହେଇ ରହନ୍ତି ନାହିଁ, ବ୍ୟକ୍ତିଗତ ଜୀବନଠାରୁ ଦୂରେଇ ରହନ୍ତି ।'

ନୀଲମ୍ ଦୃଷ୍ଟି ଉଠାଇଲା, ଟିକିଏ ନରମ ହେଇଯାଇଥିଲା ସେ ଆଖି ଏଥର । କହିଲା, 'ଏକଦମ ଏକୁଟିଆ ହେଇଯାଇଥିଲେ ସେ କାଳେ । ମୃତ୍ୟୁ ବି ଯେମିତି ହେଲା, ଶୁଣିଥିବେ ଆପଣ । ହୁଏତ ଟାଳିହେଇଯାଇଥାଆନ୍ତା, ଯଦି ଦେଖାଶୁଣା କରିବାଲାଗି ତାଙ୍କ ପାଖରେ କିଏ ଥାଆନ୍ତା ।'

'କଣ ହେଇଥିଲା ତାଙ୍କୁ ?'

'କିଛି ନୁହେଁ, ସାଧାରଣ ଦୁର୍ଘଟଣାଟିଏରେ ଗୋଡ଼ ଭାଙ୍ଗିଗଲା । ପାଖରେ ଥିବା କେଉଁ ଗଳିର ଅଜଣା ଅଧାପାଠୁଆ କୋଉ ଡାକ୍ତର କଣ ଗୋଟିଏ ଇଂଜେକ୍ସନ ଦେଇଦେଲା । ସେଇଥିରେ ତାଙ୍କର ମୃତ୍ୟୁ ହୋଇଗଲା, ସେଇକ୍ଷଣି ।'

'କେହି କିଛି ପଚରା ଉଚରା କଲେନି ? ପୋଲିସ୍ ?'

'କିଏ କରତା ? କୋଉ ବନ୍ଧୁ ବାନ୍ଧବ ତାଙ୍କର ଆପଣାର ହେଇ ଥିଲେ ବା ? ଜଣେ ଅଧେ ଯିଏ ପାଖରେ ଥିଲେ, ସାଙ୍ଗେ ସାଙ୍ଗେ ନେଇ ଶ୍ମଶାନରେ ଦାହ କରିଦେଇ ଆସିଲେ ।'

'ସେଥିରେ କ'ଣ କିଛି ଗୋଳମାଳ ଥାଇପାରେ ବୋଲି ଭାବୁଚ ? କିଛି ସନ୍ଦେହଜନକ ?'

ନୀଲମ୍ ର ଦୃଷ୍ଟିରେ ପୁଣି ଟିକିଏ ଆକ୍ଷେପ ଥିଲା, ସତେକି ପାଶ୍ଚାତ୍ୟ ଶୈଳୀରେ ଏଲିର ବିଶ୍ଳେଷଣ କରିବାର ଢଙ୍ଗଟିକୁ ସେ ଅନୁମୋଦନ କରିପାରୁନାହିଁ । ନିଜେ ରୁମାଲ କାଢ଼ି ଆଖି ପୋଛିଲା, କହିଲା, 'ନା, ତା ନୁହଁ । ତାଙ୍କ ପାଖେ ତ କିଛି ନଥିଲା ପ୍ରାୟ ସେତେବେଳେ । ତାଙ୍କ ସ୍ତ୍ରୀ ଙ୍କ ସାଙ୍ଗେ ଗଣ୍ଡଗୋଳ ଯୋଗୁଁ ବିଦେଶରୁ ଟଙ୍କା ପଇସା ସେ ଯାଏଁ ଆସିପାରିନଥିଲା କାଳେ ଚାକିରୀରୁ ଇସ୍ତଫା ଦେଇଦେଇଥିଲେ ।'

ଏଲି କହିଲା, 'କେବଳ ଏତିକି ଶୁଣିଥିଲି ମୁଁ, ଯେ କାର୍ ଚଲେଇ ଯାଉଥିଲେ, ଗଛରେ ବାଡ଼େଇ ହେଲା ଗାଡ଼ି । ହସ୍ପିଟାଲରେ ତାଙ୍କର ମୃତ୍ୟୁ ହେଇଗଲା ।'

ନୀଲମ୍ ଉଠୁ ଉଠୁ କହିଲା 'ହଁ ତା ସତ ।'

କଣ ଗୋଟିଏ କହିବାକୁ ଯାଇ ନୀଲମ୍ ରହିଗଲା । ହେଲେ ତା'ର ଦୃଷ୍ଟି ଏଲିକୁ ହିଁ ଦାୟୀ କରୁଛି । ପ୍ରଫେସର ନାୟକ ବିଲାତରେ ଛାଡ଼ି ଆସିଥିବା ପରିବାରକୁ ବି, ତାଙ୍କର ସେମିତି ଏକୁଟିଆରେ ଅବହେଳାରେ ମରିଥିବା ଲାଗି ବୋଧେ ।

ନୀଲମ୍ ହାତଯୋଡ଼ି ନମସ୍କାର କରି କହିଲା, 'ବାପାଙ୍କଠୁ ଶୁଣିଲି ଆପଣ ଆସି ଆମ ହୋଟେଲରେ ରହିଛନ୍ତି । ସାର୍‌ଙ୍କ ସାଙ୍ଗେ ଆଉ ଦେଖାହେଇ ପାରିନଥିଲା, ମନ ଶାନ୍ତି କରି ଧନ୍ୟବାଦ ବି ଦେଇପାରିନଥିଲି । ସେଥିପାଇଁ ଦେଖାକରିବାକୁ ଆସିଲି ।'

ପାହାଚ ପାଖେ ବିଦାୟ ନେଇ ହାତ ମିଳେଇ ସେ ପୁଣି କହିଲା, 'ମୁଁ ସବୁଦିନେ ଆପଣଙ୍କ ବାପାଙ୍କ ଋଣୀ ରହିବି । ଆଉ ଏଇ ପ୍ରଶ୍ନଟି ଭଗବାନଙ୍କୁ ପଚାରିବି, ଯେ ଏଡ଼େ ଗୁଣୀ ଲୋକ । ହେଲାବା ବ୍ୟସନୀ ଥିଲେ ଟିକିଏ, ତେବେ ଲୋକଙ୍କର ତ ଅପକାର କରିନାହାନ୍ତି । କାହିଁକି ତାଙ୍କର ଏମିତି ଅନ୍ତ ହେଲା ?'

ଦୁଇଟି ସିଡ଼ୀ ଓହ୍ଲେଇ ଫେରିପଡ଼ି ପୁଣି କହିଲା ନୀଲମ୍, 'ବିଦେଶରେ ମୋ ବାପା ମା ମୋତେ ଏତେ ମନେପଡ଼ନ୍ତି । ପିଲାଟି ଦିନରୁ ବଢ଼ିଆସିଥିବା ଏଇ ସାନ ସହରଟିର ପାଣି ପବନ ଲାଗି ଏମିତି ଆତ୍ମା ଝୁରିହୁଏ । ସବୁ ପିତା ଲାଗେ, ଚକ୍‌ଚକିଆ ଜୀବନ, ସବୁ ସୁବିଧା ଅଯସ ଥାଇ ବି ଛାଟିପିଟି ଲାଗେ ପଳେଇଆସିବାକୁ ମନହୁଏ । ବୁଝିପାରେ, କାହିଁକି ସାର୍ ଫେରିଆସିଥିବେ । ତାଙ୍କର ରକ୍ତର ଲୋକ ଏତିକି ବୁଝିପାରିଲେ ନାହିଁ !'

ନୀଲମ୍ ଓହ୍ଲେଇ ଯାଉ ଯାଉ ରୁମାଲରେ ଆଖି ନାକ ପୋଛୁଥିଲା । ଏତିକି କହିବା ଲାଗି, ଏତେଦିନରୁ ମନରେ ଚପା ଆକ୍ଷେପଟିକୁ ପ୍ରଚ୍ଛନ୍ନରେ ହେଉପଛେ ରୂପଦେଇ ପ୍ରକାଶ କରିବାଲାଗି ନୀଲମ ଆସିଥିଲା ତା ପାଖକୁ । କିନ୍ତୁ ଅନେକ କଥାବାର୍ତ୍ତା ଆଉରି ହୋଇପାରିଥାନ୍ତା । ଏଲି ପଛରୁ ପଚାରିଲା, 'ଆଉଥରେ କେବେ ଦେଖାହେବ ନୀଲମ୍ ?'

ତଳ ପାହାଚରୁ ହାତ ହଲେଇ ନୀଲମ୍ କହିଲା, 'କାଲି ମୁଁ ଚାଲିଯାଉଛି ପଞ୍ଜାବ, ମୋ ଶାଶୁଘରକୁ, ସେଇଠୁ ଆମେ ଆମେରିକା ଚାଲିଯିବୁ ।'

ନୀଲମ୍‌କୁ ଆଉରି ଅନେକ କଥା ପଚାରିବାର ଥିଲା । ବାପାଙ୍କ ଦ୍ୱିତୀୟ ବିବାହ ବିଷୟରେ । ପାରିବାରିକ ଜୀବନ ବିଷୟରେ ସେ କେଜାଣି ଜାଣିନଥିବ । ତେବେ ନୀଲମ୍ ଭଳି ବାପାଙ୍କର ଆଉରି ଛାତ୍ରଛାତ୍ରୀ ଥିବେ ନିଶ୍ଚେ, ତାଙ୍କୁ ଭେଟିବ ଏଲି ।

ହୋଟେଲ ପିଲାଟି ରୁମ୍‌ରେ ଖାଇବା ଥୋଇଦେଇ ଯାଇଚି । ଏଠିକି ଆସିଲା ପରେ ଯାଇ ତାର ମନେପଡୁଚି ଏମିତି ନାଲି ହଳଦିଆ ବହୁ ବର୍ଣ୍ଣର ଖାଦ୍ୟ ତିଆରି ହୁଏ ଏଠି ବୋଲି, ଟିକିଏ ଭୟ ହୁଏ ଏବେ ଖାଇବାକୁ । ପିଲାଦିନେ ମା ଙ୍କର ମନା ନ ମାନି ଅନ୍ୟ ପିଲାଙ୍କ ସାଙ୍ଗେ ବସି ଖାଉଥିଲା ସେ । ବବି ସୁନାପିଲା ହେଇ ଉପର ଘରେ ମା ହିଟରରେ ତିଆରିକଲା ଖାଇବା ଖାଏ । ମା କେବେ କେମିତି ବସନ୍ତି ଅନ୍ୟମାନଙ୍କ ସାଙ୍ଗେ, ତାଙ୍କ ଦେହ ଖରାପ ହୁଏ ତଳ ରୋଷେଇ ଘରେ ରନ୍ଧା ମସଲାଦିଆ ଖାଇବାରେ । ବାପା କିନ୍ତୁ ଥରେହେଲେ ଉପର ଘରେ ମା ହାତ ରନ୍ଧା ଖାଉଥିବାର ତା'ର ମନେ ନାହିଁ, ସେମାନେ ଜେଜେଙ୍କ ଘରେ ଥିଲାବେଳେ । ଯଦିଓ ବେଳେବେଳେ କହନ୍ତି, ଭାରତୀୟ ଖାଦ୍ୟ ଅସ୍ୱାସ୍ଥ୍ୟକର ବୋଲି । ଲଣ୍ଡନରେ, ପିଲାଦିନେ, ବାପା ନିଜେ ରୋଷେଇ କରନ୍ତି ଥରେ ଥରେ, ମାଂସ ତରକାରୀ ।

ଅଳ୍ପ ଟିକିଏ ଖାଇ ଆଉ ଖାଇପାରିଲାନି ଏଲି । ବଡ଼ ରାଗ, ପାଟି ପେଟ ସବୁ ଜଳୁଚି । ବେଲ୍ ବଜାଇଲେ ବି ହୋଟେଲ୍ ଟୋକା ଆସିଲାନି । ବିଛଣାକୁ ଗଲା ପରେ ଜଣାଗଲା ଏତେ ବାସ୍ନା ତରକାରୀରୁ ଚଟଣୀରୁ ବାହାରୁଚି ଯେ ଶୋଇବା କଷ୍ଟ । ପୁଣି ଉଠି ଅଇଁଠା ଥାଳି ସେ କବାଟ ବାହାରେ ଥୋଇଦେଇ ଆସିଲା ।

ବିଛଣାରେ ଶୋଇ ଶୋଇ ଏଲି ଦେଖୁଥିଲା ନିଜକୁ, ନୀଲମ୍‌ର ଆଖିଦେଇ, ରଘୁ ଓକିଲଙ୍କ ଆଖି ଦେଇ ।

॥୪॥

ନିଦ ଆସୁନଥିବା ଆଖିରେ କମଳା ନିଳୟର ଅଭ୍ୟନ୍ତରଟି ଦେଖିବାକୁ ଚେଷ୍ଟା କରୁଥିଲା ଏଲି । ସବୁ ବଦଳିଯାଇଥିବ ଅବଶ୍ୟ, ଜେଜେଙ୍କ ଲାଇବ୍ରେରୀ ଭଳି । ରଘୁ ଓକିଲଙ୍କ ଜିନିଷପତ୍ର ଥିବ କି ଭିତର ସାରା ? ଜେଜେଙ୍କର ଆଲମାରୀ, ଟ୍ରଙ୍କ ସବୁ, ଅପୂର୍ବ ରତ୍ନରେ ଭର୍ତ୍ତି ଗନ୍ତାଘର ଟିଏ

ଲେଖାଁ । ଥରେ ଅତି ପିଲାଦିନେ ନାତିନାତୁଣୀ ମାନଙ୍କ ହଟ କରିବାରେ ଜେଜେ ତାଙ୍କ ମାନ୍ଧାତା ଅମଳର ଟ୍ରଙ୍କ ତାଲା ଫିଟେଇ ସୁଟ୍ ପିନ୍ଧିଥିଲେ, ଟାଇ ଭିଡ଼ିଥିଲେ । 'ଆରେ ଆମେ ଆଜିକାଲିକା ସରକାରୀ ଚାକିରିଆଙ୍କ ଭଳି ଧୋତୀ କୁରୁତା ଯାହା ମନ ତାହା ପିନ୍ଧି ଚପଲ ମାଡ଼ି ଅଫିସକୁ ଯାଉନଥିଲୁ । ଗୋରା ସାହେବଙ୍କ ସାଙ୍ଗେ ତାଙ୍କରି ଭଳି ବେଶଭୂଷା ହେବାକୁ ପଡ଼େ ।'

ହେଲେ ରିଟାୟାର କରିବାର କେଜାଣି କାହିଁ କେତେ ବର୍ଷ ହେଇସାରିଥାଏ ଏତେବେଳକୁ, ଜେଜେଙ୍କର ପେଟଟି ଅଳ୍ପ ଥଳଥଳ ହେଇ ଆସିଥାଏ, ପୁଣି ଧୋତୀ ପିନ୍ଧା ଗୋଡ଼ରେ ଯେତେ ଟାଣିଲେ ଉପରକୁ ପ୍ୟାଣ୍ଟ ଆଉ ଜମା ଉଠିଲା ନାହିଁ । ପିଲାଏ ହସି ହସି ଗଡ଼ିଯାଉଥାନ୍ତି, ତାଙ୍କରି ସାଙ୍ଗେ ଏକାକାର ହସି ହସି ଉପର ଦେହରେ ସାର୍ଟ କୋଟ୍, ଆଉ ଅଣ୍ଟା ଯାଏଁ ପ୍ୟାଣ୍ଟ ଟାଣିଦେଇ ଜେଜେ ଟାଇ ଭିଡ଼ିଲେ, ମୁଣ୍ଡରେ ସେ କାଳର ସାଇବ ଟୋପି ଲଗାଇଲେ ।

ମନେ ଅଛି ଷ୍ଟେଜ୍ ଭଳି ପଲଙ୍କଟି । ବାଡ଼ ଘେର ଦିଆହେଇ ଚାରିଗୋଟି ପାଣିଦିଆ ସାନ ପଥର ଟକି ଉପରେ ଠିଆ ହେଇଥାଏ ଯିଏ । ପିଇସୀ ବୁଝେଇଦେଇ ଥିଲେ, ପିମ୍ପୁଡ଼ି ବିଛଣାକୁ ନ ଚଢ଼ିବେ ବୋଲି ଇଳଯନ୍ତ୍ର ସିଏ । ତାକୁ ନେଇ କିଛି କିଛି ଥଟ୍ଟା ନକଲ ବି ମନେଅଛି । ବୁଢ଼ୀ ଆଈ ଜଣେ କହିଥିଲେ, ଆଗକାଳରେ ଆଜି ଭଳି ସ୍ୱାମୀ ସ୍ତ୍ରୀ ଦିନବେଳେ ତ ସାଙ୍ଗ ସୁଖ ହେଇପାରୁ ନଥିଲେ, ସ୍ୱାମୀଟି ସରାଗରେ ମିଠେଇ ଆଣିଦେବ ସ୍ତ୍ରୀ ଲାଗି, ହେଲେ ଅଲଗାକରି ଖାଇବାକୁ ଦେବ କେତେବେଳ ? ସମସ୍ତେ ପରସ୍ତେ ହସି ସାରିବା ପରେ ଏଲି ଦାଣ୍ଡ ଘରକୁ ଧାଇଁ ଯାଇ ବଡ଼ ପାଟିରେ ପଚାରିଥିଲା ଜେଜେଙ୍କୁ, 'ତମେ ବିଛଣାରେ ଜେଜେମାଙ୍କୁ ମିଠେଇ ଦେଉଥିଲ ?'

ଜେଜେମାଙ୍କ ଗୋଲ ରୂପା କରାଟ ବି ଦେଖିଚି ଏଲି, କାଳେ ଅଣ୍ଟାରେ ଲୁଗା ଦେହରେ ଖୋସି ରଖୁଥିଲେ ସେ ଗୋଲ ଗୋଲ ରୂପା ଟଙ୍କା । ଆଉରି କେତେକଣ ଦେଖିବାକୁ ଥିଲା ସେ ଆଇିବାବା ଗୁମ୍ପା ମାନଙ୍କରୁ ।

କାହ୍ନୁ ରହିଥିବ ସେଇ ଘରେ, କେଜାଣି କେତେଦିନ । ରଘୁ ଓକିଲ ପଦେ କିଛି କହିଲା ନାହିଁ ତା ବିଷୟରେ କାଇଁ । ଏଲିକୁ ଶତ୍ରୁ ମଣୁଥିଲା ପରି ତା ହାବଭାବ । କାହାର ଶତ୍ରୁ ବୋଲି ତାକୁ ଭାବୁଥିଲା ସେ, ତା ନିଜର ନା କାହ୍ନୁର ? କାହ୍ନୁ ଲାଗି କେବେହେଲେ ଶତ୍ରୁତା ଭାବର ଧାସଟିଏ ଆସିଚି କି ଏଲି ମନରେ, କି ତା ମା ମନରେ ? କାହ୍ନୁର ମା ଲାଗି ଗୋଳିଆମିଶା କ'ଣ ଗୁଡ଼ିଏ ଭାବନା ଆସିଥିଲା, ଏଲିଠାରୁ କେତେଗୁଣ ଅଧିକ ତା ମାଆର । ମନେଅଛି ସେ କଥା । ତଥାପି, ବାପା ନିଜ ଦେଶକୁ ଫେରିଆସି ସୁଖଶାନ୍ତିରେ ରହନ୍ତୁ ବୋଲି ଚାହିଁଥିଲେ ଏଲିର ମା ବି ।

ବାପା ମାଙ୍କର ଛାଡ଼ବାଡ଼ ହେଇଯାଇଥିଲା ଯେତେବେଳେ, ଏଲି ଠିକ୍ ସ୍କୁଲ୍ ଛାଡୁଥାଏ । ଝଡ଼ ପରି ମାଡ଼ି ଆସିଥିଲା ଏଲି ଆଉ ବବିଙ୍କ ମୁଣ୍ଡ ଉପରକୁ, ବାପା ମାଙ୍କର ବିବାହ ବିଚ୍ଛେଦ । ସେଇ ଯୁଦ୍ଧ ଭିତରେ ସ୍ୱାଭାବିକ ଭାବେ ମା ପକ୍ଷକୁ ଆଉଜି ପଡ଼ିଥିଲେ ପିଲା ଦିହେଁ ।

ବାପାଙ୍କ ସାଙ୍ଗେ ତା ପରେ ଆଉ ଅତି ବେଶୀରେ ତିନି କି ଚାରିଥର ଦେଖା ହେଇଥିବ ଏଲିର । ମା ଲାଗି ସେ ବିଚ୍ଛେଦ ସହିବା କଷ୍ଟଦାୟକ ଥିଲା । ତାଙ୍କୁ ଦେଖିଲେ ବାପାଙ୍କୁ ସବୁକଥା

ଲାଗି ଦାୟୀ କରି ହେଇଯାଉଥିଲା । ପୁଣି ବାପା ବି ନିଜ କଲେଜରୁ ଛୁଟି ନେଇ ଏ ଦେଶ ସେ ଦେଶ ବୁଲିଲେ ନାନା ଆଳରେ । ନିଜେ କରିଥିବା ସୁନ୍ଦର ଘରଟି ସ୍ତ୍ରୀ, ପିଲାଙ୍କ ଭାଗରେ ପଡ଼ିଥିଲା । ସେଇଠି ଅନ୍ୟ ଭଡ଼ା ଘର ନେଇ ରହିବା ପୁଣି ପିଲାଙ୍କଠୁ ଦୂରେଇ ଗୋଟିଏ ସହରରେ ରହିବା ବାପାଙ୍କ ପକ୍ଷେ ସମ୍ଭବ ହେଇନଥିବ । ଶେଷକୁ ଆଫ୍ରିକାର କୋଉ ଦେଶରେ ବର୍ଷେ ରହି ଇଣ୍ଡିଆକୁ ଫେରି ଆସିଥିଲେ ସେ । ଏଲି, ବବି ପାଠ ପଢ଼ା ଲାଗି ଘର ଛାଡ଼ି ଏଣେତେଣେ ରହିଲେ । ବାପାଙ୍କ ସାଙ୍ଗେ ଚିଠି ପତ୍ର ବି ଆଉ ରହିଲା ନାହିଁ । ମା ଠୁ ମିଳେ ଯାହା କିଛି ବାପାଙ୍କ ଖବର । ଦିନେ ମା କହିଲା, 'ବାପା ତମର ପୁଣି ବାହା ହେଲେଣି ଇଣ୍ଡିଆନ୍ ଝିଅଟିଏକୁ ।'

ଅତି ସ୍ୱାଭାବିକ କଥା ବିଲାତରେ । ତଥାପି ରାଗ ହେଉଥିଲା । ଆଉ ତାଙ୍କ ମୁହଁକୁ ଚାହିଁବାର ନୁହେଁ । ଭାରତକୁ ଫେରିଯିବା, ଭାରତୀୟକୁ ବାହାହେବା ନୁହଁ ଯେ ତାଙ୍କ ନିଜ ଜୀବନର ଇଂରେଜ ସଂସ୍କାରକୁ ଅମାନ୍ୟ କରାଯିବା । ଇଏ ଅସଲରେ ତାଙ୍କ ସଂସାରକୁ ଆଣିଥିବା ଅଧା ଇଂରେଜ ପିଲାଙ୍କୁ ବି କାଟିଦିଆଯିବା ଜୀବନରୁ । ବେଶ୍, ଥାଆନ୍ତୁ ସେ ତାଙ୍କର, ନିଜ ଦେଶ ନିଜ ରକ୍ତର ଆତ୍ମୀୟଙ୍କୁ ନେଇ ।

ରାସ୍ତାରୁ କାଁ ଭାଁ ଗାଡ଼ି ମଟର ଶବ୍ଦ ଆସୁଚି, ଟ୍ରକ୍ ହର୍ଣ୍ଣର ଅଯାଚିତ ଶ୍ରୁତିକଟୁ ସାରେଗାମାପାଧା । ଆଖି ବୁଜିଲା ବେଳକୁ ପତା ତଳେ ଭାସିଆସିଲା ଯେଉଁ ଛବି, ତା ଏଠିକାର ନୁହେଁ । ପିଲାଦିନର ସତ, କିନ୍ତୁ ଆଉରି ଅଧିକ ଆପଣାର, ଯେଉଁଠି କଟିଥିଲା ଏଲିର ଅଧିକାଂଶ ଆଦ୍ୟ ଜୀବନ । ପରିଚିତ ଘର ପରିବେଶ । ସପ୍ତାହ ଶେଷ ଦି'ଦିନ ଛୁଟି ଲାଗି ପ୍ରସ୍ତୁତି ହେଇସାରିଚି । ବଡ଼ ଭ୍ୟାନ୍‌ଟି ସଜିଲ ହେଇଚି, ପିକ୍‌ନିକ୍ ଯିବେ ଆଜି ସଭିଏଁ । ଦି'ଦିନିଆ କ୍ୟାମ୍ପ ହେବ । ସହରଠୁ ଦୂର ବଣ ପାହାଡ଼ ଘେରା ଝରଣା କୂଳ ଜାଗାଟିକୁ ତାଙ୍କରି ଭଳି ଆଉରି ଅନେକ ପିକ୍‌ନିକ୍ ଭ୍ୟାନ୍ ଆସିଥିବ, ବାପା ମା ମାନେ ସାନ ପିଲାଙ୍କୁ ନେଇ ଦି'ଦିନର ରହଣୀ ସରଞ୍ଜାମ ନେଇ ସବୁ ଆସିଥିବେ । ନିଜ ସ୍କୁଲର ଚିହ୍ନା ସାଙ୍ଗ ସାଥୀ ଥିବେ, କିଛି ସାଇ ପଡ଼ିଶା ବି । ଗଛବୃଛ ଆକାଶ ବେଢ଼ିହେଇ ରାତିରେ ଖୋଲାରେ ନିଆଁ ଜଳିବ, ରୋଷେଇ ହେବ ଖୋଲାରେ । ଯେଝା ଗାଡ଼ିରୁ ତମ୍ବୁ ସରଞ୍ଜାମ କାଢ଼ି ଭୂଇଁରେ ପୋତିବେ ସମସ୍ତେ । ରାତିରେ ତମ୍ବୁ ଭିତରେ ଶୋଇବେ ।

ବାପାଙ୍କୁ ଜଗି ଜଗି ରାତି ହେଲା, ଏଲି ସାକୁଲେଇ କହିଲା ବବିକୁ, 'ବ୍ୟସ୍ତ କାଇଁକି ? ଏଠୁ ତିନିଘଣ୍ଟାର ବାଟ ତ ଜମା । ସେମାନେ ରୋଷେଇ ଆରମ୍ଭ କରିଦେଇଥିବେ ଆମେ ପହଞ୍ଚିଯିବା । ନାଚ ଗୀତ ହେଉଥିବ । ବବି. ଗୀଟାରଟି ରଖିଚୁ ତ ? ଆଉ ପହଁରା ଜାମା ? ହ୍ରଦର ଥଣ୍ଡା ପାଣିରେ ପହଁରାଯିବ କାଲି ସକାଳ ଖରାରେ । ମୋ ବୁମେରାଙ୍ଗଟା କୋଉଠି ରହିଲା କିରେ ? ଯୋଉଟା ଫିଙ୍ଗିଦେଲେ ଫେରିଆସେ ନିଜ ପାଖକୁ, ନାଲି ପ୍ଲାଷ୍ଟିକ୍ ମ, ବାପା ଆଣିନଥିଲେ ଗଲାଥର । ଆଉ ବାପାଙ୍କର ବନ୍‌ଶୀ କଣ୍ଡା ? ମା ରଖିଥିବ ଚିନ୍ତା କରନା । ବାପା କାଲି ମାଛ ଧରିବେ, ଦିପହର ସାରା ତାଙ୍କ ସାଙ୍ଗ ଟମ୍ ଅଙ୍କଲଙ୍କ ସାଙ୍ଗେ ବୁଦା ପାଖରେ ଶୋଇ ଶୋଇ ବନ୍‌ଶୀ ନିଘା କରିବାରେ ବିତିବ ତାଙ୍କର । ନିଶ୍ଚେ ବଡ଼ ମାଛ ପଡ଼ିବ ଦେଖିବୁ । ମା ଭାଜିବ ।'

ସଞ୍ଜ ଯାଇ ରାତି ହେଲା । ବାପା ଆସିନଥିଲେ । ମା ଗମ୍ଭୀର ହୋଇ ଖାଇବାକୁ ବାଢ଼ିଦେଲେ, ଏଲି ବବି ମୁହଁ ଶୁଖେଇ ଖାଇଲେ । ଶୋଇଲା ବେଳକୁ ଏମିତି ନିଦ ଆସୁନଥାଏ ସେ ଦିନ, ଠିକ୍ ଆଜି ଭଳି । ଯିବାକୁ ଥିଲା ପରା, ବାପା ଆସିଯିବେ ନିଶ୍ଚେ, ଡେରୀରେ ହେଉ ପଛେ ଯିବା ଯେ । ଘରେ ଶୋଇବା କେମିତି ? ଆଖି ଲାଗିଥିବ ସେଇ, ନିଦ ଭାଙ୍ଗିଲା ଝଣଝାଣ ବାସନ ଭଙ୍ଗାରେ । ଭାଇ ଭଉଣୀ ଶୋଇଲା ଘର କବାଟ ଅଳ୍ପ ଖୋଲି ତଳ ମହଲାକୁ ଚାହିଁଲେ । ଦାଉଁ ଦାଉଁ ଛାତିରେ ଦେଖିଲେ ସେଇ ଏକା ଦୃଶ୍ୟ ଯାହା କଥା ଜାଣି ବି ଆଉଥରେ ଘଟୁଚି ବୋଲି ମାନିବାକୁ ନାହିଁ କରେ ମନ । ବାପା ମାଙ୍କ ପାଟିତୁଣ୍ଡ । ଘରେ ଏ ଯୁଦ୍ଧ ନୂଆ ହେଉନାହିଁ । ପଦଟିଏ କଥା ନକହି ବି ଭାଇଭଉଣୀ ବୁଝି ଯାଇଥିଲେ, ବାପା ପୁଣି ନିଶା କରି ଫେରିଚନ୍ତି । ମାଆଙ୍କ କାଚ ବାସନ ଭଙ୍ଗା ଫୋପଡ଼ାରୁ ଆଠ ଦଶ ବର୍ଷର ଏଲି ବି ବୁଝିଯାଇଥିଲା, ବାପା ପୁଣି ଅନ୍ୟ କେଉଁ ସ୍ତ୍ରୀ ପାଖକୁ ଯାଇଥିଲେ । ଏଥିରେ ମା କଷ୍ଟ ପାଉଛି ଓ ରାଗ ଅପମାନରେ ଅସମ୍ଭାଳ ହେଉଛି ବୋଲି ବି ସେ ବୁଝୁଥିଲା ।

ଟିପେଇ ଟିପେଇ ବିଛଣାକୁ ଫେରି ଆସିଥିଲେ ଭାଇ ଭଉଣୀ । ବବି ଚୁପ୍ ଚୁପ୍ ପଚାରିଥିଲା, 'ଆମେ ପିକ୍‌ନିକ୍ ଯିବାନି ଏଲି ?'

'ଚୁପ୍ । ଶୋଇପଡ଼ । ବାପା ଥକିଯାଇ ଫେରିଛନ୍ତି, ଗାଡ଼ି ଚଲେଇବେ କେମିତି ? ଆମେ ସକାଳୁ ଉଠିଯିବା । ଶୋଇପଡ଼ ।'

ତଳୁ ପାଟିତୁଣ୍ଡ କ୍ରମେ ଚୁପ୍ ହୋଇଗଲା । ତାପରେ ନିଶ୍ଚୁପ ଅନ୍ଧାର ଭିତରେ ଏଲି ନିଘା କଲା ପର୍ଦ୍ଦା ଫାଙ୍କରେ ଦିଶୁଥିବା ବାହାରର ଚେନାଏ ଆକାଶକୁ । ଅପେକ୍ଷା କଲା କେତେବେଳେ ତାର ରଂଗ ବଦଳିବ, ଭୋର୍ ଆଲୁଅ ଆସିବ ।

ଆଖି ଖୋଲିଲା ବେଳକୁ ପର୍ଦ୍ଦା ଫାଙ୍କର ଆକାଶ ସୋରାକ ଉଜ୍ଜ୍ୱଳ ହୋଇସାରିଥାଏ ଦିନ ଆଲୁଅରେ, ସାରା ଘର କିନ୍ତୁ ସେମିତି ଚୁପ୍‌ଥାଏ । ବବିକୁ ଉଠାଇ ଏଲି କହିଲା, 'ଚାଲ୍ ତିଆର ହେଇପଡ଼, ପିକନିକ୍ ଯିବା ପରା ।'

ମାଆଙ୍କ ଆସିବାକୁ ଅପେକ୍ଷା ନକରି ଭାଇ ଭଉଣୀ ଦିହେଁ ଜାମା ଜୋତା ପିନ୍ଧି ତିଆର ହୋଇପଡ଼ିଥିଲେ । ମନ ପଛପାଖେ କ'ଣ ଗୋଟାଏ ଝାଉଁଳି ପଡୁଥିଲେ ବି ଆଶାଟିକକୁ ମୁଠେଇ ଧରିଛନ୍ତି ଦିହେଁ । କାଲି ଉପର ଓଳିରୁ ସଜଡ଼ା ସୁଟ୍‌କେଶଟିକି ବନ୍ଦ କଲା ଏଲି । 'ଦେ ତୋ ଟୁଥ୍ ବ୍ରଶ୍ ଆଉ ସାବୁନ ଡବା ଦେ ବବି, କଡ଼ ପକେଟ୍‌ରେ ରଖିଦେବା, ମା ପଚାରିଲେ ସରପ୍ରାଇଜ୍ ଦେବା । ନାହିଁ ?'

ବବି ବଡ଼ ମଣିଷ ଭଳି ମୁଣ୍ଡ ଟୁଙ୍ଗାରି ବ୍ରଶ୍ ସାବୁନ ଆଣି ଏଲି ହାତରେ ଦେଇଥିଲା । ପୁଣି ଥାକ ଉପରୁ ଚକଲେଟ୍ ପ୍ୟାକେଟଟିଏ ଦେଖାଇ ପଚାରିଲା, 'ଏଇଟା ବି ନେଇଯିବା ନା ?'

'ହଁ, ହଁ, ପକେଟରେ ରଖିଥା । ବାଟରେ ଖାଇବା ।'

ଦିହେଁ ବଡ଼ ସୁଟ୍‌କେଶ୍‌ଟିକି ଘୋଷାରି ନେଲେ, କବାଟ ପାରିକରି ସିଡ଼ୀ ମୁଣ୍ଡରେ ଠିଆ ହେଇ ତଳକୁ ଅନେଇଲେ । ତଳ ହଲ୍ ଶୁନ୍‌ଶାନ୍ । ପର୍ଦ୍ଦା ମାନ ଢଙ୍କା ହେଇଚି, କବାଟ ଝରକା ବନ୍ଦ । ବାହାରର ଦିନକୁ ଆସିବାକୁ ନାହିଁ କରାଯାଇଚି ଅବା । ପାଖ କୋଠରୀକୁ ଦେଖାଇ ବବି ପଚାରିଲା, 'ମମିର ସୁଟକେଶ୍ ଆସିନି ଏ ଯାଏ ?' ଏଲିର ତଣ୍ଟି ଶୁଖିଯାଉଥିଲା, ତଥାପି ସାହସ ଦେଲା ବବିକୁ, ମିଛ ହସ ଟିକିଏ ନେଇ ବୋଧଦେଲା, 'ଆସିବ ରହ । ଆମର ଆଜି ଆଗ ରେଡି ହେଇଗଲା, ନୁହେଁ ?'

ବବି ମୁଣ୍ଡ ଟୁଙ୍ଗାରି କହିଲା, 'ହଁ । ସରପ୍ରାଇଜ୍ ।'

କେତେବେଳ ଠିଆହେଲେ ଦିହେଁ ସେମିତି କେଜାଣି । ଏଲି କହିଲା, 'ମମିର ଦେହ ଭଲ ନାହିଁରେ ବବି । ଚାଲ ଆମେ ଜଳଖିଆ ଖାଇଦେବା ନିଜେ ।'

ମମି ବିଛଣାରୁ ନ ଉଠିବା, ବାପା ଘରେ ଅଛନ୍ତି କି ଗଲେଣି ବାହାରକୁ ଜଣା ନଯିବା ଆଜି ପ୍ରଥମ କରି ହେଉନାହିଁ । ସେଦିନର କଥା ବେଶୀ ସ୍ପଷ୍ଟ କରି ମନେଅଛି ଏଲିର । ଦୁହେଁ ଚୁନିଚାଳୀ ଯାଇ ରୋଷେଇଘରେ ଦୁଧ କର୍ଣ୍ଣଫ୍ଲେକ୍ସ ଖାଇବା, ଫ୍ରିଜ୍‌ରୁ ଜୁସ୍ ପିଇବା । ସେତିକି ପାଟିତୁଣ୍ଡ ଟିକିଏ ଶୁଣାଗଲେ ଯାହା ଟିକିଏ ପିକନିକ୍ ଯିବାର ସୁଯୋଗ ବଳିଥିବ ତା ବି ଯିବ ହାତରୁ ବାହାରି । ଟିପେଇ ଟିପେଇ ପର୍ଦ୍ଦା ଆଡ଼େଇ ବାହାରକୁ ଦେଖା । ଟିପେଇ ଟିପେଇ ଭଙ୍ଗା କାଚ ବାସନ ଓଳେଇ ଅଳିଆ ଟୋକେଇରେ ରଖା ।

ଛୁଟି ଦିନଟି ସେଦିନ ସାଇଁ ସାଇଁ ହେଉଥାଏ । କାନ୍ଥ ଘଡ଼ିରେ କାଠ ଚଢ଼େଇ ତା କୋରଡ଼ରୁ ବାହାରି କୁକୁ କୁକୁ ଚୋବେଇ ଯାଉଥାଏ ଘଡ଼ି କି ଘଡ଼ି । ସକାଳ ଯାଇ ଦିପହର ହେଲା । ଟିଭି ଆଗରେ କୁଶନ ବିଛାଇ ଢୁଳେଇ ପଡିଥିବା ବବିକୁ ଏଲି ଡାକିଲା, 'ଚାଲ୍ ବବି, ଲଞ୍ଚ ଖାଇଦେବା, ଆ ।'

ବବି ଆଖିମଳି ଏକା ବେଳକେ କାନ୍ଦି ଉଠିଲା, 'ମମ୍ମି...'

'ଚୁପ୍, ଆରେ ଚୁପ୍ । ପାଟି କରନା । ପାପା ରାଗିବେ । ପିକିନିକ ବନ୍ଦ କରିଦେବେ ।'

ମୁହଁ ବିଚିକିଚି କରି ଧକେଇ ହେଲା ବବି, 'ମମ୍ମି କାଇଁ...'

'ଆରେ ମମ୍ମି ଶୋଇଚି ପରା, ତା ମୁଣ୍ଡ ବିନ୍ଧୁଥିବ ଜାଣିନୁ ।' ବବିକୁ ଟାଣି ଟାଣି ନେଲା ସେ ରୋଷେଇଘରକୁ, ମୁରବୀ ପଣିଆରେ କହିଲା, 'କ'ଣ ଖାଇବୁ କହ । ଆଇସ୍‌କ୍ରୀମ୍ କାଢ଼ିଦେବି ? ପେଷ୍ଟ୍ରୀ ଖାଇବୁ ? ପାଟି କରନା କହୁଚି ।'

ଏତେବେଳକୁ ମା' ପଶିଆସିଲେ ରୋଷେଇ ଘରକୁ । ଭାଇଭଉଣୀ ଖାଇବା ଥାଳିରୁ ମୁହଁ ଟେକି ଅନେଇଲେ । ମା ଗାଧୋଇ ସଫା ଲୁଗା ପିନ୍ଧିଥାନ୍ତି, କିନ୍ତୁ ମୁହଁ ଦିଶୁଥାଏ ଉଦାସ, ଆଖି ଫୁଲା ଫୁଲା । ବବି ଧାଇଁଯାଇ କୁଣ୍ଢେଇ ପକେଇଲା ମା'କୁ, ତା ମୁଣ୍ଡରୁ ବୋଧେ ପିକ୍‌ନିକ୍ କଥା ଯାଇସାରିବଣି ଏତେବେଳକୁ । ଏଲି କିନ୍ତୁ ତଥାପି ତା ମା ମୁହଁକୁ ପଢ଼ିବାକୁ ଚେଷ୍ଟା କରୁଥାଏ, ଆଶା କରିହେବ ନା ନାଇଁ ଆଉରି ? ପଚାରିବକି ନାଇଁ ଭାବି ଅନେଇଥାଏ ମା ମୁହଁକୁ । ବବି ମୁଣ୍ଡରେ ହାତ ବୁଲେଇ ଦେଇ ଏଲି ମୁହଁକୁ ଅନେଇ ମା ଅଚାନକ କାନ୍ଦି ଉଠିଲେ, ସେଇଠି ଆଣ୍ଠୁମାଡ଼ି ବସି କୋଳେଇନେଲେ ପିଲା ଦିହିଙ୍କି । ଏଲି ଜାଣିଲା, କଥା କିଛି ଗୋଟାଏ ବଢ଼ି ଗଲାଣି । କ୍ୟାମ୍ପ ଆଉ ହେବାର ନୁହେଁ ।

ଦି ଭାଇଭଉଣୀଙ୍କ ଲାଗି ମା' ଖାଇବା ବାଢ଼ିଦେଉଥାଆନ୍ତି, ବାପା ମଚ୍ ମଚ୍ ସିଡୀଦେଇ ଓହ୍ଲେଇଆସିବାର ଶୁଭିଲା, ଦାଣ୍ଡ କବାଟ ଖୋଲିବାର ଶୁଭିଲା, ଗ୍ୟାରେଜ୍‌ରୁ ଗାଡି ବାହାରି ରାସ୍ତାକୁ ଚାଲିଯିବାର ଶୁଭିଲା । ମା' ଲମ୍ବା ନିଶ୍ୱାସ ଛାଡ଼ିଲେ, ଫ୍ରିଜ୍ ଖୋଲି କହିଲେ, 'କି ମଠା ଖାଇବରେ ପିଲାଏ ?' ଟି.ଭି.ସାମ୍ନାରେ ତିନିହେଁ ବସିଥାନ୍ତି, ଏଲି ଦେଖିଲା ମାଙ୍କ ଗାଲ ଦେଇ ଲୁହ ଧାର ବହି ଚାଲିଥାଏ, ବାଁରେଇ ହେଲାଭଳି ବିଶି ଆଙ୍ଗୁଠିରେ ପୋଛି ନେଉଥାନ୍ତି ସେ । ତଳେ କାର୍ପେଟରେ ପାଞ୍ଚ ବର୍ଷର ବବି କାର୍ଟୁନ ଫିଲ୍ମ ଦେଖି ହସି ହସି ଗଡ଼ି ଯାଉଥାଏ, କହୁଥାଏ, 'ଦେଖ୍ ଦେଖ୍ ଏଲି । ତୁ ଟମ୍ ବିଲେଇ ମୁଁ ଜେରୀ ମୂଷା ।' ସେଇଠୁ ମଝିରୁ ହଠାତ୍ ମନେ ପଡ଼ିଗଲା ପରି ପଚାରିଦିଏ, 'ବାପା ଆସିଲେ ଆମେ ପିକ୍‌ନିକ୍ ଯିବା, ନାଇଁ ମମ୍ମି ?'

ସେଦିନ ରାତିରେ ବାପା ଫେରିଲେ ନାହିଁ ।

ରବିବାର ଦିନ ବି ନୁହେଁ । କିନ୍ତୁ ରବିବାର ଦିନ ସକାଳୁ ମା ଦିହିଙ୍କି ଗାଧୋଇ ପାଧୋଇ ସୁନ୍ଦର ଜାମାପଟା ପିନ୍ଧାଇଦେଲେ । ନିଜେ ନେଇଗଲେ ଚର୍ଚ୍ଚକୁ । ଏଲିର ସ୍ମୃତିରେ ସେଇ ତା'ର ପ୍ରଥମ ରବିବାର ଚର୍ଚ୍ଚ ପ୍ରାର୍ଥନା ସଭାକୁ ଯିବା ।

ଚର୍ଚ୍ଚରୁ ପ୍ରାର୍ଥନା ସାରି ବାହାରିଲାବେଳକୁ ମା' ଆଉ ଏତେ ଦୁଃଖୀ ଦେଖାଯାଉନଥାନ୍ତି । ପଚାରିଲେ, 'ଚିଡ଼ିଆଖାନା ଯିବା କିରେ ପିଲେ ?'

ବବି ବିଳିବିଳେଇଲା ପରି କହିଲା, 'ନାଇଁ, କ୍ୟାମ୍ପ ଯିବା ।'

'ଯିବା ପରା । ଆର ୱିକ୍‌ଏଣ୍ଡ କୁ ଯିବା, ହେଲା ? ଏଥର ବାପାଙ୍କ ଜରୁରୀ କାମ ଥିଲା ।' ମା' ଏଥର ଖାଲି ବବି ମୁଣ୍ଡକୁ ଆଉଁସୁଥାନ୍ତି, ଏଲିକୁ ଜମା ଅନାଉନଥାନ୍ତି, ବୋଧେ ସେ ତାଙ୍କ ମିଛ ଜାଣିଯାଇଚି ବୋଲି ।

ଚିଡ଼ିଆଖାନାରେ ବୁଲି ବୁଲି ସେଦିନ କେତେ ଜୀବଜନ୍ତୁ ଦେଖାହେଲା । ଯେତେ ଦେଖିଲେ ବି ସରେ ନାହିଁ ସେ । ମା' ଥକିଯାଇ ବେଞ୍ଚଟିଏରେ ବସିପଡ଼ିଲେ, ହାତ ଠୁଙ୍ଗାରୁ କ'ଣ ଗୋଟିଏ ଖାଉ ଖାଉ କହିଲେ, 'ମୁଁ ଥକିଗଲିଣି, ଏଇଠି ବସିଚି । ତମେ ଦିହେଁ ସେ ତାରଜାଲିର ଚଢ଼େଇ ଦେଖୁଥାଅ ।'

ବବି ରଂଗରଂଗିଆ ଶୁଆଶାରୀ ଦେଖୁଥିଲା ବେଳେ ଏଲି ଫେରିପଡ଼ି ଧାଇଁଆସି ମା ପାଖରେ ବସିପଡ଼ିଲା ।

'କ'ଣ ହେଲା ମା' ଏଞ୍ଜେଲ୍ ?'

'ବାପା କ'ଣ ଆମକୁ ଭଲ ପାଆନ୍ତି ନାଇଁ କି ମା ?'

'କିଏ କହିଲା । ଭଲ ପାଆନ୍ତି ତ !'

'କାଇଁକି ଆମ ପିକ୍‌ନିକ୍ ବନ୍ଦ କଲେ ? ତାଙ୍କର କିଛି କାମ ନଥିଲା, ମୁଁ ଜାଣେ । ତମ ମନରେ ସେ ଦୁଃଖ ଦିଅନ୍ତି, ଜାଣେ ।'

ଟିକିଏ ଚୁପ୍ ରହି ମା ତା ମୁଣ୍ଡ ଗାଲ ଆଉଁସିଦେଇ କହିଲେ, 'ତୁ ସେଦିନ ବବିର ଚକଲେଟ୍ ଚୋରୀ କରି ଖାଇଦେଇଥିଲୁ ନା ? ତା ବୋଲି ତୁ କ'ଣ ବବିକୁ ଭଲ ପାଉନାଇଁ ?'

ମା କୋଳକୁ ଆଉଜି ପଡ଼ି ଏଲି କେବଳ ମୁଣ୍ଡ ଟୁଙ୍ଗାରିଲା ।

'ତୁ ତ ସୁନା ଝିଅଟିଏ, ହେଲେ ଲୋଭରେ ପଡ଼ି ବବ୍ ମନରେ କଷ୍ଟ ଦେଲୁ ନା ?'

'ବାପା ବି ଲୋଭରେ ପଡ଼ିଯାଆନ୍ତି ସେମିତି, ନାଇଁ ମମ୍ମି ?'

॥୫॥

ରାତିରେ ଭଲ ନିଦ ହେଲାନାଇଁ । ସକାଳୁ ନିଜ ସୁଟ୍‌କେଶ୍ ସଜାଡ଼ି ବସିଲା ଏଲି । ୟୁନିଭର୍ସିଟି ଗେଷ୍ଟ ହାଉସ୍ କୁ ଉଠିଯିବ ଆଜି । ନିଜେ ଡ. ପଟ୍ଟନାୟକ ଆସି ନେଇଯିବେ । କହିଲେ, 'ମେଡ଼ିକାଲ କଲେଜ ଗେଷ୍ଟ ହାଉସ୍‌ରେ ରୋଷେୟା ଛୁଟିରେ ଯାଇଚି । ଆଉ ଟିକିଏ ଦୂରରେ ଅଛି ୟୁନିଭର୍ସିଟି ଗେଷ୍ଟ ହାଉସ୍, ସବୁ ସୁବିଧା ଅଛି । ଆପଣଙ୍କ ମନକୁ ପାଇବ । ଅଧୁନା କୁଳପତିଙ୍କ ସହିତ ପରିଚୟ କରିଦେବି । ଆମ ଘରେ ମୋ ପିଲାଙ୍କ ସାଙ୍ଗେ ପରିଚୟ କରିଦେବି । ମୋ ଝିଅର ବିଦେଶରେ ପଢ଼ିବାକୁ ଭାରୀ ମନ । ଆପଣ ତାକୁ ମାର୍ଗଦର୍ଶନ ଦେବେ ।'

ଏମିତି ଏଠିକାର ବାପା ମା' ମାନେ, ଏଲି ଜାଣେ । ଯେତେ ଯାହା ଘଟୁଥାଉ ନିଜ ଜୀବନରେ,ସେମାନେ ତାଙ୍କ ପିଲାଙ୍କୁ ଆଣି ସେଥିରେ ଯୋଡୁଥିବେ । ଡ. ପଟ୍ଟନାୟକଙ୍କ ସାଙ୍ଗେ ଲଣ୍ଡନରେ ଏଲିର ପରିଚୟ ହୋଇଥିଲା । ଏକୁଟିଆ ସିଏ ନୁହନ୍ତି, ଆହୁରି ଅନ୍ୟ ଭାରତୀୟ ବିଦ୍ୱାନଙ୍କୁ ଭେଟିଚି ସେ । ଅନ୍ତର୍ଜାତିକ କନ୍‌ଫରେନ୍‌ସ ରେ ପେପର ପଢୁଥିବେ, ଏଣେ ସେଇ ଭିତରେ ଟିକେ ଆଖେପାଖେ ବୁଝାବୁଝି କରିଦେଉଥିବେ, ନିଜ ପୁଅଝିଅଙ୍କ ପଢ଼ାପଢ଼ି କେମିତି ଟିକିଏ କୋଉଠି ସୁବିଧା କରିହେବ ବୋଲି ।

ଏଲି ଭାବିଲା ନିଜ ବାପାଙ୍କ କଥା । ସିଏ ବି ତ କେତେ ଆଶା କରିଥିଲେ ଏଲି ବବିଙ୍କ ଭବିଷ୍ୟତକୁ ନେଇ । ସେଥର କ୍ୟାମ୍ପ ଯିବା ବାତିଲ ହୋଇଥିଲା ବୋଲି ବାପା ମନଦୁଃଖ କରିଥିଲେ । ସଞ୍ଜବେଳେ ଚିଡ଼ିଆଖାନାରୁ ଫେରିଲା ବେଳକୁ ବାପାଙ୍କ ଗାଡ଼ି ଥୁଆହେଇଥାଏ ବାହାରେ । ଭିତରେ ପଶିଲା ବେଳକୁ ଶାନ୍ତ ଭାବେ ବସିଥାନ୍ତି ବାପା ସୋଫାରେ । ଆଉ ତାଙ୍କ ପାଖରେ, ସାମ୍ନା ଟେବୁଲ୍ ଉପରେ ଥୁଆ ହେଇଥାଏ କେଡ଼େ ବଡ଼ ବଡ଼ ଚକଚକିଆ ଉପହାର ପ୍ୟାକେଟ୍ ମାନ । ଏଲି ବବି ଦୁହେଁ ପ୍ରଥମେ ଖୁଣ୍ଟ ପରି ଠିଆ ହେଇଗଲେ ସେଇଠି, ବବି ମୁହଁରୁ ପ୍ରଥମେ ବାହାରିଲା 'ବାପା ଆସିଗଲେ ।'

ବାପାଙ୍କ ଗେହ୍ଲା ଡାକ ଆସିଲା, 'ମୋ ବବ୍ ! ମୋ ଏଞ୍ଜେଲ୍ !'

ଦିହେଁ ଧାଇଁଗଲେ ତାଙ୍କ ଖୋଲା ବାହୁ ଭିତରକୁ, କେତେ ଯୁଗ ପରେ ଦେଖା ସତେକି । ସେତେବେଳେ ଖିଆଲ ହେଇନଥିଲା, ହେଲେ କେମିତି ଦିଶୁଥିଲା ମା'ର ମୁହଁ କେଜାଣି । ଆଶ୍ୱସ୍ତ

ହେଇଥିବ ଅବଶ୍ୟ । ନା ପିଲାଏ ସବୁ ଭୁଲି ବାପା କୋଳକୁ ଡେଇଁପଡ଼ିଲେ ବୋଲି ଟିକିଏ ଆହତ ଲାଗିଥିବ ? ଅପମାନ କିନ୍ତୁ ଅନ୍ୟଥର ଭଳି ନିଶ୍ଚେ କ୍ଷମାରେ ବଦଳି ଯାଇଥିବ ।

ପ୍ୟାକେଟ୍ ମାନଙ୍କର ଛରିଖୋଳ ଖୋଲା ହେଇଥିଲା ଗୋଟି ଗୋଟି କରି । ଖୋଲୁ ଖୋଲୁ ମିଁ ମିଁ ହେଇ ଏଲି କହିଥିଲା, 'ନାଇଁ ମୋର ମୋଟେ ଦରକାର ନାଇଁ ଏସବୁ । ତମେ କାଇଁକି ଆମକୁ କ୍ୟାମ୍ପ ନେଇନି ?'

ମା କହିଥିବା କଥା ବବି ଅବିକଳ ଶୁଆ ପରି ନକଲ କଲା, 'ବାପାଙ୍କର ବହୁତ କାମ ଥାଏ ମୋ ସୁନା ଏଞ୍ଜେଲ । ବାପାଙ୍କୁ ବିରକ୍ତ କରିବୁନି ।' ବାପା ଖୁବ୍ ତାନେ ହସିଥିଲେ, ବବିକୁ ଗେଲ କରି କହିଥିଲେ, 'ନାଇଁ ମୋର ଏଥର ଭୁଲ୍ ହେଇଗଲା । ଆଇ ଆମ୍ ରିଏଲି ସରି । ତମ ଦି'ଜଣଙ୍କର ୱିକେଣ୍ଡ ଟା ନଷ୍ଟ ହେଇଗଲା ନାଇଁ ?'

ଦିହେଁ ଏଥର ବାପାଙ୍କ କୋଳରେ ପିଠିରେ ଆଉଜି କହିଲେ, 'ନାଇଁ ନାଇଁ ବାପା, ଆମେ ଚିଡ଼ିଆଖାନା ଯାଇଥିଲୁ । ବର୍ଗର ଆଉ ଆଇସ୍କ୍ରୀମ ଖାଇଲୁ ।'

ମା' ତାର କେତେବେଳେ ଚୁପ୍‌କିନା ଶୋଇଲାଘରକୁ ଚାଲିଯାଇଥିଲା । ବାପା ଟିକି ଛରି ଗୁଡା ଡବାଟିଏ ଏଲି ହାତରେ ଦେଇ କହିଲେ, 'ମୋ ଏଞ୍ଜେଲ୍, ଯା ତୋ ମା କୁ ଦେଇ କହିବୁ ବାପା ତମ ଲାଗି ଆଣିଚନ୍ତି । ସରି ବୋଲି କହିଲେଣି । ତମେ ନନେଲେ ବହୁତ ମନକଷ୍ଟ କରିବେ ।' ହେଲେ ମା' ଓଇଟି ଏଲିକୁ କହିଥିଲା, 'ବାପାଙ୍କୁ କହିବୁ ସେ ନିଜେ ଉପହାର ଦେଲେ ନେବି । ତୋ ଠୁ ନୁହେଁ ।'

ମନେଅଛି ସବୁ ଗୋଟି ଗୋଟି । ଯେମିତି ଯାହା ଘଟିଥିଲା ସବୁ ମନେଥାଏ, କିନ୍ତୁ ଘଟଣା ମାନଙ୍କ ଅର୍ଥ ବଦଳି ଚାଲିଥାଏ ବୟସ ସାଙ୍ଗେ । ସ୍ମୃତି ତ କିଛି ସ୍ଥିର ଚିତ୍ର ନୁହେଁ । ସ୍ମୃତିରେ ବି ଘଟଣା ଘଟୁଥାଏ ନିରନ୍ତର । କେଉଁ ଦୁଃଖର ଧାର କ୍ରମେ ମରିଯାଏ ତ ଆଉ କେଉଁ ଦୁଃଖ ଆହୁରି ଧାରୁଆ ହୁଏ । ଏମିତିକି ଲିଭି ହଜି ଯାଇଥିବା ଦୁଃଖ ବି ଉଜ୍ଜଳି ଉଠେ କେବେ କେବେ ।

ବାପା କେମିତି କେଜାଣି ଆଶା କରୁଥିଲେ ପିଲାଏ ତାଙ୍କର ଦେଶକୁ ଫେରିବେ ବୋଲି । ଚାହୁଁଥିଲେ ତାଙ୍କ ପିଲାଙ୍କ ଛାତିଭିତରେ ନିଜ ଦେଶର ସୁନ୍ଦର ଛବିଟିଏ ରହିଥାଉ ସଦା ବୋଲି । ତଥାପି ସେମାନଙ୍କ ଇଂରେଜପଣ ଲାଗି ବାପାଙ୍କ ମନରେ ଗର୍ବ ଥିଲା । ଆଉ ଭାରତୀୟ ଗୁଣଗୁଡ଼ିଏ କେବଳ ପିଲାଙ୍କ ଠି ଭରିଦେଲେ ସେମାନେ ଅଧାଗଢ଼ା ରହିଯିବେ ବୋଲି ତାଙ୍କ ମନରେ ଭୟ ଥିଲା ନିଶ୍ଚେ । ଏଲି ଓ ବବିଙ୍କ ପାଖେ ଏକଥା ଅଛପା ନଥାଏ । ସେଇଥିଲାଗି ଇଣ୍ଡିଆରେ କେତେଦିନ ରହଣୀ ଯେତେ ସୁଖକର ହେଲେ ବି, ସେଠିକି ଫେରିଯିବାର ସ୍ୱପ୍ନ ସବୁଦିନେ ଦେଖୁଥାଇବି ବାସ୍ତବରେ ସବୁଦିନଲାଗି ଯାଇ ରହିବା କଥା ମୁହଁରେ ଧରିନିନି । ମା' ଚୁପ୍‌ଚାପ୍ ଥାନ୍ତି । ଧୀର ପାଣି ପଥର କଟେ ।

ବାପା ମଝିମଝିରେ ଯେମିତି ଝଡ଼ କରୁଥିଲେ, ସେମିତି ଦିନେ ଝଡ଼ଟିଏ ଉଠାଇ ନିଷ୍କ୍ରାନ୍ତ ହୋଇଗଲେ ସେମାନଙ୍କ ଜୀବନରୁ । ଖୋଜିବାକୁ ଯିବ ବୋଲି ମନସ୍ଥ କଲାବେଳକୁ ନଈସୁଅରେ ଆଙ୍କ ବାଙ୍କ ଖାଇ କୁଆଡ଼େ ବୋଲି ଲାଗିଲାଣି ଜୀବନ ।

ହୋଟେଲ ଟୋକା ଆସି ଚିଠାଟିଏ ଦେଲା, ବ୍ୟାଙ୍କ୍ ସାହେବଙ୍କ ମା' ଖବର ପଠେଇଛନ୍ତି, ସମୟ କରି ଟିକିଏ ଚା' ଖାଇବାକୁ ଆସିବାପାଇଁ ଡ. ପ୍ୟାଟ୍ରିକ୍‌ଙ୍କୁ ଅନୁରୋଧ । ଜ୍ୟୋତି ସିନେମା ପଛପାଖ ତାଙ୍କ ଘର, ଫୋନ ନମ୍ବର ଦୁଇଟି ବି ଦେଇଛନ୍ତି । ଡ. ପଟ୍ଟନାୟକଙ୍କୁ ଫୋନ୍ କରି କହିଦେଇ ବାହାରିପଡ଼ିଲା ଏଲି ।

ଗଳିଟି ବାହାରୁ ଯେମିତି ସରୁ ଅନ୍ଧାରୁଆ ଦିଶୁଛି, କବାଟରେ ପଶିଗଲେ ହଠାତ୍ ଫର୍ଚ୍ଛା । ଖରା ପଡୁଛି ଖୋଲା ବଗିଚାର ଆମ୍ବ କଦଳୀ ଗଛଦେଇ । ବାରଣ୍ଡା ପାଖରେ ଠିଆ ହେଇଥିଲେ ଧଳା ଲୁଗାରେ ବୟସ୍କା ମହିଳା । ଚିହ୍ନା ଚିହ୍ନା ଲାଗୁଛି ମୁହଁଟି । ପିଲାଦିନେ ଦେଖିଥିବ ଅବା । ପାଚେରୀ ଦିଆ ବଡ଼ ହତା ଭିତରେ ସାହାଳାଏ ଖପରଛାତ ପୁରୁଣା ଘର, ସାମ୍ନାରେ ନୂଆ କୋଠାଟିଏ । ପାଖରେ ପହଞ୍ଚି ଏଲି ବାରିନେଲା, ନିଃସନ୍ଦେହରେ ଇଏ ଜଣେ ପିଇସୀ ତାର, ବାପାଙ୍କ ଭଉଣୀ । ହାତଯୋଡ଼ି ନମସ୍କାର କଲା ସେ । ଜାଣିଶୁଣି ଫୋନ୍ କରିନଥିଲା, ସେଇକ୍ଷଣି ପ୍ରାୟ ଚାଲିଆସିଥିଲା । ନିଜ ପରିଚୟ ଦେଇ କିଛି କହିବା ପୂର୍ବରୁ ସେ ଆଗେଇ ଆସି ତା ଦି'ହାତକୁ ଧରିନେଲେ ନିଜ ଆଞ୍ଜୁଳିରେ । ତା ମୁହଁକୁ ସ୍ଥିର ଦୃଷ୍ଟିରେ ଚାହିଁ ରହି ପଚାରିଲେ, 'ତୁ ବିଧୂ ଝିଅ ନୋହୁ ? ଅଞ୍ଜୁ ?'

ଏଲି ତୁନି ହୋଇ ମୁଣ୍ଡ ଦୁଙ୍କାରି ହଁ କଲା । ଟିକିଏ ଚୁପ୍ ରହି ଟାଣ ଗଳାରେ ପଚାରିଲେ ସେ, 'ତୋ ନାଁ ଆଜିକାଲି ବଦଳିଯାଇଛି ପରା ? ଡାକ୍ତର କ'ଣ ଡ...ପ୍ୟାଟ୍ରିକ୍ ?'

ମୁହୂର୍ତ୍ତେ ଆଖିବୁଜି ପୁଣି ଚାହିଁଲା ତାଙ୍କୁ ଏଲି, କଥାଟିର ମର୍ମ ବୁଝିନେଇ ଏଥର ବି ସେମିତି ହଁ କଲା, ମୁହଁରେ ଅଳ୍ପ ଟିକିଏ ହସ ନେଇ । ନିଜେ ପଚାରିଲା ଏଥର, 'କିନ୍ତୁ ଆପଣ କେମିତି ଜାଣିଲେ ମୁଁ ଆସି ହୋଟେଲରେ ଅଛି ବୋଲି ?'

ତା ପ୍ରଶ୍ନର ଉତ୍ତର ନଦେଇ ସେ ପଚାରିଲେ ଏଥର ବେଶ୍ ସ୍ନେହ ମିଶା ଗଳାରେ, 'ମୋତେ ଚିହ୍ନି ପାରୁନୁ ନା ନାଇଁ ? ମୁଁ ତୋ ଭାନୁ ପିଇସୀ । ତୁ ତ ଅବିକଳ ସେମିତି ଅଛୁ, ବଦଳିନାହୁଁ ଜମା । ଆ, ଭିତରକୁ ଆ । ଓଡ଼ିଆ କହୁଚୁ ନା ନାଇଁ ?'

ଏଲି ପୁଣି ମୁଣ୍ଡ ଦୁଙ୍କାରି ହଁ କଲା କେବଳ, ତା ଗଳା ରୁନ୍ଧି ଯାଉଥିଲା ଏତେବେଳକୁ ।

ଘରକୁ ବାଟ କଢ଼େଇ ନେଉନେଉ ସେ କହିଥିଲେ, 'ତୁ ପିଲାଦିନେ କେଜାଣି ସେ ପୁରୁଣା ଘରକୁ ଆସିଥିବୁ । ଏ ନୂଆ କୋଠାଘର ତିଆରି କରିଚି ମୋ ପୁଅ । ମୋ ପୁଅ ବୋହୂ ଦୁହେଁଯାକ ବ୍ୟାଙ୍କ୍ ଅଫିସର । ହେଲେ ତୁ ତୋ ନାଁ କେମିତି ବଦଳେଇଦେଲୁରେ ଅଞ୍ଜୁ ? ପ୍ୟାଟ୍ରିକ୍ ନାଇଁ ? ପୁରା ଇଂରେଜ ପାଲଟିଗଲୁ ଜାଣ ।'

ନୂଆ ସଜା ଡ୍ରଇଂ ରୁମ୍‌ରେ ବସେଇଲେ ତାକୁ । ପଚାରିଲେ, 'ତୋ ଭାଇ କୋଉଠି ଅଛି ? ବବି ? ଆଉ ତୋ ମା ?'

ଉଭୟ ପ୍ରଶ୍ନର ଉତ୍ତରରେ ହସି ଭଲ ବୋଲି କହିଲା ଏଲି । ପଚାରିଲେ ସେ, 'ଡାକ୍ତର ପରା ତୁ ? ନିଜ କାମରେ ଆସିଚୁ ଖାଲି ନା ପୁରୁଣାଦେଶ ମାଟି ଟିକେ ଦେଖିଯିବୁ ବୋଲି ଆସିଚୁ ?'

ଏଲି କହିଲା, 'ଦୂରଟା ଯାକ । ଆସିବାକୁ ମନ ଥିଲା, ସୁଯୋଗ ମିଳୁନଥିଲା । ଆପଣମାନଙ୍କ କାହାରି ଠିକଣା ତ ନଥିଲା ପାଖରେ ।'

'କୁଆଡୁ ଥାଆନ୍ତା ? ତମେମାନେ ତ ନିଜ ବାପ ସାଙ୍ଗେ ସମ୍ପର୍କ ରଖିଲ ନାହିଁ, ଆମେ ବା କିଏ ?'

ଏଲି ଏକଥାକୁ ଅପେକ୍ଷା କରୁଥିଲା । ତା'ର କିଛି କହିବାର ନଥିଲା । ପିଇସୀଙ୍କ ହଠାତ୍ ନାକ ସୁଁ ସୁଁ ରେ ଦୃଷ୍ଟି ଉଠାଇଲା, ସେ ପ୍ରଥମେ ନିଶବ୍ଦରେ, ତା ପରେ ପାଟିରେ କାନି ମାଡ଼ି ବଡ଼ ପାଟିରେ ଧକେଇ କାନ୍ଦିବାକୁ ଆରମ୍ଭ କଲେ । ମଝି ମଝିରେ କହୁଥାନ୍ତି ଦିପଦ, 'ଆହାରେ ବାବୁ । ଆହା ମୋର ବାବୁରେ...'

ନିଶବ୍ଦରେ କାନ୍ଦିଲା ଏଲି ବି । ତଳକୁ ମୁହଁ ପୋତି ରୁମାଲ୍ ରେ ଆଖିମୁହଁ ମାଡ଼ିଦେଲା । ବାପାଙ୍କ ଲାଗି ସାମାଜିକ ଭାବେ ଶୋକ ବ୍ୟକ୍ତ କରିବା ଆଜି ତା'ର ପ୍ରଥମ । ଚାକରାଣୀ ବୁଢ଼ୀ ଟି ଆସି ବୋଧ ଦେଲା ପିଇସୀଙ୍କୁ, 'ତୁନି ହୁଅ ଗୋ । ଯିବା ଲୋକତ ଗଲାଣି କେଉଁ ଦିନୁ ।'

ଏଲିର ମନେ ପଡୁଚି ଏଭଳି କାନ୍ଦ, ଶୋକ, ଏଇଭଳି ବୋଧ ଦେବାର ଢଙ୍ଗ ପିଲାଦିନେ ଦେଖିଚି ସେ । ସ୍ପଷ୍ଟ ଘଟଣା ମନେ ନଥିଲେ ବି ପରିଚିତ ତା'ର । ଏମିତି ଗଳା ଖୋଲିଦେଇ ବଡ଼ ପାଟିରେ ବାହୁନି କାନ୍ଦିବା, ମରିଥିବା ଲୋକର ଗୁଣ ଗାଇ, ନାନା ଘଟଣାର କଥା କହି କହି । ବୁଝିଚି ସେ, ବୋତଲ ରୁନ୍ଧା ଦୁଃଖଯାକ ଗଳଗଳ ଗାଳିଯିବାର ସମାଜ ଅନୁମୋଦିତ ଉପାୟ । ହେଲେ ସବୁ ପରମ୍ପରା ପରି ପୁଣି କେବେ ଘଷରା ଅଭ୍ୟାସଗତ ହେଇଯାଇପାରେ ଇଏବି ।

ସାଷ୍ଟମ ହେଇ ପିଇସୀ ସ୍ୱଗତୋକ୍ତି କଲେ, 'କେତେ ଦୁଃଖ ଥିଲାରେ ବାବୁ ତୋ କପାଳରେ...ଯୋଉ ସ୍ତ୍ରୀ ଲାଗି ଆମ ସମସ୍ତଙ୍କୁ ପର କରିଦେଲୁ, ସେଇମାନେ ତୋତେ ଛାଡ଼ିଦେଲେ କେଡ଼େ ଅପନ୍ତରା ହୀନିମାନ କରି...ଶତ୍ରୁ ବି ଏମିତି କରିବନି କାହାକୁ...ଅନାଥ ଅରକ୍ଷିତ ପରି ଏକୁଟିଆ ପଡ଼ି ମରିବାର ଥିଲା ତୋ ଭାଗ୍ୟରେ...ଦାଣ୍ଡର ଭିକାରି ପରି ପୋଡ଼ିଦେଇ ଆସିଲେ ତୋତେ ମଶାଣୀରେ, ପରଲୋକ କିଏ ନାହିଁ କିଏ...'

ତାଙ୍କ କାନ୍ଦ ଏଥର ଅସମ୍ଭାଳ ହେଉଥାଏ, ବଡ଼ ପାଟିରେ ବାହୁନୁଥାନ୍ତି ସେ । ଚାକରାଣୀ ବୁଢ଼ୀଟି ତାଙ୍କର ସୋଫା ଦେହରେ ଲୋଟିପଡୁଥିବା ଭାରୀ ଦେହକୁ ସମ୍ଭାଳିଲା, ଏଲିକୁ କହିଲା, 'ତମ ବାପା କେଡ଼େ ବଡ ଲୋକ ଥିଲେ ଗୋ । ମୋ ପୁଅକୁ ଚାକିରୀରେ ଲଗେଇଦେଇଥିଲେ, ଜୀବନ ସାରା ଋଣ ସୁଝିପାରିବିନି ତାଙ୍କର । ଦେବତା ପରି ଲୋକ ଥିଲେ ସେ, ସତକଥା ।'

ଏଲି ଆଖିରେ ଆଉ ଲୁହ ନଥିଲା । ଏ ସହରସାରା ଲୋକେ କ'ଣ ତେବେ ଜାଣିଗଲେଣି ବିଧୂ ନାୟକଙ୍କ ଝିଅ ଆସିଚି ବୋଲି, ସେ ଏଠି ପାଦ ଦେବାର ଚବିଶି ଘଣ୍ଟା ଯାଇନାହିଁ ? କେମିତି ଗୋଟାଏ ଭୟ ହେଲା ତାକୁ ଅଚାନକ । ଏ ସାରା ସହର ତାକୁ ଅପେକ୍ଷା କରିଥିଲା ନା କ'ଣ, ଫେରାର୍ ଆତତାୟୀଟିଏ ପରି ?

ପିଇସୀ ପାଣି ପିଇ ସାଷ୍ଟମ ହେଲେ । ଏଲି ବୁଝିପାରୁନଥିଲା ତାଙ୍କୁ ସାନ୍ତ୍ୱନା ଦେବା ତା ପକ୍ଷେ ଉଚିତ୍ ହେବ କି ନାହିଁ । ଧୀର ସ୍ୱରରେ କହିଲା, 'ଆମକୁ କେହି ଜଣେଇନଥିଲେ ବାପାଙ୍କ ମୃତ୍ୟୁକଥା ।'

'କିଏ ଜଣେଇ ଥାଆନ୍ତା ? କିଏ ଜାଣିଥିଲା ତମ ଠିକଣା ଯେ ଜଣେଇଥାଆନ୍ତା ? ବିଧୁ ତ ତମମାନଙ୍କ କଥା ପଡ଼ିଲେ କାନ୍ଦେ, ନାହିଁକରେ ତମମାନଙ୍କ ବିଷୟରେ କିଛି ହେଲେ କହିବାକୁ । କାନରେ ହାତ ଦେଇ କହେ, ନା, ମୁଁ ସେମାନଙ୍କ ଲାଗି ମରିସାରିଛି । ସେମାନେ ବି ମୋ ଲାଗି ମରିସାରିଛନ୍ତି । ଏମିତି କହି କାନ୍ଦେ ସେ ।'

ପୁଣି କାନ୍ଦିବାର ଉପକ୍ରମ ଦେଖି ଏଲି ପଚାରିଲା ଏଥର, 'ତାଙ୍କର ନୂଆ ସ୍ତ୍ରୀ ? ପୁଅଟି ?'

ତାଙ୍କ କାନ୍ଦ ବନ୍ଦ ହେଲା ଠପ୍ କିନି । କହିଲେ, 'ହଁ ପୁଣି ବାହାହେଇଥିଲା ସିଏ । ଜାଣିଛ ତ ତମେମାନେ ?'

'ହଁ ଶୁଣିଥିଲୁ । ତାଙ୍କ ସ୍ତ୍ରୀ ମରିଗଲେ, ତା ବି ଜାଣେ ।'

'ତା ଭାଗ୍ୟ । ବାହା ହେଇଥାଆନ୍ତା ଭଲରେ ପୁଣିଥରେ, କେତେବା ସେମିତି ବୟସ ହେଇଥିଲା ବିଧୁକୁ ? ଆମେ ତା ଭଉଣୀମାନେ ଦେଖିଚାହିଁ ଭଲ ଘର ଝିଅଟିଏ ଠିକ୍ କରିଦେଇଥାଆନ୍ତୁ । ତା ଜୀବନ ସୁଧୁରି ଯାଇଥାଆନ୍ତା । କୋଉଠୁ ସେ ଅଲକ୍ଷଣୀ ଆସିଲା, ବେକରେ ତା'ର ପଥର ପରି ବାନ୍ଧି ହେଇ ପଡ଼ିଲା । ଶେଷକୁ ତାକୁ ଆହୁରି କନ୍ଦେଇ ଛାଡ଼ିଦେଇଗଲା । ସିଏ ବି ମଲା ଅଲକ୍ଷଣୀ । କୋଉ ଗ୍ରହଦଶା ପଡ଼ିଥିଲା ମୋ ଭାଇର ଯେ ଆଉ ଶେଷଯାକେ ଛାଡ଼ିଲାନି ତାକୁ ।'

ମୁହଁ ପୋତି ବସିଥିଲା ଏଲି । ହାତ ଘଣ୍ଟା ଦେଖିଲା । ଘଣ୍ଟାଏ ଉପରେ ହେଲାଣି । ଡ. ପଟ୍ଟନାୟକ ଆସି ଅପେକ୍ଷା କରିଥିବେ ହୁଏତ ହୋଟେଲରେ । ତା ଘଣ୍ଟା ଦେଖା ଲକ୍ଷ କରି ପିଇସୀ କହିଲେ, 'ରହ ରହ । ଚା' ଜଳଖିଆ ଟିକିଏ ନ ଖାଇ ଚାଲିଯିବୁ କେମିତି ? ବିଧୁର ଝିଅ ପରା ତୁ ।'

ଉଠି ବାରଣ୍ଡା ପାରିହେଇ ପୁରୁଣା ଖପରଘର ଭିତରକୁ ଗଲେ ସେ । ଚାକରାଣୀ କହିଲା, ଦାନ୍ତ ଦେଖାଇ, 'ଏଇଠି ନୂଆ ରୋଷେଇ ଘରେ ଗ୍ୟାସ୍ ଚୁଲୀ ଅଛି । ହେଲେ ବୁଢ଼ୀ ମା' ତାଙ୍କର ପୁରୁଣା ରନ୍ଧାଘର ଭଲ ପାଆନ୍ତି । ଏ ନୂଆ ଘରେ ବୋହୂ ମା ରାନ୍ଧନ୍ତି ।'

ପୁରୁଣା ଘରଭିତରୁ ପିଇସୀ ପାଟିକରି ଡାକିଲେ, 'ଆଲୋ ନୂପୁର...'

ଉଠି ଯାଉ ଯାଉ ନୂପୁର କହିଲା, 'ତୁମ ବାପା ଥିଲାବେଳେ ଏ ନୂଆଘର ହେଇନଥିଲା । ସେ ଆସିଲେ ହେଇ ସେ ପୁରୁଣା ଘର ବାରଣ୍ଡାରେ ବସି ପିଢ଼ାରେ ବସି ଭାତ ଖାଆନ୍ତି, ମାଙ୍କ ସାଙ୍ଗରେ । କେତେ ଗପ କରନ୍ତି ଭାଇ ଭଉଣୀ । ଗୀତ ବି ଗାଆନ୍ତି ଗୋ ।'

ହେଲେ ପିଇସୀ ତାକୁ ନୂଆଘରେ ବସେଇଚନ୍ତି । କୁଣିଆ ସେ, ପରିବାରର ଲୋକ ନୁହେଁ । ଛାଇ ଛାଇ ମନେପଡୁଛି, ଏଇ ଘର ହତାରେ ବଡ଼ ଖାଲି ଜାଗାଟିଏ ଥାଏ, କୂଅ, ବଗିଚା ବି । ଗୁଡ଼ିଏ ସାନ ପିଲାଙ୍କ ସାଙ୍ଗେ ଖେଳୁଥିଲା ସେ ଏଠି କୋଉଠି । ହଁ, ଏଇ ସେ ଘରଟି । ମାଟି ଘରଟିରେ କିଏ ରହୁଥିଲା ଟି ? ମାଳି ହେବ ବୋଧେ । ଯା ନାଁ ଥିଲା ବଗିଚା ଘର ।

ଚା ଜଳଖିଆ ନେଇ ନୂପୁର ଆସିଲା । ସାଙ୍ଗରେ ପିଇସୀ । ପାଖରେ ବସି କହିଲେ, 'ଆର ଥରକୁ ଆସିଲେ ନିଶ୍ଚେ ଖାଇକରି ଯିବୁ । ଏଥର ଭାତଖିଆ ଯାଏଁ ରହିବାକୁ କହୁନି । ପୁଅ ବୋହୂ ଅଫିସରୁ ଫେରିବେ ସଞ୍ଜବେଳକୁ । ମୋର ତ ବୟସ ହେଲାଣି, ଏଣୁ ତେଣୁ କ'ଣ ଟିକିଏ କରି ଖାଇଦିଏଁ । ଆଉଥରକୁ କେବେ ଆସିବୁ କହିଲୁ ?'

ଏଲି କହିଲା, 'ମୁଁ ତ ରହିବି ଦୁଇମାସ, ଏଇ ଆଖପାଖରେ କାମ କରିବି । ଆସିବି ନିଶ୍ଚେ ହେଲେ ଗୋଟିଏ କଥା ପଚାରିବି ପିଇସୀ, କାହ୍ନୁ କଥା ତମେ ଜମାରୁ କହିଲ ନାହିଁ ଯେ ?'

ପୁରା ଚୁପ୍ ପଡ଼ିଗଲେ ପିଇସୀ । ଓଲଟି ପଚାରିଲେ, 'ଏତେଦିନ ପରେ କାହ୍ନୁ କୁ ଖୋଜିବାକୁ ଆସିଚୁ ତୁ ?'

'ନା, ଠିକ୍ ତା ନୁହେଁ ଯେ । ଆସିଛି ଯେତେବେଳେ, ଭାବୁଛି ବୁଝିଦେଇଯାଏ ତା କଥା । ଭାଇ ତ ।'

'କଥା ହେଲା, ମୁଁ ବି ଠିକ୍ କରି ତା ଖବର ଜାଣିନି ଲୋ ଝିଅ । କଥାଟିଏ ସଫା କହିଦିଏଁ ତୋତେ । ମୋତେ ଦୋଷ ଦେବୁନି । ତୋ ବାପା ବିଲାତ ଯାଇ ପୂରାପୂରି ବଦଳି ଯାଇଥିଲା । ଦେଶକୁ ଫେରିଲା ସିନା, ସିଏ ଆଉ ଆମ ସାନଭାଇ, ଆମ ବିଧୂ ହେଇ ରହିନଥିଲା । ଅଲଗା ମଣିଷଟିଏ ପାଲଟିଯାଇଥିଲା ସେ ।'

'ମାନେ, ଠିକ୍ କେମିତି କ'ଣ ବଦଳି ଯାଇଥିଲେ ?'

'କ'ଣ ଆଉ କହିବି ରେ ମା, କେମିତି ବଦଳି ଯାଇଥିଲା । ହେଲେ ଆମ ଆଡ଼ିକା ଭଲ ମଣିଷଟିଏ ପରି ଥିଲା କି ଆଉ ସେ ?'

'ଇଂରେଜ ଭଳି ହେଇଯାଇଥିଲେ ବେଶୀ, ଏଇଆ ନା ? ସେଥିରେ କ'ଣ ଅମଣିଷ ହେଇଗଲେ ବୋଲି କହୁଛନ୍ତି ?'

'ନାହିଁ ମା ଅଞ୍ଜୁ । ତୁ ବୁଝିପାରିବୁ ନାହିଁ । ସେ ହତଭାଗା ତ ଆମ ସମସ୍ତଙ୍କ ସାଙ୍ଗେ ବି ସମ୍ପର୍କ କାଟିଦେଇଥିଲା । ଯିବା ଆସିବା ବି ଆଉ କରୁଥିଲା କି ? ତା ସ୍ତ୍ରୀ ଜ୍ୟୋତି ମଲାପରେ ତ ଏକାବେଳେ କଟିଗଲା ସମସ୍ତଙ୍କଠୁ । ଚାଷ ଗାଁ ସରପଙ୍କ ରେ ଯାଇ ପଡ଼ିରହିଲା । ମୂଲିଆ ପାନିଆ ମାନେ ଯାହା ଦେଖାଚାହାଁ କରୁଥିଲେ । ଏମିତି କଟିଲା ତା'ର ଶେଷ ଜୀବନ । ଅଠାବନ ବର୍ଷ ତ ହେଇଥିଲା ଜମାରୁ ।'

ଏଲି ଯାହା ପଚାରିବ ପଚାରିବ ହେଇ ଅଟକିଗଲା, ଗଳାଢ଼ୋକି ଅନେଇ ରହିଲା ତାଙ୍କ ମୁହଁକୁ, ସିଏ ବୁଝିପାରିଲେ ସତେକି । ନିଜେ ଅବା କଥାଟାକୁ ନ କହିବେ ବୋଲି ମନସ୍ଥ କରିଥିଲେ, ଏଇ ପ୍ରଥମ ଦେଖା ଝିଅାରୀ ସାଙ୍ଗେ ଯାହା ହେଲେ ବି । ହେଲେ କଥାଟା ଓଗାଳି ପକାଇଲେ ସେ ।

'ମଦ । ମଦ ଖାଇଲା ତାକୁ ।'

ଏଲି ଚୁପ୍‌ଚାପ୍ ଚା' ପିଇଲା । ପିଇସୀ କହି ଚାଲିଲେ, ରହିରହି କଥା ସବୁ ମନେ ପଡୁଥିଲା ପରି, 'କେଡ଼େ ସୁନ୍ଦର ଦେଶକୁ ଫେରିଆସିଲା । ହଉ ହେଲା ସ୍ତ୍ରୀ ପିଲାଙ୍କ ସାଙ୍ଗେ ଛାଡ଼ବାଡ଼ ହେଇ

ବଡ଼ ଦୁଃଖରେ ଥିଲା । ହେଲେ ଘରକୁ ଫେରିଲା ତ ? ଏତେ ବଡ଼ ପ୍ରତିଷ୍ଠା ପାଇଲା । ବୟସରେ କ'ଣ ସେ ବଡ଼ ପଦ, ପୁଣି କୁଳପତି ହେଲା । ହେଲେ କ'ଣ କରିବ ? ସଞ୍ଜ ହେଲା କ୍ଷଣି ମଦ । ସେଠି ବିଲାତରେ କ'ଣ ଏମିତି ମଦ ପିଅନ୍ତି ସବୁ ଲୋକେ ?'

ଏଲି ନିରୁତ୍ତର ରହିଲା । ଏଥର ପିଉସୀ ସହଜ ଗଳାରେ ପଚାରିଲେ, 'ତମର ସେଠି ଘରେ ଘରେ କାଳେ ମଦ ପିଅନ୍ତି ଲୋକେ ? କେମିତି ପୁଣି ଘରଦ୍ୱାର କରି ରହନ୍ତି ଝିଅ ?'

ଏଥର ଏଲି ଟିକେ ଦାଢୁଆ ସ୍ୱରରେ କହିଲା, 'କିଏ ଏକଥା କହିଚି ଆପଣଙ୍କୁ ? ମଦୁଆ ମାନଙ୍କୁ ସେଠି ବି ଲୋକେ ଘୃଣା କରନ୍ତି ।'

'ତାହେଲେ କେମିତି ଏଡ଼େ ମଦୁଆ ହେଇଗଲା ଆମ ବିଧୂ, କହିବୁଟିରେ ମା ? ଆମ ଘର କୁଟୁମ୍ବରେ, ଧର୍ମକୁ, ମାନ ମହତକୁ ଡରି ସବୁଦିନେ ଚଳିଆସିଚନ୍ତି ଲୋକ । ମୋ ବାପା ଏଡ଼େ ବଡ଼ ଅଫିସର ଥିଲେ ଗୋରା ଅମଳରେ, ଗୋରା ସାହେବଙ୍କ ସାଙ୍ଗେ ତାଙ୍କର ଉଠାବସା ଥିଲା, ହେଲେ ମଦ କେବେ ଛୁଇଁ ନାହାନ୍ତି । ତମ ଆଡ଼େ ଘରେ ଘରେ ସକାଳ ସନ୍ଧ୍ୟା ଖାଇଲା ସାଙ୍ଗରେ ମଦ ପିଅନ୍ତି, ଏକଥା ସତ ନୁହେଁ ?'

ପିଉସୀଙ୍କୁ ବୁଝାଇବାକୁ ଚେଷ୍ଟା କରିବା ବି କଷ୍ଟ । କଥାକୁ ମୋଡ଼ ଦେଇ ପଚାରିଲା, 'ଆଉ ସଂପର୍କୀୟ ଲୋକଙ୍କ ସାଙ୍ଗେ ବାପାଙ୍କର ଯିବା ଆସିବା ନଥିଲା ? ସାଙ୍ଗ ବି ନଥିଲେ କେହି ?'

'ନାଇଁ, କାହାରି ସାଙ୍ଗେ ସମ୍ପର୍କ ନଥିଲା ତା'ର । ଯିଏ ତା'ର ମଙ୍ଗଳ ଚାହିଁଲା ତା ସାଙ୍ଗେ ଦୁର୍ବ୍ୟବହାର କଲା ।'

'ଦେଶକୁ ଫେରିଲା ଦିନୁ ?'

'ନା ନା । ପ୍ରଥମେ କେଡ଼େ ଭଲ ଥିଲା । ସେବି ଦି' ବର୍ଷ ବୟସରେ କି ଗୋଟାଏ ବଡ଼ ଚାକିରୀ କରିଥିଲା । ପ୍ରାୟ ଆସେ, କେଡ଼େ ସ୍ନେହ ଶରଧାରେ ଆମ ସମସ୍ତଙ୍କ ଘରକୁ ଆସେ । ତାପରେ ଏଠି ଆସି ରହିଲା, କୁଳପତି ହେଲା । ଧୀରେ ଧୀରେ ଜଣାପଡ଼ିଲା ସେ ମଦ ପିଏ ବୋଲି । ଆମେ ତ ପ୍ରଥମେ ଜାଣିବି ନଥିଲୁ ସେକଥା । ପୁଣି ତା ବାହା ନେଇ ଯୋଉ ସବୁ ଗଣ୍ଡଗୋଳ ହେଲା, ତାପରେ ବଢ଼ିଗଲା ତା ଅଭ୍ୟାସ । ତେବେ ବି, ଏମିତି ଭଲ ବେଳେ କେଡ଼େ ଭଲ ଥିବ, କେଡ଼େ ସୁନ୍ଦର କଥାବାର୍ତ୍ତା । ଦିନେ ଦିନେ ଫୋନ୍ କରି କହିବ, ନାନୀ ଗୋ, ଆଜି ତମ ଘରେ ଖାଇବି ମୁଁ ।'

ମୁହଁ ପୁଣି କାନ୍ଦ କାନ୍ଦ ହେଲା ତାଙ୍କର । କହିଲେ, 'ସେଦିନ ତା'ର ଫୋନ୍ ଆସିଲା, ନାନୀ, ବହୁତ ଦିନୁ ମାଛ ଭଜା ସଙ୍ଗେ ଗରମ ପଖାଳ ଖାଇନି ।' ମୁଁ କହିଲି, 'ଇଏ କିବା କଥା । ଆଜି ଆ, ମୋ ଘରେ ଖାଇଯିବୁ ।' ସେଦିନ ଆସିଲା ବି ସଞ୍ଜବେଳକୁ, ମୁଁ ରାନ୍ଧି ବାଢ଼ି ବସିଛି, ଟିକିଏ ଆସୁଛି ବୋଲି ଉଠି କୁଆଡ଼େ ଗଲା ଯେ ଗଲା, ମୁଁ ଟାକି ବସିଛି ବାବୁ ଆମର ଆସି ଖାଇବ ବୋଲି । ଆଉ କିଏ ପଚାରୁଛି ନାନୀର ରୋଷେଇକୁ ?'

ବାଟେଇ ଦେବାକୁ ଆସି ପିଇସୀ କହିଲେ, 'ଆସୁଥିବୁ ରେ ମା, ଯେତେଦିନ ଅଛୁ । ତୋ ସାଙ୍ଗେ ଦେଖାହେବ ବୋଲି ମନରେ ପରତେ ନଥିଲା । ଯା ହେଉ ଚକ୍ଷୁ ସାର୍ଥକ ହେଲା ।'

ବାହାର କାବଟ ପାଖେ ପହଞ୍ଚି ପଚାରିଲେ, 'ଏକୁଟିଆ ଆସିଚୁ ? ବାହା ହେଇଛୁ ନା ?'

'ନା'

'କାଇଁକି, ତୋ ବୟସ ତ...ତିରିଶ ପୂରିବଣି...'

ହସିଲା ଏଲି, କହିଲା, 'କୋଉକାଲୁ ।'

'ଏଯାଏ ବାହାହେଇନୁ ? ତମ ଆଡ଼େ ତ ବାପ ମା ଠିକ୍ କରନ୍ତିନି କାହିଁ । ଏତେ ସୁନ୍ଦର ଦିଶୁଛୁ, କଲେଜ ପଢୁଆ ଝିଅଟିଏ ବୋଲି କିଏ କହିବ । କାଇଁକି ହେଇନୁ ବାହା ?'

ଉତ୍ତର ଦେଲାନି ଏଲି । ନଇଁପଡ଼ି ତାଙ୍କ ଗୋଡ଼ ଛୁଇଁ ପ୍ରଣାମ କଲା । ଗଦ୍‌ଗଦ ହେଇ ପଡ଼ିଲେ ପିଇସୀ, କହିଲେ, 'ଯାହେଉ, ତୋ ମା ର ସାହେବ ଧର୍ମ ସିନା ଆଦରି ନେଲୁ, ଆମ ସଂସ୍କାର ଛାଡ଼ିନାହୁଁ ।'

ଏଲିର ଚିବୁକ ଛୁଇଁ ନିଜ ଆଙ୍ଗୁଠିକୁ ଚୁମା ଦେଲେ ସେ, କହିଲେ, 'ତୋ ସାଙ୍ଗେ ରକ୍ତ ଲାଗିଚି ପରା । ପର ହେଇଯିବୁକି ଆଉ ?'

ଏଲି ଚାଲି ଯାଉ ଯାଉ କହିଲେ ସେ, 'ମୁଁ କାହ୍ନୁ ଖବର ପାଇଲେ ତୋତେ କହିବି । ହାତକୁ ହାତକୁ ଯାଇ କାହା ପାଖରେ ଅଛି ସେ ଏବେ କେଜାଣି । ଆସୁଥିବୁ ମା ।'

॥୬॥

ଏଲିର ଚାଲିଯିବା ବାଟକୁ ଚାହିଁରହିଲେ ତା ଭାନୁ ପିଉସୀ, ଗଳି କବାଟକୁ ଧରି । ନିଶ୍ୱାସଟିଏ ଛାଡ଼ି ନିଜକୁ କହିଲେ, କାହାର ଅଭିଶାପ ପଡ଼ିଥିବ । ନହେଲେ ଏଇ ପାଖରେ ବାପଘର ଥାଇ ନଥିଲା ପରି । ଏଡ଼େ ଜଣାଶୁଣା ଲୋକ ଥିଲେ ବାପା, ତାଙ୍କ ବଂଶପରିବାର ଥାଇ ଉଚ୍ଛେଦ ହେଇଗଲା ପରି । ନାତୁଣୀ ତାଙ୍କର ନିଜ ଘର ଥାଉ ଥାଉ ଆସି ହୋଟେଲରେ ଉଠିଚି ।

ଏଲିକୁ ନା ନିଜର କହିହେଉଚି ନା ପର ଭାବିବାକୁ ମନ ଡାକୁଚି । ଭାନୁ ଘରକୁ ଫେରିଆସି ପାନ ଭାଙ୍ଗୁ ଭାଙ୍ଗୁ ଭାବିହେଲେ । ଏଠି ରହିବାକୁ କହିପାରିଥାନ୍ତେ ଏଲିକୁ । ଅନ୍ତତ ଓଳିଏ ଖାଆ ଏଇଠି ବୋଲି ତ କହିପାରିଥାନ୍ତେ । ହେଲେ ପୁଅ ବୋହୂ ନ ପଚାରି ଏକଥା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ରାଜୀବ ଏଲି ଆସିବା ଖବର ଶୁଣି ଖୁସି ହେବ କି ନାଇଁ କେଜାଣି ।

ରାଜୀବ ଅଫିସରୁ ଫେରୁ ଫେରୁ ସବୁଦିନ ଭଳି ରାତି ହେଲା । ଭାନୁ ଆଜି ଜଗି ବସିଥିଲେ, ଏଲି କଥା ବଖାଣିଲେ । ତା ବେଶଭୂଷା, ଚାଲିଚଳନ ଠୁ ତାଙ୍କ ସାଙ୍ଗେ ଗପସପ କଥା ବଖାଣିଗଲେ ପୁଅ ବୋହୂଙ୍କୁ, ସେ ଦିହେଁ ଲୁଗା ବଦଳି ଖାଇବାଟେବୁଲରେ ବସି ପୁଣି ଆସି ଟିଭି ଆଗରେ ବସିବା ଭିତରେ । ସବୁଦିନ ଟିଭି ଆଗରେ ହିଁ ପୁଅ ସାଙ୍ଗରେ ତାଙ୍କ ଗପସପ ହୁଏ, ହେଲେ ଆଜି ତାଙ୍କ ତର ସହି ନଥିଲା ।

ପୁଅର ମନଧ୍ୟାନ ଦେଇ ଟିଭି ଦେଖୁଥିବା ମୁହଁକୁ ଚାହିଁ ଭାନୁ କହିଲେ, 'ଏଠି ପାଖରେ ହୋଟେଲରେ ସେ ରହୁଛି, ତା ନିଜ ବାପର ଘର ଥାଉ ଥାଉ । ମୋ ନିଜ ଝିଆରୀ ଟି, ଆହା ।'

ରାଜୀବ ବିଶେଷ ଆଗ୍ରହ କାହିଁକି ଦେଖାଉନି । ନିଶ୍ଚେ ଭାବୁଚି, କାହିଁକି ଆସିଚି ଏଲି ଏତେଦିନ ପରେ ? ମାମୁଁଙ୍କ ସମ୍ପତ୍ତି ଲୋଭରେ ନିଶ୍ଚେ । ସେ ଆଗରୁ ବେଳେ ବେଳେ କହେ, ଅଜାଙ୍କର ଧନରେ ଝିଅର ବି ଅଧିକାର ଥିବା କଥା, ଖାଲି ପୁଅକୁ ସେ ଉତ୍ତରାଧିକାରୀ ଭାବୁଥିଲେ କାହିଁକି । ଭାନୁ ବିରକ୍ତ ହେଉଥିଲେ, ଯେବେ ହାତରେ ପଇସାଟିଏ ନଥିଲା, ମୁଁ ଠାକୁରଙ୍କ ଭରସାରେ ଦିନ କାଟୁଥିଲି, ନିଜ ଲୋକେ ସାହା ହେଲେ ବୋଲି ତମମାନଙ୍କୁ ମଣିଷ କରିଦେଲି । ସବୁ ତ ମିଳିଲା ପ୍ରଭୁଙ୍କ କୃପାରୁ, ଘରଦ୍ୱାର ହେଲା । ଚାକିରୀ ବାକିରୀ ମାନ ମର୍ଯ୍ୟାଦା କ'ଣ କମ୍ ହେଲା ? ଆଉ କାହିଁକି ମାଛି ମାରି ହାତ ଗନ୍ଧେଇବାକୁ ଯିବା । ମୋ ବାପାଙ୍କ ସମ୍ପତ୍ତି ଛଅ ପିଲା ଆଉ ନାତି ନାତୁଣୀଙ୍କ ଭିତରେ ବଣ୍ଟା ହେଲେ କେତେ ବା ପଡ଼ିବ ଜଣକା ? ସେଇ ରଘୁ ଓକିଲକୁ କେସ୍ ଖର୍ଚ୍ଚ ଦେବାଲାଗି ତ ନିଅଣ୍ଟ ହେବ ସେ ସମ୍ପତ୍ତି ।

ରାଜୀବ ସେମିତି ଟିଭି ପର୍ଦ୍ଦାରେ ଆଖି ରଖି ପଚାରିଲା, 'କାହିଁକି ଆସିଚି କିଛି କହିଲା ?'

'କ'ଣ ଡାକ୍ତରୀ ଗବେଷଣା କାମ, ମୁଁ ବୁଝିପାରିଲିନି । ତା ପିଲାଦିନର ନିଜ ଘର ଏଇଠି । ତା ବାପର ସ୍ମୃତି ଲାଗି ଆସିଥିବ । ତା ଭାଇ କଥା ବି ପଚାରୁଥିଲା । ସମ୍ପତ୍ତି ଲାଗି କେଭେ ନୁହେଁ, ଏକଥା ନିଶ୍ଚିତ । ଭଲ ସଂସ୍କାରର ଝିଅଟିଏ, ଭାରୀ ସ୍ନେହୀ ।'

ଟି.ଭି.ରେ ଦୃଷ୍ଟି ରଖି ରାଜୀବ କହିଲା, 'ସେମିତି ହେଇଥାଆନ୍ତା ଯଦି, ବାପର ମଲା ହଜିଲା ଖବର ନେଇନଥାନ୍ତା ? ମାମୁଙ୍କ ମରିବା ହେଇଗଲାଣି ଦଶ ବର୍ଷ । ପୁଅଟିକି ତାଙ୍କର ହେବଣି ଚଉଦ ବର୍ଷ । ଏବେ ମନେ ପଡ଼ିଲା ସେ ସାବତ ଭାଇକୁ ?'

ରାଜୀବ ର ସ୍ତ୍ରୀ ରିନି ରୋଷଘର କାମ ସାରି ଆସି ପାଖରେ ବସିଲା । ଏତେବେଳକେ ସେ କଥାରେ ଯୋଗଦେଲା । 'କେମିତି ଦେଖିବାକୁ ସେ ? ଡାକନ୍ତେ ନି ଘରକୁ ଥରେ, ମୋର ତ ଭେଟିବାକୁ ଭାରି ଇଚ୍ଛା ହେଉଚି ।'

ଭାନୁ ପଚାରିଲେ ପୁଅକୁ, 'ତୋର ତ ଏଲିକୁ ମନେଥିବ ଭଲକରି ?'

ମା ପୁଅ ଦିହେଁ ଫେରିଗଲେ ସେ ଦିନମାନଙ୍କୁ , ଯାହା ବିଷୟରେ ଆଉ ଆଜିକାଲି ତାଙ୍କ ଭିତରେ କଥାବାର୍ତ୍ତା ହୁଏନାହିଁ ।

ରାଜୀବ ମଝିରେ କହିଲା, 'ରହ, ଏ ପ୍ରୋଗ୍ରାମ ଟା ସରିଯାଉ ।'

ଭାନୁଙ୍କ ମନ କିନ୍ତୁ ଟିଭିରେ ନଥିଲା । ଅଞ୍ଜୁ । ପିଲାଦିନେ ବି ସେତେ ଇଂରେଜ ଭଳି ଗୋରା ନଥିଲା । ଏବେବି କେହି କହିବନି ଅଧା ଇଂରେଜ ବୋଲି । ବାହାହେବାର ବୟସ ଗଡ଼ିଗଲାଣି ପ୍ରାୟ । ତାଙ୍କ ଦେଶରେ ଏସବୁ ନିୟମ କୋଉଠି ଥାଏ ଯେ । ଡାକ୍ତର ହେଇଚି, ଦେଶ ବିଦେଶ ବୁଲୁଚି ଏକୁଟିଆ । କୋଉ ଦୁଃଖରେ ଅଛି ଯେ ତା ଲାଗି ଭାନୁ କାନ୍ଦିବେ । ଏଲି ବାପଘରୁ ହକ୍ ପାଇନାଇଁ ବୋଲି ପୁଅକୁ କହି ତା ଲାଗି ଲଢ଼ିବେ କାହିଁକି ବା ?

ପାନ ଭାଙ୍ଗି କଳରେ ଗୋଟିଏ ଢାକିଲେ ସେ । ଗୁଆ ଲବଙ୍ଗ ଟିକିଏ ଲେଖାଁ ପୁଅ, ବୋହୂ ହାତକୁ ଦେଲେ । ଠିକ୍ କଥା, ରାଜୀବ ଏଲି ପାଇଁ ଦୁଃଖ କରିବ ଅବା କାହିଁକି । ପିଲାଦିନଟି ଯାକ ବିଚରାର ସେଇ କମଳା ନିଳୟରେ କଟିଚି, ଆଶ୍ରିତ ଟିଏ ଭଳି । ଏଇ ଜମିଖଣ୍ଡକ ଥିଲା ବାପାଙ୍କର ବଗିଚା ଘର, ଆମ୍ବ କମଳା ଗଛ ଲଗାଇଥିଲେ ଅଫିସର ବାପା, ସେ କାଳରେ ତାଙ୍କର ପ୍ରତିପତ୍ତି ସେଇଭଳି ଥିଲା । ଈର୍ଷା କରୁଥିଲେ ସାରା ସହର ଲୋକେ, ଯେତେକ ପୁରୁଣା ଖାନଦାନୀ ଘର ଥିଲେ ସମସ୍ତେ । ଏଠି ତ ସହର ସାରାର ଯେତେକ ଲୋକ ନିଜକୁ ସମ୍ଭ୍ରାନ୍ତ ବୋଲି ଭାବୁଥିଲେ, ସଭିଙ୍କର ଚାଷ ଗାଁ ଥିଲା, ପୁଣି ସହରରେ ପକ୍କା ଘର ଥିଲା । ଅନେକଙ୍କର ଛୋଟକୋଟିଆ ଚାକିରୀ ବି ଥିଲା, ଏଣୁ ତେଣୁ କିଛି ବେପାର ବଣିଜ ବି କରୁଥିଲେ କେତେକ । ହେଲେ ସାଧୁ ନାୟକ ଥିଲେ କୁଆଡୁ ଉଡ଼ି ଆସିଲା ଚଢ଼େଇ । ମାଟିଆ ସାହେବ ବୋଲି ଥଟ୍ଟା କରନ୍ତି ଲୋକେ, ସାହେବଙ୍କ ପରି ପ୍ୟାଣ୍ଟ କୋଟ୍ ପିନ୍ଧି ଜୋତା ମାଡ଼ନ୍ତି ବୋଲି । ଖାଲି ସେତିକି ନୁହଁ, ସହରରେ ତିନିଟି ମଟର ଗାଡ଼ିରୁ ଗୋଟିଏ ଥିଲା ସାଧୁ ନାୟକଙ୍କର । ମନେ ଅଛି ଭାନୁର ଶାଶୁଘର ଲୋକେ ଛିଗୁଲେଇ କହୁଥିଲେ, ବାପର ମଟରଗାଡ଼ି ତ ଭଟଭଟ ଡାକେ ଯେ କୋଶେ ଦୂର ଯାଏଁ ଶୁଭେ, ବର ସଂଖୁଳିବାକୁ ପଠେଇଥିଲା ଯେ ବାହାଘର ବାଜାଠୁ ଗାଡ଼ି ଡାକକୁ ଲୋକେ ବେଶୀ ଶୁଣୁଥିଲେ । ହେଲେ ଦେଲା ବେଳକୁ ତୁନିତାନି ସବୁ, ନା ଯାନି ଯୌତୁକ, ନା ଟଙ୍କା ସୁନା ।

ଭାନୁଙ୍କର ଶଶୁରଙ୍କୁ ବି ଆଖିରେ ସୁହାଉ ନଥିଲା, କୋଉ ମଫସଲିଆ ଚଷାଭୂଷା ଘର ପିଲାଟାଏ, ଏଠି ଆସି ଦୋତାଲା ତିନିତାଲା କୋଠା ପିଟିବ, ତହିଁରେ ପୁଣି ବଗିଚା ଘର, ଚାଷ ଗାଁ ଘର ଅଲଗା ଅଲଗା । ସେଇ ଘରୁ ଝିଅ ଆଣି ପସ୍ତାଉଥିଲେ ସେ ଜୀବନଯାକ । ଭାନୁକୁ ଶୁଣାଇ କହନ୍ତି, 'ସୁନା ଗିନିରେ ଦରମା ପାଏ କାଳେ ତୋ ବାପା ? ତହିଁକି କଲିକତୀ ବଙ୍ଗାଳୀଙ୍କ ଭଳି ତା ଝିଅମାନେ ଫେର ଶାଢ଼ୀ ପିନ୍ଧି ଜୋତା ମାଡ଼ି କଲେଜ ପାଠ ପଢ଼ିବାକୁ ଯାଆନ୍ତି । ପୁଅ ଯାଉଛି ବିଲାତକୁ ପାଠ ପଢ଼ିବାକୁ । ଝିଅ ବାହାଘର କଲା ବେଳକୁ ଏଡ଼େ ହାତ ଚିପା କାହିଁକି ?'

ବିଧୁ ବିଲାତ ଯିବା ବେଳକୁ ଶତ୍ରୁ ପାଲଟି ସାରିଥିଲା ସାରା ସହର । ସାଧୁ ନାୟକ ଛାତି ଫୁଲାଇ ଜୀବନ କାଟିଦେଲେ ଅବଶ୍ୟ, ହେଲେ ତାର ଦାମ୍ ଦେବାକୁ ହେଲା ତାଙ୍କ ଝିଅମାନଙ୍କୁ । ବଡ଼ ତିନିଝିଅ ଯେଉଁମାନେ ବାହାହେଇ ଯାଇଥିଲେ, ଅଭିଜାତ ଶାଶୁଘର ମାନଙ୍କରୁ ନାନା ଗଞ୍ଜଣା ସହିବାକୁ ପଡ଼ିଲା ସେମାନଙ୍କୁ । ନୂଆକରି ସହରକୁ ଆସିଥିବା ହାକିମଟିର ବାଳୁତ ଝିଅଙ୍କୁ କାହିଁକି ବୋହୂ ନ କରନ୍ତେ ସେମାନେ । ହେଲେ କ୍ରମେ ସେ ଅର୍ବାଚୀନ ଲୋକଟି ତାଙ୍କଠୁ ଉଚ୍ଚରେ ମୁଣ୍ଡ ଟେକି ଚାଲିଲା । ଆଖପାଖର କାହାକୁ ମଣିଷ ବୋଲି ଗଣିଲାନି ତା ହାବଭାବରେ । କେମିତି ସହିଥାନ୍ତେ ଭାନୁର ଶଶୁର । ପୁଅ ହାତ ଦେଇ ବୋହୂକୁ, ଆଉ ବୋହୂ ଜରିଆରେ ତା ବାପକୁ ଶାସ୍ତି ଦେବାକୁ ହେବ, ଦେଖେଇଦେବାକୁ ହେବ କିଏ ସେ ବଡ଼ ଏ ସହରରେ । ସେ ମାଟିଆ ସାହେବର ମୁଣ୍ଡ ତଳକୁ କରିବାକୁ ହେବ ।

ଶାଶୁଘରେ ରହିବା ଅସମ୍ଭବ ହେଇଗଲା ଭାନୁଲାଗି । ସ୍ୱାମୀଙ୍କର କିଛି ଚାକିରୀ କି କାମ ଧନ୍ଦା ନଥାଏ । ବଡ଼ ଘର ବୋଲି ବାପା ଜୋଇଁ କରିଥିଲେ । ସ୍କୁଲ ପାଠ ଶେଷକରି କଲେଜ ବି ମାଡ଼ିଥିଲେ ତାଙ୍କ ସ୍ୱାମୀ । ହେଲେ ତାଙ୍କ ଦେଇ ପାଠ ହେଲାନାହିଁ । ଦିନାକେତେ କଟକ, କଲିକତା ଯା ଆସ କଲେ, କ'ଣ ସବୁ ଲୁଗା ବେପାର, ପୁଣି ଯାତ୍ରୀ ବସ୍ ଚଳେଇବାକୁ ବି ଚେଷ୍ଟା କରିଥିଲେ । କିଛି ହେଲାନାହିଁ ତାଙ୍କ ଦେଇ । ଭାନୁ ଶାଶୁଘର ଗଞ୍ଜଣା ସହିପାରେ ନାହିଁ, ନଈକୁ ଗାଧୋଇ ଯିବା ବାଟରେ ପଳେଇ ଆସେ ବାପ ଘରକୁ । ପ୍ରଥମେ କେତେଥର କଟକଣାରେ ଫେରାଇ ନିଆଗଲା ତାକୁ । ଶାଶୁଶଶୁରଙ୍କ, ପୁଣି ବାପା ମାଙ୍କ ତାଗିଦା ବି ଶୁଣିବାକୁ ମିଳିଲା । ଗୋଟି ଗୋଟି ଚାରିଟି ପିଲା ବି ହେଲେ । ପ୍ରସବ ବେଳେ ଆସି ଭାନୁ ଚାରି ଛଅ ମାସ ରହିଯାଏ ବାପଘରେ । ତିନିଝିଅ ପରେ ପୁଅ ହେଲା ସିନା, ତାର ଆଉ ଶାଶୁଘରକୁ ଫେରିବାର ଦରକାର ପଡ଼ିଲାନି । ଆଲୋଡ଼ା ଅଦେଖା ହେଇ ସେ ରହିଗଲା ସେ ତେଣିକି ସ୍ୱାମୀ ଆଖିରେ ବି ।

ଭାନୁର ପିଲାମାନେ ବଢ଼ିଲେ ବାପଘରର ପ୍ରଶସ୍ତ ଅଗଣାରେ ଖେଳି, ଜଳଖିଆ ବାରଣ୍ଡାରେ ଖାଇବାବେଳେ ସମସ୍ତଙ୍କ ସାଙ୍ଗେ ବସିପଡ଼ି । ରାତିରେ ଯୋଉଠି ଜାଗା ମିଳିଲା କିଛି କନ୍ଥା କି ମସିଣା ଖଣ୍ଡେ ପାରିଦେଇ । ସ୍କୁଲ ଛାଡ଼ି କଲେଜ ପାଠ ବି ସେମିତି ହେଇଗଲା ପିଲାଙ୍କର । ବେଳେବେଳେ ପିଲାମାନେ, ଝିଅମାନେ କି ଗେହ୍ଲାପୁଅ ରାଜୀବ ଆସି କହେ ମା'କୁ, 'ସାର୍ କହିଛନ୍ତି, ଫିସ୍ ଦେବାକୁ ହେବ, ବା ବହି ଖାତା ଲୋଡ଼ା ।' ବଡ଼ ପାଟିରେ ଭାନୁ କହନ୍ତି, 'ମୁଁ କୋଉଠୁ ପାଇବି ପଇସା । ଯାଉନ ତମ ବାପାଙ୍କୁ ମାଗିବ ।' ଆଖପାଖରେ ପିଲାଙ୍କ ଅଜା ଥିଲାବେଳେ ହିଁ ଭାନୁ ଏମିତି ପାଟିକରେ ନିଜ ପିଲାଙ୍କ ଉପରେ । ସାଧୁ ନାୟକ କହନ୍ତି, 'ପିଲାଙ୍କ ଉପରେ କାହିଁକି ବିଗୁଡୁଚୁ । ସେମାନେ କ'ଣ କଲେ ?' ସେଇଠୁ ସମସ୍ୟାର ସମାଧାନ ହେଇଯାଏ । ତେବେ ଲୁଗାପଟାଠୁ ଆରମ୍ଭ କରି ଦାଣ୍ଡରେ ଚୁଡ଼ିବାଲା ଆସିଲେ ବି ଭାନୁ ଅନେଇରହିଥାଏ ନିଜ ମା'ଙ୍କ ହାତ ଟେକାକୁ । ବାପ ଘରେ ଥାଇ ଭାନୁର ଗୋଟିପରେ ଗୋଟି ପିଲା ବି ହେଇଚନ୍ତି । ତା ସ୍ୱାମୀ ଆସିଲେ ଦାଣ୍ଡଘରେ ଶୁଅନ୍ତି, ଭାନୁ ଶୁଏ ଭିତର ପାଖ ଘରେ । ସମସ୍ତେ ଶୋଇସାରିଲେ ସ୍ୱାମୀ ତା'ର ବାରିପାଖକୁ ଯିବା ଆଳରେ ଉଠନ୍ତି, ଖଣ୍ଡି କାଶ ମାରନ୍ତି, ଭାନୁ ଉଠିଆସେ କୋଳ ପିଲାଟିକି ଘୋଡ଼େଇ ଶୁଏଇ ଦେଇ । କାହାକୁ କହିବା ଦରକାର ହୁଏନାହିଁ, ଦେହ ବାରିହେଲା ଆପେ ଜାଣନ୍ତି ସଭିଏଁ । ଅନ୍ୟ ଭଉଣୀମାନେ ସାଇ ପଡ଼ିଶା ଥଟ୍ଟା କରନ୍ତି, ଦୟା ପାଇ ଭଲ ମନ୍ଦ ଖାଇବାକୁ ବି ଦିଅନ୍ତି ।

ଭାନୁ ଜାଣେ, ତା ପିଲାମାନେ ବୁଝନ୍ତି ସେ ହୀନିମାନ, ନିଜ ବାପକୁ ନକହି ଅଜା ପାଖରେ ଯାଇ କଥା କଥାରେ ଦାନ୍ତ ନିକୁଟିବା । ଦାଣ୍ଡ କଚେରୀ ଘରେ ବଡ଼ ଟେବୁଲଟିରେ ଚଶମା ପିନ୍ଧି କାଗଜପତ୍ର ଦେଖୁଥାଆନ୍ତି ସାଧୁ ନାୟକ, ପିଲାମାନେ କହନ୍ତି, ଅଜା ପରୀକ୍ଷା ଲାଗି ଫର୍ମ ଭରାଯିବ, ଡ୍ରିଲ୍ କ୍ଲାସ ଲାଗି ଧଳା ଡ୍ରେସ୍ ଜୋତା କିଣାଯିବ । ଝିଅମାନଙ୍କ ବାହା ବି ହେଇଗଲା ସେମିତି । ବାପା ସେଥର ଦେହ ଖରାପ ହେଇ ପଡ଼ିଥାନ୍ତି, ତାଙ୍କ ବିଛଣା ପାଖେ ଠିଆ ହେଇ ଭାନୁ କହିଲା, 'ବାପା,

ରାଜୀବକୁ ନେଇ ମୁଁ ରହିବି କୋଉଠି ? ପିଲାଙ୍କ ବାପା ତ ବର୍ଷେ ଛମାସ ରେ ଥରେ ପିଲାଙ୍କୁ ଦେଖିଦେଇ ଯାଉଚନ୍ତି, ତା ବି ଖାଲି ହାତରେ । ତମ ଅନ୍ତେ ମୁଁ ରହିବି କୋଉଠି ?'

ବାପା ଏଇ ଖପରଛାଉଣୀ ଦି'ବଖରା ମାଟିଘର ଭାନୁ ନାଁରେ କରିଦେଇଥିଲେ, ଆଉ ପୂରା ବଗିଚାଘର ହତାଟି ବି । କମଳା ନିଳୟର ଦେଖାରେଖା କ୍ରମେ ଭାନୁ ହାତକୁ ଆସିଯାଇଥାଏ । ବିଧୂ ଆସିଲା ପରେ ସେ ନିଜ ଜିନିଷପତ୍ର ଦି'ଖଣ୍ଡ ନେଇ ଉଠିଆସିଲା ଏ ବଗିଚା ଘରକୁ, ମାଟିଘର ଖଣ୍ଡିକ ଲିପାପୋଛା କରି ମରାମତି କଲା । ତା ସ୍ୱାମୀ ସେତେବେଳକୁ ମରିସାରିଥାନ୍ତି, କାହିଁ କିଛି ଚହଲ ନ ପକେଇ । ରାଜୀବର କଲେଜ ପଢ଼ା ସମୟକୁ ଠିକ୍ ସାଧୁ ନାୟକ ବି ଚାଲିଗଲେ । କେଡ଼େ କଷ୍ଟକର ଦିନ ଥିଲା ସେ ସମୟଟି ।

ଟି.ଭି. ସାମ୍ନାରେ ବସି ଢୁଳଉଥିବା ପୁଅକୁ ଦେଖି ଭାନୁ ଅଦୃଷ୍ଟ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା । ମା ସମଲେଶ୍ୱରୀଙ୍କୁ କେଭେ ଛାଡ଼ିନଥିଲା ଭାନୁ, ସେଥିଲାଗି ରାଜୀବ ମଣିଷ ହେଲା । ସେଦିନ ସକାଳୁ କେଉଁ ଅମୃତ ଯୋଗରେ ଭାନୁର ରାତି ପାହିଥିଲା, ଅଫିସ୍‌ରୁ ଫେରି ପ୍ରଥମ ଦରମା ପାଇ ରାଜୀବ ଫେରିଲା, ଭାନୁ ଜୀବନରେ କେବେ ଏତେଗୁଡ଼ିଏ ଶହେଟଙ୍କିଆ ନୋଟ୍ ହାତରେ ଧରିନଥିଲା ।

ବିଧୂ ବିଲାତରୁ ଫେରିଆସିଲା, ଅଧା ବୟସରେ ପୁଣିଥରେ ବାହାସାହା ହେଲା । ହେଲେ କମଳା ନିଳୟ ଭାନୁ ଲାଗି ତା ପିଲାମାନଙ୍କ ଲାଗି ପର ହେଇଗଲା । ଯେଉଁଠି ତାଙ୍କ ପିଲାଦିନଟି କଟିଥିଲା, ସେଇ ଘରକୁ ଏବେ ଭାନୁର ଝିଅମାନେ ବାପଘରକୁ ଆସିଲେ ଯାଆନ୍ତି ନାହିଁ ସୁଦ୍ଧା । ବିଧୂ ନିଜେ ସେମିତି ତିକ୍ତ କରିଦେଇଥିଲା ସମ୍ପର୍କକୁ । ନିଜ ନୂଆ ସ୍ତ୍ରୀଟିକି ନେଇ ଯେତେବେଳେ ସେ କମଳା ନିଳୟରେ ଆସି ରହିଲା, ପୁରୁଣା ଲୋକ ସମସ୍ତେ ଆପେ ଦୂରେଇ ଯାଇଥିଲେ ତାଆଠୁ ।

ରିନି ରାଜୀବର ହାତ ଧରି ଟାଣୁଥିଲା, 'ଚାଲ ଏଥର । ଢୁଳେଇ ଢୁଳେଇ ଟିଭି ଦେଖୁଚ କ'ଣ ?'

ଭିଡ଼ିମୋଡ଼ି ହେଇ ରାଜୀବ ଉଠିଲାବେଳେ ଭାନୁ କହିଲେ, 'ବାପା, ଟିକିଏ ଅଞ୍ଜୁ କୁ ଡାକି ଆଣନ୍ତୁନି, ହୋଟେଲ୍‌ରେ ରହୁଚି । ଆମ ଘରେ ରହିବାକୁ କହନ୍ତେ ?'

'ସେ ସାହେବ ଲୋକ ପରା, ଡ. ପ୍ୟାଟ୍ରିକ୍ ବୋଲାଇଲାଣି । ଆମଘରେ କାହିଁକି ରହିବ ?'

'କାହିଁକି ସାହେବ ହେବ ମ । ସେମିତି ଅଛି, ମୋ ଗୋଡ଼ ଛୁଇଁ ଜୁହାର କଲା ।'

ରାଜୀବ ମୁହଁର ଭାବ ପଢ଼ିବାକୁ ଚେଷ୍ଟା କରି ଭାନୁ ଟିକିଏ ନେହୁରାଇ କହିଲେ, 'ପିଲାଦିନେ ସେମାନେ ଯେବେ ଆସନ୍ତି, କେଡେ ସୁନ୍ଦର ସାଙ୍ଗହେଇ ଖେଳ ତମେମାନେ । ତୋର କିଛି ମନେ ନାହିଁ ?'

ହାଇ ମାରୁ ମାରୁ ରାଜୀବ କହିଲା, 'ମନେ ଅଛି, ସବୁ ମନେ ଅଛି । ହେଲେ ପିଲାଦିନ କଥା ଭିନ୍ନ ଥିଲା ମା, ଏବେ ଇଂରେଜ ଠାଣୀରେ ରହିବା ତା'ର ଅଭ୍ୟାସ ପଡ଼ିଯିବଣି । ତା କାମରେ ଆସିଚି, କାହିଁକି ଆମେ ସେ ଧନ୍ଦାରେ ପଶିବା, ଘରକୁ ଡାକି କୁଣିଆ ଚର୍ଚ୍ଚା କରିବା ?'

ଡ. ପଟନାୟକ ଗାଡ଼ି ପଠେଇଥିଲେ । ଏଲି ହୋଟେଲ ଛାଡ଼ିଲା ବେଳେ ମ୍ୟାନେଜର ହରଓ୍ୱନ୍ତ ସିଂହ ଆପଣାର ବନ୍ଧୁ ଭଳି ବାଟେଇ ଦେବାକୁ ଆସି ହାତଯୋଡ଼ି କହିଥିଲେ, 'ଯାକୁ ଆପଣଙ୍କ ନିଜ ଘର ବୋଲି ଭାବିବେ, ଯେତେବେଳେ ମନହେବ ଆସି ରହିବେ ପ୍ଲିଜ୍ ।'

ଏଲିର ମନେହେଲା ଏଇ ଭଦ୍ରଲୋକଙ୍କ ଠାରୁ ହିଁ ସବୁଠାରୁ ବେଶି ଆତ୍ମୀୟ ବ୍ୟବହାର ପାଇଚି ସେ ଏଠିକି ଆସିଲାପରଠାରୁ ।

ସହରର ରାସ୍ତା ଘାଟଦେଇ ଗାଡ଼ି ଗଲାବେଳେ ଏଲି ଦେଖି ନେଉଥିଲା, ଚିହ୍ନି ହେଉ ନଥିଲେ ବି ଜାଣି ହେଉଚି କ'ଣ ସବୁ ନୂଆ ଏଠି, ଆଉ କ'ଣ ସବୁ ବଦଳିନାହିଁ ଗତ କୋଡ଼ିଏ ବର୍ଷ ଭିତରେ । ମଣିଷମାନେ ଆଉ କେହି ଚିହ୍ନା ମନେହେଉ ନାହାନ୍ତି ।

ନିଜ ଦେଶକୁ ଫେରି ଆସିଥିଲେ ବାପା, କେଉଁଭଳି ସ୍ମୃତିସବୁ ଜୀଆଁଇବା ଲାଗି, କାହା ସାଙ୍ଗେ ସମ୍ପର୍କର ଡୋରରେ ତେବେ ? ଏମିତି ଧାରଣା ହେଉଥିଲା ପିଲାଦିନେ, ସତେକି ଭାରତରେ ରକ୍ତସମ୍ପର୍କ ମାନ ଅତି ଆପଣାର, ଗୋଟିଏ ପରିବାର ଭଳି । ଭାନୁ ପିଇସୀଙ୍କ ଘରୁ ଫେରିବା ପରଠାରୁ ଏଲି ଭାବୁଥିଲା, ଏତେ କ'ଣ ବିଶେଷତ୍ୱ ଥିଲା ତାଙ୍କର ନିଜ ସାନ ଭାଇଟି ଲାଗି ସ୍ନେହରେ, ତହିଁରେ ବାପା ଏତେ ଭରସା କଲାଭଳି ? ପିଇସୀ ସ୍ମୃତିରେ ଟିକିଏ ବେଳ ବିହ୍ୱଳ ହେଇପଡ଼ିଲେ ସିନା, ଭାଇ ସହିତ କେତେ ତିକ୍ତତା ହେଇଯାଇଥିଲା ସେକଥା ସେ ଲୁଚାଇ ନାହାନ୍ତି ।

ବାପା କ'ଣ ଏକୁଟିଆ ସମସ୍ତଙ୍କଠୁ ଅଲଗା ହେଇ ନିଜ ମନଖୁସିରେ ରହିବା ଭଳି ଲୋକ ଥିଲେ ? ପରିବାର ସାଙ୍ଗେ ପିଲାଙ୍କ ସାଙ୍ଗେ ସମୟ କଟାନ୍ତି ସେ, ହେଲା ଅବା ନିଜ ଖୁସିପାଇଁ ସମୟ ସହିତ ଆଉରି ସବୁକିଛି ଖର୍ଚ୍ଚ କରିବାରେ ଟିକିଏ ବି କାର୍ପଣ୍ୟ କରନ୍ତି ନାହିଁ ।

ନୂଆ ନୂଆ ଟେପ୍‌ରେକର୍ଡର ବାହାରିଥାଏ ଛୋଟକାଟିଆ ସୁଟ୍‌କେଶ୍ ସାଇଜର, ପୁରୁଣା ଯୁଗର ଗ୍ରାମୋଫୋନ୍ ଭଳି ଢାଙ୍କୁଣୀ ଖୋଲାଯାଏ ସେଥିରେ, ଭିତରେ ଆଖିଦୃଶିଆ ଚକ ଦୁଇଟି ବୁଲେ । ବାପା କିଣିଆଣିଲା ଦିନ କହିଥିଲେ, 'ଏଥିରେ ପିଲାଏ ତମକୁ ଓଡ଼ିଆ ଶିଖେଇବା ଚାଲ ।' ଏଲି ବବିଙ୍କ ଓଡ଼ିଆ ଟେପ୍ କରାଯାଏ । ବାପା ଶିଖେଇଲା ଗୀତ ବି । ଏତେବେଳେ ଭାଇଭଉଣୀ ବିହେଁ ଆଖି ବୁଜିଦିଅନ୍ତି ସେ କାଳି କିଟିକିଟି ସନ୍ଧ୍ୟାମାନଙ୍କୁ, ଅନ୍ଧାରୁଆ ଦୁଃସ୍ୱପ୍ନ ଗୁଡ଼ିକୁ । ହେଲେ ଅନିବାର୍ଯ୍ୟ ଦିଶନ୍ତି ବାପାଙ୍କର ସେ ବିପରିତ ମୂର୍ତ୍ତି ମାନ । ସବୁ ସୁନ୍ଦର ଚାଲିଥାଏ, ବାପା ଟଳମଳ ହେଇ ଘରକୁ ଫେରନ୍ତି । ପାଟିତୁଣ୍ଡ ହେଲେ ପୁଣି ଏମିତି ଝଡ଼ ପରି ଚାଲିଯାନ୍ତି ଯେ ଏଲିର ଭୟ ହୁଏ, ଆଉ ଫେରିବେନି ବୋଧେ ।

ସତରେ ଦିନେ ଆଉ ଘରକୁ ଫେରିନଥିଲେ ବାପା । ନିଜ ଇଚ୍ଛାରେ ନୁହେଁ । କୋର୍ଟର ଆଦେଶରେ ।

ଜଜ୍‌ଙ୍କର ସାମ୍ନାରେ ମା କାନ୍ଦି କାନ୍ଦି କହିଥିଲା, 'ସେ ଲୋକଟା ମୋତେ ଅତ୍ୟାଚାର କରିଚି । ବାହାହେଲା ଦିନୁ । ଇଣ୍ଡିଆକୁ ତା ବର୍ବର ଲୋକମାନଙ୍କୁ ମଝିକୁ ନେଇଯାଇ ମୋତେ ସ୍ଲେଭ୍

ପରି ବ୍ୟବହାର କରିଚି । ଆଲ୍କହଲିକ ଲୋକଟିକୁ ମୁଁ ସହିଚି ପରିବାର ରହୁ ବୋଲି, ମୋ ପିଲାଙ୍କୁ ତା ଅତ୍ୟାଚାର ସହିବାକୁ ହେଉଚି । ମୋ ଝିଅ ପ୍ରତି ନିଷ୍ଠୁର ହେଇଚି ସେ, ସାଙ୍ଗ ସାଥିଙ୍କ ମିଶିବାକୁ ଦେଉନାଇଁ ତାକୁ । ଘର ଭିତରେ କଇଦୀ ପରି ରଖିଚି ମୋ ଝିଅକୁ । ପୁଅକୁ ପିଲାଟି ଦିନୁ ନିଜ ଧର୍ମର ଅନ୍ଧବିଶ୍ୱାସ ସବୁ ଶିଖାଇଚି, ଆଦିମ ବିଚିତ୍ର ରୁଢ଼ୀ ସବୁ ମାନିବାକୁ ବାଧ୍ୟ କରିଚି ।'

ପନ୍ଦର ବର୍ଷର ଏଲି କୋର୍ଟ ଛାତ କମ୍ପେଇ ଦେଇ ପାଟି କରି କହିଥିଲା, 'ହଁ, ମୋ ବାପା ନିଷ୍ଠୁର । ମୋତେ ସଞ୍ଜବେଳେ ଘରୁ ବାହାରିବାକୁ ଦିଅନ୍ତି ନାଇଁ, ସାଙ୍ଗ ପୁଅପିଲାଙ୍କ ସାଙ୍ଗେ କଥା କହିବାକୁ ଦିଅନ୍ତି ନାଇଁ । ମୋ ସାଙ୍ଗ ପିଟର ମୋ ଲାଗି ଫୁଲ ନେଇ ଆସିଥିଲା, ବାପା ତାକୁ ଚାପୁଡ଼ା ମାରି ତଡ଼ିଦେଲେ । ଦୁଇବର୍ଷ ହେଲାଣି ମୋର ଟୀନ୍ ଏଜ୍‌ରେ ପାଦ ଦେବା, ଅଥଚ ଗୋଟିଏ ହେଲେ ପୁଅ ସାଙ୍ଗେ ଡେଟିଂ ରେ ଯିବାକୁ କି ସନ୍ଧ୍ୟାରେ ପାର୍ଟିଟିଏ ରେ ଯୋଗଦେବାକୁ ନାଚିବାକୁ ଦେଉନାହାନ୍ତି ମୋ ବାପା ।'

ଏଲି କାନ୍ଦରେ ଭାଙ୍ଗି ପଡ଼ିଥିଲା କୋର୍ଟ ଘର । ବାପା ପାଟିକରି ଯୁକ୍ତି କଲେ, 'ବେଶ୍ କଥା ତ ? ଡେଟିଂ ରେ ବଢ଼ିଲା ଝିଅକୁ ଯିବାକୁ ନଦେବା ହେଲା ଅତ୍ୟାଚାର ? ମୋ ଦେଶରେ ଡେଟିଂ ପ୍ରଥା ନାହିଁ । ମୋ ଦେଶରେ କାହିଁକି, ଅନେକ ଦେଶରେ ଝିଅମାନେ ଅବିବାହିତ ଅବସ୍ଥାରେ ପୁଅମାନଙ୍କ ସାଙ୍ଗେ ମିଳାମିଶା କରନ୍ତି ନାହିଁ, ସେମାନେ ସମସ୍ତେ ତେବେ ଅତ୍ୟାଚାରିତା ? ସଂସ୍କୃତି କ'ଣ ଦେଶ ଧର୍ମ ଅନୁଯାୟୀ ଭିନ୍ନ ଭିନ୍ନ ହୁଏନାହିଁ ? ମୋ ପରିବାରରେ ନିଜ ସଂସ୍କୃତିକୁ ମାନି ପାରିବିନି ମୁଁ ?'

ଜଜ୍‌ଙ୍କ ବାରଣ ସତ୍ତ୍ୱେ ଚୁପ୍ ହେଉନଥିଲେ ବାପା, ଏଲି ବି ଚୁପ୍ ପଡ଼ି ନଥିଲା । କାନ୍ଦର ହିକ୍କା ଭିତରୁ ଧାରୁଆ ଛୁରୀ ପରି ସ୍ୱରରେ କୋର୍ଟ ଘର କମ୍ପାଇ ଦେଇଥିଲା ଏଲି, 'ସତେ ? ଏଡ଼େ ସମ୍ମାନ ସଂସ୍କୃତି ଲାଗି ? ତମ ଦେଶର ସଂସ୍କୃତିରେ ଶିକ୍ଷିତ, ବିବାହିତ ପ୍ରୌଢ଼ ବାପାଟିଏ ଅୟସରେ ପରସ୍ତ୍ରୀ ପାଖକୁ ଯାଇପାରେ ? ସେଥିରେ ଆପତ୍ତିଜନକ ନଥାଏ କିଛି ? ନିଜ ସାନ ପିଲାଙ୍କ ଆଗରେ ମଦ ପିଇ ତାମସା କରିପାରେ, ପିଲାଙ୍କ ସାମ୍ନାରେ ତାଙ୍କ ମାଆକୁ ଯାବତୀୟ ଅପମାନ ଦେଇପାରେ ?'

କୋର୍ଟରେ ସମସ୍ତେ ଅଭିଭୂତ ହୋଇଥିଲେ । ତା ମାଆ ଲିସା ଲାଗି ସମବେଦନାରେ ଭିଜିଥିଲା ଜଜ୍ ସମେତ ସମସ୍ତଙ୍କ ହୃଦୟ ।

ମା ଦିନ ତାରିଖ ଟିପି ରଖିଥିଲା, ଅମୁକ ଅମୁକ ଦିନ ମୋ ସ୍ୱାମୀ ଅମୁକ ଘରେ ରାତି ବିତାଇଛନ୍ତି । ଅମୁକ ସ୍ତ୍ରୀର ତାଙ୍କ ପାଖକୁ ହାତ ଲେଖା ଚିଠି ଏଇ ଦେଖନ୍ତୁ ।

ଏଲି ବୁଝିବା ବୟସର ହୋଇସାରିଥିଲା, କୋର୍ଟକୁ କଥା ଯିବା ପୂର୍ବରୁ ଯେତେବେଳେ ଘରେ କଳି ତକରାଳ ହେଉଥିଲା, ମାଙ୍କ ଦୁଃଖଠାରୁ କିଛି କମ୍ କଷ୍ଟପାଉନଥିଲା ସେ । ନିଶାରେ ସ୍ପଷ୍ଟ ଉଚ୍ଚାରଣ ହେଉନଥାଏ, ବାପା ତାଚ୍ଛଲ୍ୟରେ ଜବାବ ଦିଅନ୍ତି ମାଆକୁ 'କୋଉ ପୁରୁଷ ନକରେ ଏସବୁ ଏଁ ? କଦବା କେବେ କିଏ ବା ନକରେ ପରସ୍ତ୍ରୀ ଗମନ ?'

ମା ଉତ୍ତର ନ ଦେଉଣୁ ବିଲାତୀ ଆଦବ କାଇଦାକୁ, ସଭ୍ୟତାକୁ, ସମାଜକୁ ଅକ୍ଷେପ କରନ୍ତି ସିଏ ଯାବତ୍ କୁତର୍କ ରେ ।

'ତମ ସଭ୍ୟ ଇଂରେଜ ପରା କହନ୍ତି ସେକ୍ସ ପାପରେ ଗଣାଯାଏନାହିଁ ? ଆଜିକାଲି କୋଉ ବିଦ୍ୱାନ ନ କହୁଚି ଏକଥା, କେଉଁ ମନସ୍ତତ୍ତ୍ୱବିଦ୍ ନକହୁଚି ? ଏଠି ତମର ସେକ୍ସ ଏଣେ ଦାଣ୍ଡରେ ପଡ଼ି ହାଟରେ ଗଡୁଚି, ଆଉ ମୋ ବେଳକୁ ଏଡ଼େ ଟିକିକରେ ଘର ଭାଙ୍ଗି ଯାଉଚି ? ଇଏ କି ନିୟମ ?'

କେବଳ ନିଶା ବେଳେ ନୁହେଁ, ଗର୍ବ କରନ୍ତି ସେ ଲଣ୍ଡନର ପ୍ରସିଦ୍ଧ ଅଭିଜାତ ପ୍ଲେବୟ କ୍ଲବର ମେମ୍ବର ହେଇଚନ୍ତି ବୋଲି ।

ଥରେ ସେଇ କୋର୍ଟ କେସ୍ ର ଅଳ୍ପ କିଛିଦିନ ଆଗରୁ, ବାପାଙ୍କ ପିଇବା ବଢ଼ିଯାଇଥାଏ । ଦିନେ ସକାଳୁ ଜଳଖିଆ ଟେବୁଲରେ ବସିଥାନ୍ତି, ତାଙ୍କ ମୁଣ୍ଡ ବିନ୍ଧୁଥାଏ ବୋଲି ପଛରେ ଠିଆହୋଇ ମା ମୁଣ୍ଡ ଘଷିଦେଉଥାଏ । ତାଙ୍କ ଧାରୁଆ ତାଚ୍ଛଲ୍ୟ ଟିକିଏ ସ୍ୱରରେ ମିଶାଇ ସେ କହିଲେ, 'ପୁରୁଷ କେବେ ବି ମୋନୋଗାମସ୍ ନୁହେଁ ଲିସା । ପୁରୁଷ ପଶୁକୁ ଲକ୍ଷ୍ୟ କରିଚ କେବେ ? ଆଜୀବନ ଜୀବନକୁ ପାଣି ଛଡ଼େଇ ଅନ୍ୟ ପୁରୁଷ ସଙ୍ଗେ ଲଢ଼ିଥାଏ ସେ, ଗୋଷ୍ଠୀର ସମସ୍ତ ନାରୀଙ୍କ ସହ ରମଣର ଅଧିକାର ଲାଗି ।'

ମା ସେମିତି ତାଙ୍କ କପାଳ ଘଷି ଦେଉ ଦେଉ କହିଲା, 'ମାଈ ପଶୁ ବି ମୋନୋଗାମସ୍ ନୁହେଁ ଡାର୍ଲିଂ । ଯେତେବେଳେ ଯେଉଁ ପୁରୁଷ ତାକୁ ପସନ୍ଦ ହେଲା ବାଛିବାର ଅଧିକାର ତାର ଥାଏ । ଆମ ମଣିଷ ସମାଜରେ ସିନା ଏତେକଥା ।'

ବାପା ଭର୍ତ୍ତି ପାଟିରେ ଯୁକ୍ତି ବାଢ଼ିଲେ, 'ସବୁ ବୁଦ୍ଧିମାନ ପ୍ରଜାତିର ପଶୁ ଗୋଷ୍ଠୀ ଭିତରେ ପୁରୁଷ ପାଇଁ ଅଧିକ ସଂଖ୍ୟକ ନାରୀଙ୍କ ବିଜୟ ହିଁ ଜୀବନର ଶ୍ରେଷ୍ଠ ଉଦ୍ଦେଶ୍ୟ ହୋଇଥାଏ, ଏକଥା ସତ ନୁହେଁ ?'

ନିଜେ ଖାଇବାକୁ ବସିପଡ଼ି ହସି ହସି ମା କହିଥିଲେ, 'ଏକେବାର ସତ । ତେବେ ମୋର ବୁଦ୍ଧିଜୀବି ପତିଦେବ ! ପଶୁ ନା ବାହାହୁଏ, ନା ଡାଇଭୋର୍ସ ଲାଗି କୋର୍ଟ କୁ ଯାଏ । ନା ପରିବାର ଭାଙ୍ଗିଗଲେ ମୁଣ୍ଡ କୋଡ଼ି କାନ୍ଦେ ।'

ମା କୁ ଜଣାଥିଲା, ବାପା ମୁଣ୍ଡକୋଡ଼ି କାନ୍ଦିବେ । ବିବାହ ବିଚ୍ଛେଦ ଏଡ଼େ ସହଜ ହେବନାହିଁ ତାଙ୍କ ଲାଗି । ସେଥିପାଇଁ ଏତେଦିନ ଧରି ତାଙ୍କୁ ସହିଥିଲା ବିଚାରୀ । ହେଲେ ସେ ଖାଲି ଘରେ , ବାପା ନଥିଲା ଘରେ, ଏଲି ଆଉ ବବି ଯେତେବେଳେ ବୁଝିଲେ ବାପା ବିନା ରହିବା ଏଥର କିଭଳି ହେବ, ଭୟ ଉଦ୍‌ବେଗରେ ଛାନିଆଁ ହେଇପଡ଼ିଲେ । ପ୍ରଥମେ ମାଆ ସଙ୍ଗେ ତାଙ୍କର କୋର୍ଟ କେସ୍‌ରେ ଜିତାପଟ ହେଲା ବୋଲି ବନ୍ଧୁ ସମବ୍ୟଥୀଙ୍କ ସାଙ୍ଗେ ମାତିଥିଲେ ସିନା, ସବୁ ଝାମେଲା ସରିଗଲା ବେଳକୁ ସବୁ ଶୂନ୍‌ଶାନ୍ ଲାଗୁଥିଲା । ଚଉଦ ବର୍ଷର ବବି ମାଆର ଗୋଡ଼ପାଖେ ଚଟାଣରେ ବସି ଅଳି

କରିଥିଲା, 'ବାପାଙ୍କୁ ଡାକି ଫେରେଇ ଆଣିବା ଚାଲ ମା । ସରି ବୋଲି କହିବୁ ମୁଁ ଆଉ ଏଲି । ଏକୁଟିଆ ରହିବା କେମିତି ଆମେ ?'

ଏଲି କାନ୍ଦିଥିଲା, 'ବାପା କେମିତି ଏଥର ଏକୁଟିଆ ରହିବେ ମା ? ସିଏ କ'ଣ ଖୁସିରେ ରହିପାରିବେ ?'

ମା ଅନ୍ୟମନସ୍କ ହେଇ ଅନେକ ସମୟ ବସିରହିଲେ । ପଚାରିଲେ, 'ତମେମାନେ ବାପାଙ୍କ ସଙ୍ଗେ ରହିବାକୁ ଚାହୁଁଚ ଯଦି, ତେବେ ନିଷ୍ଠୟ କର, ଭାବିଚିନ୍ତି । ସେଇଆ କରିବା । କାଲି ସକାଳୁ ତମେ ଦିହେଁ ତାଙ୍କୁ ଫୋନ୍ କରି ସେଇଆ କହ, ଯେ ତମେ ତାଙ୍କ ସଙ୍ଗେ ରହିବାକୁ ଚାହୁଁଚ ।' ମାଆଙ୍କ ହାବଭାବରେ କିଛି ଥିଲା, ଏଲି ବବି ବ୍ୟସ୍ତ ହେଇପଡ଼ିଥିଲେ । ବାପା ଆଉ ମା ଦୁହିଁଙ୍କ ଭିତରୁ ଜଣଙ୍କ ସାଙ୍ଗେ ରହିବା ହିଁ ଯଦି ନିର୍ଣ୍ଣୟ ନିଆଯାଏ, ତେବେ ମାଆ ସଙ୍ଗେ ରହିବା ଦୁହିଁଙ୍କ ଲାଗି ନିଷ୍ଠିତ ଥିଲା ।

ବର୍ଷ କେଇଟାରେ ପୁଣି କେତେ କଥା ବଦଳିଗଲା । ଏଲି ଆଉ ବବି କଲେଜରେ ଗୋଡ଼ ଦେଲେ, ଆଉ ଦେଖୁ ଦେଖୁ ପିଲାଦିନର ଘରୁ, ମାଆର ଜୀବନରୁ ବାହାରିଗଲେ । ମାଆ ପୁରୁଣା ଘରଟିରେ ନିତାନ୍ତ ଏକୁଟିଆ ହେଇଗଲେ କିଛିଦିନ । ହେଲେ ଭାଙ୍ଗି ପଡ଼ିବା ମଣିଷ ନଥିଲେ ସେ କେବେବି । କାହା ଭରସାରେ ସବୁଦିନେ ରହିବା ଲୋକ ବି ନୁହେଁ । ପୁରୁଣା ଘର ବିକିଦେଇ ସହରତଳି ନୂଆ କଲୋନୀରେ ସୁନ୍ଦର ଘରଟିଏ କିଣିଚନ୍ତି ସେ । ନୂଆ ଘରେ ଜୀବନ ସଜାଡ଼ି ନେଇଚନ୍ତି, ନିଜ ସୁବିଧାମତେ ।

॥୮॥

ପରଦିନ ମେଡ଼ିକାଲ କଲେଜ ଓ ଡାକ୍ତର ପଟ୍ଟନାୟକଙ୍କ ଘରେ କଟିଲା । ଉପରଓଳି ଏଞ୍ଜେଲ୍ ପ୍ୟାଟ୍ରିକ୍ କୁ ହୀରାକୁଦ ଡ୍ୟାମ ଦେଖାଇବେ ବୋଲି ସ୍ୱାମୀ ସ୍ତ୍ରୀ ଦିହେଁ ବାହାରିଲେ । ସାଙ୍ଗରେ ସୁମନ୍ତ ବୋଲି ଗୋଟିଏ ସ୍ୱେଚ୍ଛାସେବୀ ସଂସ୍ଥାର ଜଣେ କର୍ମକର୍ତ୍ତା ଓ କୁଷ୍ଠରୋଗୀ ଗବେଷକ । ଡାକ୍ତର ପଟ୍ଟନାୟକ ପରିଚୟ କରାଇଦେଇ ଏଲିକୁ କହିଲେ, 'ଆପଣ ଯେଉଁଭଳି ଗାଁ ଗଣ୍ଡା କି ଲୋକ ଦେଖିବାକୁ ଚାହିଁବେ, ସୁମନ୍ତକୁ କହିଦେବେ ବାସ୍ । ନିଜ ହାତ ପାପୁଲି ଭଳି ଜାଣେ ସେ ଏ ସମସ୍ତ ଅଞ୍ଚଳକୁ ।'

ଡ୍ୟାମ୍ ଉପରକୁ ଯାଉ ଯାଉ କେତେକଥା ଏଲିର ମନକୁ ଆସିଗଲା ଆପଣା ଛାଏଁ, ଯାହା ସେ ଏଯାଏ ଜାଣିନଥିଲା ତା ମୁଣ୍ଡ ଭିତରେ ସାଇତା ଅଛି ବୋଲି । ଆଉ କେଉଁ ଜନ୍ମର କଥା ଭଳି ।

ବନ୍ଧ ଉପର ଓସାରିଆ ରାସ୍ତାରେ ଠିଆ ହେଇ ତଳେ ଡ୍ୟାମ୍ ଗେଟ୍‌ରୁ ପଡୁଥିବା ଜଳପ୍ରପାତ ପରି ଗର୍ଜନରେ ଅଜାଡ଼ି ପଡୁଥିବା ଧଳାଫେଣର ମେଘକୁ ଅନେଇ ଏଲି କହିଲା, 'ଏଠିକାର ଫଟୋ ଅଛି ମୋ ପାଖେ, ପିଲାଦିନେ ଉଠେଇଥିଲୁ ।'

ଡ. ପଟ୍ଟନାୟକ ହଠାତ୍ ହସିଉଠି କହିଲେ, 'କେଡ଼େ ଆଶ୍ଚର୍ଯ୍ୟ କଥା ଦେଖନ୍ତୁ, କିଛି ଲୋକଙ୍କ ଭିତରେ ଗୁଜବ ହେଇଯାଇଥିଲା ଯେ ଡ. ବିଧୁ ନାୟକଙ୍କ ପୁରା ପରିବାର ବିଦେଶରେ କାର୍ ଏକ୍ସିଡେଣ୍ଟରେ ମରିଯାଇଚନ୍ତି । ସେଇଠୁ କାଳେ ଡ. ନାୟକ ଭାରତ ଫେରିଆସିଲେ । ପ୍ଲିଜ୍, ମୋତେ ଖରାପ ଭାବନ୍ତୁନି, ହେଲେ ଏ ଗୁଜବ ଅତ୍ୟନ୍ତ ଲୋକପ୍ରିୟ ଥିଲା, ଡା. ନାୟକ ଯେତେବେଳେ କୁଳପତି ଥିଲେ ।'

ଏଲି ଅବାକ୍ ହେଲା । 'ବିଚିତ୍ର କଥା । କିଏ ଖେଳେଇଲା ଏମିତି ଗୁଜବ ?'

'ଏକୁଟିଆ ଦେଶକୁ ଫେରିଥିଲେ ତ । ଟିକିଏ ଡିପ୍ରେସିଭ ବି ଜଣାଯାଉଥିଲେ ବେଳେ ବେଳେ । ସେଇଥିରୁ...'

ଡ୍ୟାମର ଆରମୁଣ୍ଡରେ ମୀନାର ଠିଆ । ତଳକୁ ଓହ୍ଲେଇଗଲେ ଦ୍ୱୀପ, ବଗିଚା । ଏକୁଟିଆ ପାଇ ଶ୍ରୀମତୀ ପଟ୍ଟନାୟକ କହିଲେ, 'କଥାଟିଏ ଆପଣଙ୍କୁ କହିବି କି ନାହିଁ ବୋଲି ଭାବୁଥିଲି । ଜାଣନ୍ତି, ନିଜେ ଡ. ନାୟକ ସୃଷ୍ଟିକର୍ତ୍ତା ଥିଲେ ସେଇ ଗୁଜବର । ଥରେ ଗୋଟିଏ ଭୋଜିରେ, ମୁଁ ଆଉ ମୋ ସ୍ୱାମୀ ବି ଥିଲୁ, ବେଶି ପିଇଦେଇ ଡ. ନାୟକ ଭୋ ଭୋ ହୋଇ କାନ୍ଦି ପକେଇଲେ । କହିଲେ, ମୋର କେହି ନାହାନ୍ତି, ଅନାଥ କରି ଚାଲିଯାଇଚନ୍ତି ସମସ୍ତେ । ଜଣେ କିଏ ପଚାରିଲା, ଆପଣଙ୍କ ପରିବାର ତ ଅଛନ୍ତି ବିଲାତରେ, ପିଲାଏ ପାଠ ପଢ଼ୁଚନ୍ତି ବୋଲି ଆସିପାରୁନାହାନ୍ତି କାଳେ । ସେ ସେମିତି ଭୋ ଭୋ କାନ୍ଦି କହିଲେ, ନାଇଁ, ସଡ଼କ ଦୁର୍ଘଟଣାରେ ସମସ୍ତେ ମରିଯାଇଚନ୍ତି, ମୋ ସ୍ତ୍ରୀ ଆଉ ପୁଅ ଝିଅ । ମୋର କେହି ନାହାନ୍ତି ।'

ଫେରି ଆସିବା ଯାକେ ଏଲି ଚୁପ୍ ରହିଲା, ଆଉ ପ୍ରଶ୍ନ କରିବା ଲାଗି ତାର ସାହସ କୁଳେଇଲା ନାହିଁ । କିଛି ବୋଧେ ପଚାରିବା ଲୋଡ଼ା ନାହିଁ । ପୈତୃକ ଭୂଇଁରେ ପାଦ ଦେବାକ୍ଷଣି ତା ବାପାଙ୍କ ସହିତ ଜଡ଼ିତ କଥାମାନ ଆପେ ଆପେ ପାଣିଧାର ପରି ବହିଆସୁଚି ତା ପାଖକୁ । କିଏ ଜାଣେ କେତେ କଥା ଥିବ ଏଠି ପାଖେଆଖେ ସବୁଠି, ତା ପାଖ ଦେଇ ଯାଉଥିବ ଆଉ ଏଲି ଚିହ୍ନି ପାରୁନଥିବ । ତା ବାପାର ହାତ ବାଜିଥିବା କଥାମାନ, ଛୁଇଁଥିବା କାହିଁ କେତେ ଘଟଣା ଥିବ ନିଶ୍ଚେ ଏଠି ଚାରିପାଖେ । ଯେଉଁ ସବୁ ଲୋକଙ୍କ ପାଖେ ତାଙ୍କର ସ୍ମୃତି ରହିଥିବ, ଭିନ୍ନ ଭିନ୍ନ ପ୍ରକାର ସ୍ମୃତିଚିତ୍ର, କିଏ ଟିକିଏ ଭାଗଦେବ ଏଲିକୁ, କିଏବା ନାହିଁ । କିଏ ବା ତାକୁ ଦେଖି ନିଜ ଭିତରେ ଥିବା ସ୍ମୃତିକୁ ଖାଲି ପୋଛି ପାଛି ଦର୍ପଣ ପରି ଦେଖିନେଉଥିବେ ନିଜ ଅତୀତକୁ, ଭାନୁ ପିଇସୀଙ୍କ ପରି ।

ଶ୍ରୀମତୀ ପଟ୍ଟନାୟକ କେତେ ଆହୁ କେତେ କଥା କହୁଥିଲେ, ଗପର ଅସରନ୍ତି ଭଣ୍ଡାର ସେ । ତାଙ୍କ ସ୍ୱାମୀଙ୍କଠୁ ବେଶୀ ଚାଲାକ ଚତୁର । ଏଲି ଲାଗି ତାଙ୍କର ନାହିଁ ନଥିବା ଆପଣାପଣ । ରାତିରେ ନିଜ ହାତ ରନ୍ଧା ଖୁଆଇ ନିଜେ ଗାଡ଼ି ଚଳେଇ ଗେଷ୍ଟ ହାଉସକୁ ଛାଡ଼ିବାକୁ ଆସିଲେ । ରୁମ୍‌ରେ ସବୁ ସୁବିଧା ଅଛି କି ନାହିଁ ପରଖ କଲେ । ରୋଷେୟାକୁ ଡକେଇ ପଚରା ଉଚରା କଲେ କଣ ସବୁ କେମିତି ରନ୍ଧାବଢ଼ା ଯିବା କଥା, ଡ. ପ୍ୟାଟ୍ରିକଙ୍କର ଟିକିଏ ହେଲେ ଯେମିତି ଅସୁବିଧା ନହୁଏ ।

ଗଲାବେଳେ କାର ଝରକାରୁ ହାତ ହଲେଇ କହିଲେ, 'ଯେତେବେଳେ ଯାହା ଦରକାର ହେବ ନିଃସଂକୋଚରେ କହିବେ । ଫୋନ୍ ନମ୍ବର ତ ଅଛି ।' ପିଲାଦିନେ ଏ ଅଞ୍ଚଳରେ କୌଣସି ସ୍ତ୍ରୀ ଗାଡ଼ି ଚଳେଇବାର ମନେପଡୁନି ଏଲିର । ସତରେ ହେଉ ବା ମା ଦେଇଥିବା ଧାରଣରୁ ହେଉ, ଏ ଅଞ୍ଚଳ ଟି ଗୋଟିଏ ନିତାନ୍ତ ପଛୁଆ ଅନ୍ଧାରୁଆ ନିପଟ ଅଶିକ୍ଷିତ ଦରିଦ୍ର ଅଞ୍ଚଳ ବୋଲି ଏଲିର ଧାରଣା ଥିଲା । ତା ସହିତ ବାପାଙ୍କଠୁ ତ ତାଙ୍କ ପିଲାଦିନ ବିଷୟରେ, ପରିବାର ବିଷୟରେ ନାନା କାହାଣୀ ଶୁଣି ଶୁଣି, ଅଜବ ଗୋଟିଏ ମାୟା ବି ଥିଲା ଏ ଜାଗାଟା ପ୍ରତି । ବାପାଙ୍କ ଠୁ ଅଲଗା ହେଇଗଲାପରେ ସେଇ ମାୟା କଦବା କେବେ ଆସି ଘେରି ପକାଏ ଦୋଷୀ ଭାବରେ । ସତେକି କିଏ ତା ଲାଗି ଏଇ ସହରରେ, ପୁରୁଣା ଦମ୍ପିଲା କମଳା ନିଳୟରେ ଅପେକ୍ଷା କରି ରହିଚି ।

ଏକୁଟିଆ ଗେଷ୍ଟହାଉସ୍‌ରେ ଜିନିଷ ପତ୍ର ରଖୁ ରଖୁ ଈଶ୍ୱରନ୍ ମନେ ପଡ଼ିଲା । ଭାରତ ପ୍ରତି ସେଇ ମାୟା, ସେଇ ଅକାରଣ ଦୋଷୀ ଭାବ ଯୋଗୁଁ ବୋଧେ ତାର ଈଶ୍ୱରନ୍ ସାଙ୍ଗେ ବନ୍ଧୁତା ହେଇଥିଲା । ନଚେତ୍ କ'ଣ ବା କାରଣ ଥିଲା ଏତେ ଦେଶର ସାଙ୍ଗ ସାଥୀ ଥାଉ ଥାଉ ସେଇ ଦକ୍ଷିଣ ଭାରତୀୟ ଶାନ୍ତ ଚେହେରାର ଯୁବକଟି ସହିତ ଏଲିର ସଂପର୍କ ଘନେଇ ଯିବାର ।

ସନ୍ଧ୍ୟା ବଢ଼ି ଆସିଲାଣି ରାତିକୁ । ଲାଇଟ୍ ଚାଲିଯାଇଚି, ବିନା ପଙ୍ଖାରେ ଶୋଇବା କଷ୍ଟ । ଉଠିଆସି ପୁଣି ଏଲି ଗେଷ୍ଟହାଉସ୍ ବାରଣ୍ଡାଟିରେ ବସିଲା । ଅଳ୍ପ ଦୂରରେ କାନ୍ଥ ପରି ଠିଆ ହେଇଚି ପାହାଡ଼ଟିଏ, ଆକାଶର ଅଧେକୁ ଆବୋରି । ଶାନ୍ତ କ୍ୟାମ୍ପସ୍‌ଟି ଶୋଇପଡ଼ିଲାଣି ପ୍ରାୟ । ଅଧା ଜହ୍ନଟିଏ ଆକାଶରେ । ଜହ୍ନ ଆଲୁଅ କେବେ ଏତେ ସ୍ପଷ୍ଟ ଦିଶିଥିବାର ମନେ ପଡୁନାହିଁ ଏଲିର । ସେଠି ତା ଦେଶରେ ମଣିଷ ତିଆରି ଆଲୁଅ ନଥାଇ ରାତି ଆସେନାହିଁ । ନିରୋଳା ଜହ୍ନ ଆଲୁଅ ଦିଶିଲେ ଦିଶେ କେବଳ ପୁରୁଣା ରୋମାଣ୍ଟିକ୍ ସିନେମାରେ । ପିଲାଦିନେ କମଳା ନିଳୟର ଛାତରେ ଶୋଇଚି ସିଏ, ଖରାଦିନେ । ପରିଷ୍କାର ମନେ ନାହିଁ । ତେବେ ଥରେ ଥରେ ନିଦ ଆସୁନଥିବା ଆଖିତଳେ ଦିଶେ ସେଇ ଆକାଶଟି, ଆଦିଅନ୍ତ ନଥିବା କଳା ବିସ୍ତାର ସାରା ଟିକି ଟିକି ଟିକି ଟିକି ତାରା । ଆଜିର ଏଇଭଳି ।

ଈଶ୍ୱରନ୍ କୁ ଏଲି ମନ ଭିତରକୁ ଆସିବାକୁ ବାରଣ କଲାନାହିଁ, ଅନେକ ଦିନ ପରେ । ସତେକି ଘଟଣାରୁ ଏତେ ଦୂରରେ, ଏ ନୂଆ ପରିବେଶରେ ସେ ସ୍ମୃତିରେ ଆଉ କିଛି ଡରିବାର ନାହିଁ । ଈଶ୍ୱରନ୍ ଠାରୁ ସେ ଶୁଣିଥିଲା ତା ଗାଁ କଥା, ତା ସ୍କୁଲ ମାଷ୍ଟର ବାପା କଥା, ତାର ଅଭାବ ସଂଘର୍ଷର ଦିନ ପୁଣି ସ୍କୁଲ କଲେଜର ଦିନ ପାରିହୋଇ ଶେଷରେ ବୃତ୍ତି ପାଇ ଯାଇ ବିଲାତରେ ପହଞ୍ଚିବା କଥା । ଏଲିର ମନେ ହେଇଥିଲା ଏଇ ହେଉଚି ସିଏ, ବାପାଙ୍କ ମନରେ ଯେଉଁ ଚିତ୍ରଟି ଥିଲା ଏଲି ର ସ୍ୱାମୀ ହେବ ବୋଲି ।

ଦିନ ଗଡ଼ାଗଲା ଈଶ୍ୱରନ୍ । ସାଥୀହେଇ ରହିଲେ ଦିହେଁ ତିନି ବର୍ଷ, କିନ୍ତୁ ବାହା ଦିନ ଗଡେଇଲା ଆଉ ବର୍ଷେ ଆଉ ଛଅମାସ, ପ୍ଲିଜ୍ ପ୍ଲିଜ୍ କହି କହି । ଏଲି ଟିକିଏ କଡ଼ା କଥା କହିଲା କ୍ଷଣି

ଅବାରିତ ଅଶ୍ରୁଧାରା ବୁହାଇ । ଶେଷ ପର୍ଯ୍ୟନ୍ତ ବିବାହର ନିଷ୍ପତ୍ତିଟି ନେବା ତା ଦେଇ ହେଇପାରିଲା ନାହିଁ । ପାଠ ସାରି ଇଣ୍ଡିଆକୁ ଯାଇଥିଲା, ତାର କେରଳ ଗାଁରୁ ଲେଖିଲା, ବାପା ମାଆଙ୍କ ମନରେ ଏତେ ଦୁଃଖ ଦେଇ ସେ କେବେହେଲେ ସୁଖୀ ହେଇପାରିବ ନାହିଁ । ଅଧା ଇଂରେଜ, ଖ୍ରୀଷ୍ଟିଆନ୍ ଝିଅ କଥା ଶୁଣି ତା ମା ଅଚେତ ହୋଇ ପଡ଼ିଲେ । ଘରେ ସେ ଦିନ ରୋଷେଇ ବାସ ବନ୍ଦ ହୋଇଗଲା । କ୍ଷମା ମାଗିଥିଲା ସେ ଏଲିକୁ, ଯା ବି ଲେଖିଥିଲା ଯେ କ୍ଷମା ନ ପାଇଲେ ସେ ଏଲିର ଅଭିଶାପ ମୁଣ୍ଡପାତି ଘେନିନେବ । ନିଜ କର୍ମଫଳ ଭୋଗିବ ଯେଉଁ ରୂପରେ ଆସୁ । କିନ୍ତୁ ମାତୃପିତୃଘାତୀ ହୋଇପାରିବନି ।

ଏତେଦିନ ପରେ ବି ହାହାକାର ଉଠୁଛି ଛାତି ଭିତରୁ, ମୁହୂର୍ତ୍ତେ ସେ ଘଟଣା ମନକୁ ଆସିଲା କ୍ଷଣି ବର୍ତ୍ତମାନ ଉଭେଇ ଯାଇ ଟାଣି ହେଇଯାଉଚି ସେ ଅତର୍କିତ କେଉଁ ଅନ୍ଧାରୁଆ ଭଉଁରୀ ଭିତରକୁ । ଏଲି ଭୁଲ୍ ବୁଝିଥିଲା, ଯେ ସେ ନିଜ ବାପାଙ୍କୁ, ତାଙ୍କ ସଂସ୍କାରକୁ ବୁଝିଚି ବୋଲି । ମାଆର ଚିନ୍ତ୍ରତାକୁ କ୍ଷୋଭକୁ ସେ ପୁରାପୁରି ହୃଦୟଙ୍ଗମ କେବେ କରି ପାରିନଥିଲା । ତେଣୁ ଧରିନେଇଥିଲା ଯେ ବାପାଙ୍କ ସଂସ୍କୃତି ତାର ଅସ୍ଥି ମଜ୍ଜାରେ ଅଛି, ପିଲାଦିନୁ ବାପାଙ୍କ ସାଥିରେ ରହି ତାଙ୍କ ପରମ୍ପରା ଭାବଧାରାକୁ ମିଶେଇସାରିଚି ନିଜ ରକ୍ତରେ ବୋଲି । ଈଶ୍ୱରନ୍ ତା ଜୀବନରୁ ଚାଲିଯିବା ପରେ ଏଲି ବୁଝିଲା, ଯେ ସେ କେବେହେଲେ ଆପଣେଇ ପାରିବନି ବାପାଙ୍କର ସଂସ୍କୃତିକୁ । ଯାବତ୍ ଜୀବନ କ୍ଷମା କରିପାରିବନି ଈଶ୍ୱରନ୍ କୁ, ତା ବାପା ମାଙ୍କୁ ।

ବାପା ତା ପରିବାରରୁ ବାହାରି ଯିବାପରେ ବି ଏଲି ପୁଅ ସାଙ୍ଗଙ୍କ ସାଙ୍ଗେ ଖୁସି ମନରେ ଡେଟିଂ କରିପାରୁନଥିଲା । ଶରୀର ସମ୍ବନ୍ଧ ବିନା ସର୍ତ୍ତରେ ଯୋଡ଼ିଦେବାକୁ ମନ ନାହିଁ କରୁଥିଲା ସବୁଦିନେ । ଈଶ୍ୱରନ୍ ନିଆରା ଥିଲା । ସେ ଡେଟିଂ କରେ ନାହିଁ, ସପ୍ତାହାନ୍ତ ଦି'ଦିନ ଲାଇବ୍ରେରୀରେ କଟାଏ । ଦେଖାହେଲେ ସମ୍ଭ୍ରମରେ କଥା ହୁଏ । ତାର ଥଟ୍ଟା ଜୋକ୍‌ରେ, ପ୍ରେମ ନିବେଦନରେ ବି ଥାଏ ଏକ ସମ୍ଭ୍ରମର ଭାବ । ବାପା ନିଶ୍ଚେ ପସନ୍ଦ କରିଥାନ୍ତେ ତାଙ୍କୁ, ବାଛିଥାନ୍ତେ ଏଲିଲାଗି । ଭଲ ହେଲା ବାପା ଜାଣିଲେନାହିଁ ଶେଷ ପର୍ଯ୍ୟନ୍ତ । ଯଦି ଜାଣିଥାନ୍ତେ, ଏଲି ବିନା ବିବାହରେ ତା ସଙ୍ଗେ ତିନିବର୍ଷ କଟାଇଚି ବୋଲି ?

ଭାନୁ ପିଉସୀ ଙ୍କୁ ଜଣାଅଛି କି, ଯେ ବିଦେଶରେ ଏ ବ୍ୟବସ୍ଥା ବି ଅଛି । ଏଠି ଆଜିକାଲି କି ଧାରଣା ବିଲାତୀ ଝିଅଙ୍କ ବିଷୟରେ କେଜାଣି । ସିନେମା ଟିଭିରୁ ଭାରତୀୟ ଜୀବନ ଚିତ୍ର ଆଙ୍କିବା କଷ୍ଟକର । ଏଲିର ଜଣାଶୁଣାରେ କେତେ ଭାରତୀୟ ଓ ବିଦେଶୀ ଲୋକଙ୍କ ଭିତରେ ବାହାସାହା ହେଉଛି ଆଜିକାଲି । ତଥାପି ଈଶ୍ୱରନ୍ ବି ତ ଆଧୁନିକ ଭାରତୀୟ ଟିଏ । ନିଜେ ଏଙ୍ଗ୍ଲୋଇ ଫାଟ୍ରିକ୍ ବି କାହୁଁ ବିଲାତୀ ହେଇପାରିଲା, ଅଧା ଭାରତୀୟ ହେଇରହିଯାଇଚି ସିଏ ବି ।

ଏତେ ନିଶ୍ଚୁପ୍ ଗେଷ୍ଟ ହାଉସ୍ ଟିକୁ ଘେରିଚି ଯେ ଆଜ କେଉଁ ଗ୍ରହରେ ବସିଥିଲା ପରି ଲାଗୁଚି । ଦୂର ସଡ଼କରେ କାଁ ଭାଁ ଟ୍ରକ୍ ହର୍ଣ୍ଣ ଶୁଭୁଚି, ଯାହାକୁ ଛାଡ଼ି ବୋଧେ ଭାରତୀୟ ଗଗନ

ପବନର ସ୍ଥିତି ଅସମ୍ଭବ । ଲାଇଟ୍ ଆସିନାହିଁ ଏ ଯାଏ । ଝିଙ୍କାରୀ ଶବ୍ଦ ପାଖ ବୁଦା ଗହଳରୁ । ଗାଢ଼ ଅନ୍ଧାରରେ ଅଦୂର ପାହାଡ଼ ତଳ ମିଞ୍ଜି ମିଞ୍ଜି ବତୀ ଆଲୁଅ କେଉଁ ଗାଁର, ଏତେ ଚୁପ୍‌ଚାପ୍ ଯେ ସାନ ପିଲାଟିଏର କାନ୍ଦଣା ଭାସିଆସୁଚି ଏଠିକି ଯାଏଁ ।

ଆସିଲା ଦିନ କଲିକତାରେ ପ୍ଲେନ୍ ମାଟି ଛୁଇଁଲା ବେଳେ ଏଲିକୁ ଲାଗୁଥିଲା, ଯେତେଦିନରୁ ଛାଡ଼ିଦେଇଥାଉ, ତାର ଆପଣାର ଲୋକେ ଅଛନ୍ତି ଏଇ ଦେଶରେ । ବାପା କହିଥିଲେ, ଆମ ମାଟି, ଆମ ପରମ୍ପରା ଏମିତି ଯେ, ଏଠି ଲୋକଙ୍କ ଭିତରେ କେବେ ସମ୍ପର୍କ କଟିଯାଏ ନାହିଁ, ସମାଜରେ ଥରଟିଏ ନିର୍ଦ୍ଧାରିତ ହୋଇଥିବା ସମ୍ପର୍କ କେବେହେଲେ ରଦ୍ଦ ହୁଏନାହିଁ ଏଠି । ବାପା ବି ହୁଏତ ଜାଣିନଥିଲେ, ସମସ୍ତେ ଥାଇ ବି ସେ ନିଜେ ଏକୁଟିଆ ହେଇଯିବେ ବୋଲି ।

॥୯॥

ଗତ ତିନିଚାରିଦିନ ହେଲା ଏଇ ଗତ ପଡ଼ିଚି ଏଲିର । ଆଖପାଖର କୁଷ୍ଠ ବସ୍ତି ମାନଙ୍କୁ ଯାଇ ଦେଖିବା । ଆଜି ଅଧାଦିନ ସେ କଟାଇଚି କଣ୍ଟାପାଲି ପାଖ ପାହାଡ଼ ଟାପୁ ଦେହରେ ଥିବା କୁଷ୍ଠ ବସ୍ତିରେ । ଛୋଟିଆ ବିଚ୍ଛିନ୍ନ ଉପଗ୍ରହଟିଏ ଭଳି ସେମାନଙ୍କର ଜୀବନ । ରୋଗରୁ ମୁକ୍ତି ପାଇ ବି ରୋଗ ଛାଡ଼ିଯାଇଥିବା ପାଦଚିହ୍ନ ଲାଗି ସେମାନେ ଏବେବି ପୁଣିଥରେ ସମାଜକୁ ଫେରିପାରୁନାହାନ୍ତି । ତାଙ୍କରି ଭିତରେ ଭାଇବନ୍ଧୁ କୁଟୁମ୍ବ ସଜାଡ଼ି ମନମନେଇ ନେଇଚନ୍ତି ସେମାନେ । ଆଦରି ନେଇଚନ୍ତି କପାଳ ଲିଖନ ।

ସଞ୍ଜବେଳେ ପ୍ରଫେସର ପଣ୍ଡା ଆସି ପହଞ୍ଚିଲେ, ପରିଚୟ ଦେଇଥିଲେ ବି ଏଲି ବିଶେଷ କାହାରିକୁ ଗେଷ୍ଟହାଉସକୁ ଆସି ବନ୍ଧୁତା କରିବାକୁ ଦେଇନି । ଏଠା ଲୋକଙ୍କ ମନୋବୃତ୍ତି ବିଷୟରେ ତାର ମୋଟାମୋଟି ଧାରଣାଟିଏ ରହିଛି । ଗୁଜବଟିଏ ଉଠିବାକୁ ବେଳଲାଗେ ନାହିଁ ଏଠି । ଅସରନ୍ତି ସମୟ ଥିବା ଏ ସମାଜକୁ ନୂଆ ଗୁଜବଟିଏ ଅରୁଚି ପାଟିକୁ ଆଚାର ପରି କାମଦିଏ । ସମୟ କଟିଯାଏ । ହେଲେ ଏଲି ଏଠାକୁ ଆସୁ ଆସୁ ଯଦି ଲୋକେ ଏଣୁତେଣୁ ଗୁଜବ ଶୁଣନ୍ତି, ତାର କାମ କରିବା ଅସମ୍ଭବ ହେବ ।

ପଣ୍ଡାବାବୁ ସେତେବେଳୁ ଜମିକରି ବସିଚନ୍ତି । ଚା'ଖିଆ ସରିଲାଣି କେତେବେଳୁ । ବାରଣ୍ଡାରେ ଅନ୍ଧାର ଛାଇ ଆସୁଚି, ମଶା କାମୁଡିଲେଣି । ଏଲି ଭାବୁଚି ଏଥର ନିଜେ ଚଉକୀରୁ ଉଠିପଡ଼ି ନମସ୍କାର କରିବ, ଇଙ୍ଗିତ କରିବ ଯାଆନ୍ତୁ ଆପଣ ବୋଲି ।

ପ୍ର. ପଣ୍ଡା କହିଲେ, 'ଏଠି କୁଳପତି ଥିଲେ, ଡ. ନାୟକ । ତାଙ୍କର ପରା ଆପଣ କିଏ ହୁଅନ୍ତି ନା କ'ଣ ? ବହୁତ କାମ କରିଯାଇଥିଲେ ସିଏ, ଏଠା ଲୋକେ ତାଙ୍କୁ ରଖେଇଦେଲେନି ସିନା ।'

ଏକଥା ପ୍ରଥମ କରି ଶୁଣୁଚି ଏଲି ଯେ, ଡ. ନାୟକଙ୍କୁ ଏଠି ଲୋକେ ରଖେଇଦେଲେନି ।

'ରଖେଇ ଦେଲେନି ମାନେ ?'

'ଜାଣି ନାହାନ୍ତି କି ଆପଣ ? ତାଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କରାଗଲା ବୋଲି ?'

ଡରି ଡରି କହିଲା ଏଲି, 'ନା, ଇସ୍ତଫା ଦେଇଥଲେ ବୋଲି ଶୁଣିଥିଲି । କ'ଣ ହୋଇଥିଲା କି ?'

ପଣ୍ଡା ଦୁଃଖ କଲାଭଳି ମୁଣ୍ଡ ହଲାଇଲେ । ଜାଙ୍କେ ଆସୁଥିବା କଥାଟିକୁ ସହିପାରିବନାଇଁ, ଏଲି ଆଗତୁରା କହିପକାଇଲା, 'କଣ କିଛି ଦୁର୍ନୀତି ଅଭିଯୋଗ ତାଙ୍କ ବିରୁଦ୍ଧରେ... ?'

'ନାଇଁ ଆଜ୍ଞା, ପଇସା ପତ୍ର ଜାତୀୟ ଦୁର୍ନୀତି ତ ଜମାରୁ ନଥିଲା ତାଙ୍କର । ତେବେ, ତାଙ୍କର ଯେଉଁ ଦୁର୍ଭାଗ୍ୟଜନକ ଦୁର୍ଗୁଣ କେତୋଟି ଥିଲା । ଆପଣ ବି ଜାଣିଥିବେ ।'

'ନା ମୁଁ ଜାଣିନାଇଁ ।'

'ଜାଣିନଥିବେ ଆଉ ? ୱାଇନ୍ ଆଉ ୱିମେନ୍, ନାରୀ ଓ ନିଶା । ତାଙ୍କୁ ଯିଏ ଜାଣିଚି ସିଏ ଅବଶ୍ୟ ଜାଣିଥିବ ତାଙ୍କର ଏ ଦୁଇଟି ଦୁର୍ବଳତା । ପୁରୁଷର ଅଧପତନର ଆଧାରଭୂତ ଦୁଇ ଦୁର୍ବଳତା ଯାହା ମାନବ ସଭ୍ୟତାର ଆବହମାନ କାଳୁ ରହିଆସିଚି ।'

ଏଲି କେମିଷ୍ଟ୍ରି ପ୍ରଫେସର ପଣ୍ଡାଙ୍କ ଇଂରାଜୀ ଶବ୍ଦଜ୍ଞାନରେ ମୁଗ୍ଧ ହେଲା ସିନା, ତଥାପି କଥାଟି ତାଲାଗି ଅବୋଧ୍ୟ ରହିଲା । ପଚାରିଲା, 'ତାଙ୍କୁ ଇସ୍ତଫା ଦେବାଲାଗି ବାଧ୍ୟ କରାଗଲା ସେଇଥିଲାଗି କେବଳ ?'

'ଆଜ୍ଞା, କେବଳ ସେଇଥିଲାଗି ।'

ଏଲି ନିଜର ଉତ୍ସୁକତାକୁ ମାରିଦେଇ ଉଠିବାକୁ ଯାଉଚି, ପଣ୍ଡା କହିଲେ, 'ଏଠି ସେସବୁ ବହୁତ ବଡ଼ କଥା ବୁଝିଲେ । ମୁଁ ଆମେରିକା ଯାଇଚି, ସେଠି ପଶ୍ଚିମରେ ଏ ସବୁ ବ୍ୟକ୍ତିର ସ୍ୱାଧୀନ ଇଚ୍ଛା ବୋଲି ମାନି ନିଆଯାଏ । ଏଠିକା କଥା ସେମିତି ନୁହେଁ । ଆପଣ ଭାରତରେ ରହିନାହାନ୍ତି, ତେଣୁ ବୁଝିପାରିବେ ନାଇଁ ।'

'ଓ ।'

ପଛେଇ ନଯାଇ ପୁଣି କହିଲେ ସେ, 'ଡ. ନାୟକ ଏଭଳି ଚାଣ୍ଡ ମେଧାସମ୍ପନ୍ନ, ଦୃଢ଼ ନିଶ୍ଚୟ ଥିବା ଲୋକ ଥିଲେ । ବର୍ଷ ଦିଇଟାରେ ୟୁନିଭର୍ସିଟୀର ଯେତେ ଉନ୍ନତି ସେ କରିଗଲେ, ଆରମ୍ଭ ହେବାର ଦଶବର୍ଷରୁ ହେଇନଥିଲା । ଆଉ ବର୍ଷ କେଇଟା ରହିଥିଲେ ସେ ଭାରତର ଶିକ୍ଷା ମାନଚିତ୍ରରେ ସ୍ଥାନ ଦେଇଥାନ୍ତେ ଏ ୟୁନିଭର୍ସିଟୀକୁ । ଏଭଳି ଦୂରଦର୍ଶୀ ଆମ ଏଠିକା ଲୋକ ହେବା ଅସମ୍ଭବ । କଳ୍ପନା କରନ୍ତୁ, କମ୍ପ୍ୟୁଟର କଥା ଏଠା ଲୋକ ଯେତେବେଳେ ଶୁଣିନଥିଲେ, ସେ ଦିଲ୍ଲୀରୁ ଗ୍ରାଣ୍ଟ ଆଣି ଏଠି ଗୋଟିଏ ବିରାଟ ଧରଣର କମ୍ପ୍ୟୁଟର ପ୍ରତିଷ୍ଠା କରିବାର ଯୋଜନା କରିଥିଲେ । ଆଉ ଆଜିର ଏ ଲାଇବ୍ରେରୀ, ଖେଳ ଷ୍ଟାଡିୟମ୍, ସବୁତ ତାଙ୍କରି ଅବଦାନ ।'

ଏଲି ମୁହଁରେ ପ୍ରଶ୍ନଟି ଥାଇବି ରୂପ ପାଇପାରୁଥାଏ, ଯେ କ'ଣ ଏମିତି ଅସୁବିଧା ହେଇଗଲା କାହାର ଯେ ତାଙ୍କୁ ଏଇ ଲୋକେ ପୁଣି ବାହାରିଯିବାକୁ କହିଲେ ।

'ଡ. ନାୟକ ଆସିବା ଆଗରୁ ଏଠି ଏମିତି ଅସାମାଜିକ ଲୋକ ଗୁଡ଼ାଏ ପଶିଯାଇଥିଲେ ଯେ, ନା ପାଠପଢ଼ା ହେଉଥିଲା, ନା ପରୀକ୍ଷା ହେଉଥିଲା ଠିକ୍ ସମୟରେ । ଅନ୍ୟ ଉନ୍ନତିମୂଳକ କାମ ତ ଛାଡ଼ିଦିଅନ୍ତୁ । ଡ. ନାୟକ ଆସିଲା ପରେ ମାସ କେଇଟାରେ ସାବାଡ଼ କରିଦେଲେ ସଭିଙ୍କୁ । ଡିସିପ୍ଲିନ୍ କହିଲେ କ'ଣ ବୁଝାଏ ଏ ପିଲା, ଏଠିକା ମାଷ୍ଟ୍ରେ, ସମସ୍ତେ ପ୍ରଥମକରି ବୁଝିଲେ ଜାଣନ୍ତୁ । କାହିଁଗଲା ସବୁ ଷ୍ଟ୍ରାଇକ୍ ସ୍ଲୋଗାନ୍, ରାଜନୀତି । ସବୁ ଏକାବେଳେ ବନ୍ଦ । ସବୁ ବିଭାଗରେ ଦେଖିବେ ପିଲା ଯାଉଚନ୍ତି କ୍ଲାସକୁ, ମାଷ୍ଟ୍ର କ୍ଲାସ୍ ନେଉଚନ୍ତି । ନହେଲେ ଏବେ ଚାଲୁନାହାନ୍ତି ଦେଖିବେ, ପୁଣି ଯୋଉକଥାକୁ ସେଇ କଥା । ପିଲା ଯାଇ କ୍ୟାଣ୍ଟିନ୍‌ରେ ଗୁଲି କରୁଥିବେ, ନହେଲେ କ୍ୟାମ୍ପସ୍ ବାହାରେ ଥିବେ କୁଆଡ଼େ । ମାଷ୍ଟ୍ରଙ୍କ କଥା ଛାଡ଼ି ଦିଅନ୍ତୁ । କହିଲେ କୁଳ କୁଟୁମ୍ବକୁ ଲାଜ...'

ଓଡ଼ିଆ ଢଗଟି ଇଂରାଜୀରେ ତର୍ଜମା କରିବସିଲେ ପଣ୍ଡା । ଏଲି କହିଲା, 'ବୁଝିଲି । ତେବେ ତାଙ୍କୁ ବାହାର କରିବାଲାଗି ସେଭଳି ଲୋକଙ୍କ ସ୍ୱାର୍ଥ ଥାଇପାରେ, ଏଇଆ କହୁଚନ୍ତି ତ ?'

'ତା ଠିକ୍ । କିଛି ନ୍ୟସ୍ତସ୍ୱାର୍ଥ ଲୋକେ ନିଶ୍ଚିତ ଭାବେ ଲାଗିଥିଲେ ତାଙ୍କ ପଛରେ । ତେବେ ଡ. ନାୟକ ଯଦି ନିଷ୍ଠାପର ନୀତିବାଦି ହେଇଥାଆନ୍ତେ, କିଏ ତାଙ୍କ ଦେହରେ ଟିପ ମାରିପାରିଥାଆନ୍ତା ?'

ଅର୍ଥପୂର୍ଣ୍ଣ ନୀରବତା ପୁଣି ଥରେ । ଏଲିର ଆଉ ଧୈର୍ଯ୍ୟ ରହୁନାହିଁ । କହିଲା, 'ସେ ନୀତିବାନ୍ ନଥିଲେ । ତେଣୁ ତାଙ୍କ ଭଲ କାମକୁ କେହି ଦେଖିଲେ ନାଇଁ ?'

'ନୁହେଁ ତ ଆଉ କ'ଣ ? କେହି ଆଉ ମନେ ରଖିଚନ୍ତି ତାଙ୍କ ଭଲ କାମ ସବୁକୁ ? ପଚାରୁନାହାନ୍ତି, କଥା ପଡ଼ିଲେ ଖାଲି କହିବେ ତାଙ୍କ ଦୋଷ ଦୁର୍ବଳତା କଥା ।'

'ୱାଇନ୍ ଆଉ ୱମେନ୍ ?'

'ଆଜ୍ଞା । ତେବେ କଥାଟା ଯେମିତି ଆପଣ ଭାବୁଚନ୍ତି, ସେମିତି ନୁହଁ ।'

ଏଲି ଏଥର ଠିଆହେଇ ପଡ଼ି ହାତ ଯୋଡ଼ିଲା, 'ନମସ୍କାର । ଭାରୀ ଖୁସୀ ଲାଗିଲା ଆପଣଙ୍କ ସାଙ୍ଗେ କଥାବାର୍ତ୍ତା କରି । ପୁଣି ଦେଖାହେବ ।'

## ॥୧୦॥

ଚପରାଶୀ ମଗନକୁ ଏଲି ଚମକାଇ ଦେଲା ପ୍ରାୟ, ଏଇଆ କହି ଯେ ସେ ଆଜି ରୋଷେଇ କରିବ । ମଗନର ବିଚାରରେ ଭଲ ରୋଷେଇ କହିଲେ ଯାହା ବୁଝାଏ, ସେ ଅନୁଯାୟୀ ଭଲକରି ତେଲ ମସଲା ଲୁଣ ଦେଇ ଭାଜିଭୁଜି ଥୋଇଦିଏ ସେ । ଏଲି ଠିକ୍ କରିଚି ଏଣିକି ନିଜ ଖାଇବା ତିଆରି କରିବ ନିଜେ । ରୁମ୍‌ରେ ଚା' ଓ ଜଳଖିଆ ବନ୍ଦୋବସ୍ତ ସେ କରିସାରିଚି । ରୋଷେଇ ପାଇଁ କିନ୍ତୁ କିଚିନ୍ କୁ ଯିବାକୁ ହେବ ।

ରୋଷେଇ ଘର ପଛପାଖେ ମଗନର ସ୍ତ୍ରୀ ପିଲାଛୁଆ ରହନ୍ତି । ଏଲି ନିଜେ ରାନ୍ଧି ଦେଖାଇ ଦେଉଥିଲା, ମୁଁ ବେଶୀ ମସଲା ଭଲପାଏ ନାହିଁ । ଦେହ ଖରାପ ହୁଏ ।

'ନାୟକ ସାହାବ ବି ଜମା ରାଗ ଖାଇପାରନ୍ତିନି ମାଡାମ୍ । ତାଙ୍କର ତ ପେଟ ଖରାପ ହୁଏ ସହଜେ ।'

'ତମେ ନାୟକ ସାହାବଙ୍କ ପାଖେ କାମ କରିଚ ?'

ମଗନର କାନକୁ ଏଲିର ବଙ୍କା ଉଚ୍ଚାରଣରେ ଭୁଲ୍ ଭାଲ୍ ଓଡ଼ିଆ କହିବା ମଜା ଲାଗେ । ଏଇ ଆଜି ମାତ୍ର ସେ ଶୁଣିଚି ସେ ନାୟକ ସାହାବଙ୍କ ସାହାବେଣୀ ସ୍ତ୍ରୀ ଆଉ଼ର ଝିଅ ବୋଲି । ଦାନ୍ତ ଦେଖାଇ କହିଲା ଖୁସିରେ, 'ଆପଣ ତାଙ୍କର କିଏ ହୁଅନ୍ତି ପରା ?'

ଏଲି ହସିଲା ଜୋରରେ, ପଚାରିଲା, 'କିଏ ସେ କହିଲା ଏକଥା ?'

ମଗନ ମୁଣ୍ଡ କୁଣ୍ଢେଇଲା, 'ମୁଁ ଜାଣେ ଲୋକେ ନିଶ୍ଚେ ବାଜେ କଥା କହୁଥିବେ ।'

'ଏଠା ଲୋକଙ୍କ ଆଉ କାମ କ'ଣ କି ?'

'ତମେ ତାଙ୍କ ପାଖେ କାମ କରୁଥିଲ ?'

'ଯେତେଦିନ କୁଳପତି ଥିଲେ ମୋରି ହାତରନ୍ଧା ଖାଇଚନ୍ତି ।'

'ବଦ୍‌ରାଗୀ ଲୋକ ?'

'କିଏ ? ଆମ ନାୟକ ସାହେବ ? ନାଇଁ ତ ଜମା ନାଇଁ । ଏମିତି ବଢ଼ିଆ ମଣିଷ ଏଠି କେହି ଦେଖିନଥିବେ । ଦିଲଦାର ଲୋକ । ପୁରୁଣା ହେଇନଥିବା ନିଜ ଜାମା, କୋଟ ଦେଇଦେବେ । ଏଠିକା ଲୋକଙ୍କ କଥା କ'ଣ କହିବେ । ଗେଷ୍ଟହାଉସ୍‌କୁ ଆସି ରହିବେ, ହେଲେ ଗଲାବେଳେ ଦିଟଙ୍କା ବକ୍‌ଶିସ୍ ହାତରୁ ବାହାରିବ ନାଇଁ । ଆମ ସାହାବ ଦି'ଶହ ଟଙ୍କା ଦେବେ ବଜାର ସଉଦା ଲାଗି, ହିସାବ ବି ମାଗିବେନି । ପ୍ରତିଦିନ ମାଛ ମାଉଁସ ଆସିବ, ମୋତେ କହିବେ ମଗନ, ତୁ ବି ଖାଆ, ବଳକା ହେଲେ ପିଲାଙ୍କ ପାଇଁ ନେଇଯା ।'

ଏଲି ଭାତରେ ସିଝା ସବୁଜା ଗୋଳେଇ ଖାଉଥିବାର ଦେଖି ମଗନ ତା କଥା ଜାରୀ ରଖିଲା, 'ନାୟକ ସାହବ ବି ଠିକ୍ ଏମିତି ଗରମ ଭାତ ସାଙ୍ଗେ ସବୁଜା ଗୋଳେଇ ଖାଆନ୍ତି, କହନ୍ତି ଡାଲି ଥାଉ । ହେଲେ ମାଛ ତାଙ୍କର ସବୁଦିନେ ହେବା ଦରକାର । କହନ୍ତି, ଏ ମହାନଦୀ ମାଛ ପାଇଁ ଝୁରିହେଉଥିଲି ମୁଁ ବିଦେଶରେ, ଆରେ ମଗନ ।'

ମଗନ ଖୁସିରେ କହୁ କହୁ ବାଢ଼ିବାକୁ ଭୁଲିଯାଇଥିଲା । 'ସାହାବ ସବୁବେଳେ କହନ୍ତି, ଆମ ମହାନଦୀ ପରି ନଦୀ ଆଉ କୋଉଠି ନାହିଁ, ଆଉ ମହାନଦୀ ମାଛ ପରି ମାଛ ।' ମୁଣ୍ଡ ହାତ ହଲାଇ ନାସ୍ତିର ଇଙ୍ଗିତ କଲା ସେ ।

ଏଲି ତା ମୁହଁରେ ଦେଖିବାକୁ ଚେଷ୍ଟାକଲା, ଏଇଠି ବିତିଥିବା ସେ ସନ୍ଧ୍ୟାଗୁଡ଼ିକୁ ।ପଚାରିଲା, 'ନାୟକ ସାହେବ ମଦ ପିଉଥିଲେ ବହୁତ ନାଇଁ ?'

ଟିକିଏ ଦୋଦୋ ପାଞ୍ଚ ହେଇ ମଗନ ଗୁଣୁଗୁଣେଇଲା ଭଳି କହିଲା, 'ହଁ ପିଉଥିଲେ ସତ ।'

ଟିକିଏ ରହି ପୁଣି ସାହସ ପାଇଲା ପରି କହିଲା, 'ସାହେବ ଆଦବ କାଇଦାରେ ରହିଆସିଥିଲେ ସବୁଦିନ କିନା । ତହିଁରେ ପୁଣି ଏକୁଟିଆ । ଏଇଠି ବସନ୍ତି ଦିନେ ଦିନେ, ଭିତର ବାରଣ୍ଡାରେ ଏଇଠି । ତୁନି ହେଇ ବସିଥିବେ ଘଣ୍ଟା ଘଣ୍ଟା ଗିଲାସ ଧରି ପିଉଥିବେ, ଏଣେ ଆଖିରୁ ଲୁହ ବହିଯାଉଥିବ ।'

ଏଲିର ଖାଉଥିବା ହାତ ରହିଗଲା । ଅନେଇଲା ସେ ମଗନ ମୁହଁକୁ । କେଉଁ ପୁରୁଣା ଛବି ଦେଖୁଥିଲା ସେ ଆଖି, ଉଦାସ ଦିଶୁଥିଲା ମୁହଁ । କହିଲା, ସତେ କି ନିଜକୁ କହୁଚି, 'ଦୁଃଖୀ ନହେବ କେଉଁ ଲୋକ କହୁନାହାନ୍ତି । ପିଲାଛୁଆ ସ୍ତ୍ରୀ ସମସ୍ତେ କିଏ କାହିଁ ଗଲେ ଠାକୁରଙ୍କୁ ଜଣା । କିଏ କହନ୍ତି ଆକ୍ସିଡେଣ୍ଟରେ ମରିଗଲେ ସଭିଏଁ, କିଏ ବା କହେ ଗୋରା ମେମ୍ ବାହାହେଇଥିଲେ ଛାଡ଼ି ପଳେଇଲା ଆଉ କାହା ସାଙ୍ଗେ, ଆଉରି ବି କହନ୍ତି ଛାଡ଼ ବାଡ଼ ହେଇ ସମ୍ପତ୍ତି ସବୁ ଠକିନେଇଗଲା । ସାହେବଙ୍କୁ ପଚାରିଚି ଥରେ ଅଧେ, ପାଖରେ ବସି ଗୋଡ଼ ଆଉଁସି ଦେଉ ଦେଉ । ହେଲେ ଚୁପ୍ ରହନ୍ତି ସେ । ନିଜ ଗୋଡ଼ ଘଷିବାକୁ ବି ଦିଅନ୍ତି ନାହିଁ ମୋତେ । ଥରେ ଥରେ କହନ୍ତି, ଗିଲାସଟା ଆଣ, ପି ଟିକିଏ । ମୁଁ କିନ୍ତୁ ନାହିଁ କରେ ।'

ଏଲି କୁ କିନ୍ତୁ ସେ ସ୍ମୃତିରେ ଉଜ୍ଜଳିଲା ମୁହଁ ଦେଖି ମନେହେଲା, ସାଙ୍ଗରେ ବସି କେବେ ପିଇଥାଇ ପାରେ ଏ ମଗନ ବି । ଆହୁରି କହିଲା, 'ସେ ସ୍ତ୍ରୀ ପିଲାଙ୍କ କଥା ନକହନ୍ତି ତା ନୁହେଁ । ହେଲେ ରାଗରେ ନୁହେଁ, ସେମାନଙ୍କ ବିଷୟରେ ମନ୍ଦ କିଛି କହିନାହାନ୍ତି କେବେ । ସ୍ନେହରେ ମନେପକାନ୍ତି ଥରେ ଥରେ, ଆଜି ମୋ ପୁଅର ଜନ୍ମଦିନ, ଆଜି ଅମୁକ ପର୍ବ ହୁଏ ଆମର ଚେଣେ, ଏମିତି । କାନ୍ଦନ୍ତି ବେଳେବେଳେ ମନେପଡ଼ିଲେ, ନହେଲେ ମିଛରେ ପାଟିତୁଣ୍ଡ ବି କରନ୍ତି ବେଶୀ ପିଇଦେଇ ।'

'ଆଉ କଣ ସବୁ କହିଚନ୍ତି ତମକୁ ?'

'କେତେକଥା । ଇଂରାଜୀରେ ବକିଲେ ମୁଁ ତ କିଛି ବୁଝିପାରେନାଇଁ । ପିଇଦେଇ କାହା ନାଁ ସବୁ ଧରି ଗାଳିମନ୍ଦ ବି କରନ୍ତି ।'

ଅଳ୍ପ ରହି ମଗନ କହିଲା, 'ଆରମ୍ଭରେ ଆସିଲାବେଳେ ଏତେବେଶୀ ସେ ପିଉନଥିଲେ । ତାଙ୍କ ଘର ଲୋକେ ବି ଆସନ୍ତି, ଭଉଣୀ ଭିଣେଇ ପୁତୁରା ଝିଆରୀ ମାନେ, ଆଉ କିଏ ସବୁ ବନ୍ଧୁ ବାନ୍ଧବ ବି । ହେଲେ ପରେ ଜଣେ ଦି'ଜଣ ପିଇଲାବାଲା ଜୁଟିଗଲେ, ସାଙ୍ଗରେ ବୋତଲ ନେଇ ଆସନ୍ତି । ତାଙ୍କ କୁହାରେ ପଡ଼ିଗଲେ ବିଚରା ଆମ ସାହାବ । ମଦ ଅଭ୍ୟାସ ହେଲାରୁ କେତେବେଳେ କାହାକୁ କ'ଣ କହିଦିଅନ୍ତି, ନିଜ ସମ୍ପର୍କୀୟ ମାନଙ୍କ ସାଙ୍ଗେ କଳିଗୋଳ ହେଇଗଲା । ସିଏ ସିନା ହୋସ ନଥାଇ କାହାକୁ କ'ଣ କହନ୍ତି, ଲୋକେ ଆଉ ସହଜରେ ଭୁଲନ୍ତି କି ସେ କଥା ?'

'କାହାସାଙ୍ଗେ କଳିଗୋଳ ହେଲା ?'

'ତାଙ୍କ ରକ୍ତ ସମ୍ପର୍କର ଯେତେ ଲୋକ ଥିଲେ ସଭିଏଁ ତାଙ୍କୁ ଛାଡ଼ିଦେଲେ ଗୋଟି ଗୋଟି କରି । ସାଙ୍ଗ ତ ସହଜେ ନଥିଲେ ।'

'ଏଇଠି କାହା ସାଙ୍ଗେ ସାଙ୍ଗ ହେଉ ନଥିଲେ କି ସେ ?'

'କଣ କହିବି ଆଜ୍ଞା ଏଠିକା ଲୋକଙ୍କ କଥା । ପ୍ରଥମେ ସମସ୍ତେ ସାଙ୍ଗ ହେବାକୁ ହମ ହମ ହେବେ । ତାପରେ ଟିକିଏ ସୁନାମ ଯଶ ହେଲାବେଳକୁ ଆଉ କେହି ସହିପାରିବେ ନାହିଁ । ଗୋଡ଼ ଟାଣିବେ । ପିଠିପଛରେ ଫୁସୁରୁ ଫାସୁରୁ ହେବେ, ସଳା ସୁତୁରା ହେଇ କେମିତି ଲୋକଟାକୁ ଗାତରେ ପକାଇବା, ଏଇ ସେମାନଙ୍କର ମତଲବ ।'

||୧୧||

ରାତିସାରା ଭଲ ନିଦ ହେଇନଥିଲା । ଭୋରରୁ ଉଠି ଏଲି ୱାକ୍‌ରେ ବାହାରିଥାଏ । ଅଦୂରରେ ଲାଗିଥିବା ପାହାଡ଼ ଧାଡ଼ିକ ବିଶେଷ ଉଚ୍ଚ ନୁହଁ । ତାଆରି ପାଦ ତଳକୁ ଛୋଟିଆ ଅଞ୍ଚଳଟିଏ ଗଢ଼ିଉଠିଛି ଏଇ କିଛି ବର୍ଷ ତଳେ । ପିଲାଦିନେ ହୁଏତ ଏଇବାଟ ଦେଇ ସେ ଯାଇଥିବ କେଇଥର, ପିକ୍‌ନିକ୍‌ରେ ଅବା ହୀରାକୁଦ ବନ୍ଧକୁ । ୟୁନିଭର୍ସିଟୀ କେଜାଣି ଆରମ୍ଭ ହେଇଥିବ ଅବା, ଏ କ୍ୟାମ୍ପସ ଟି ଜନ୍ମ ହେଇନଥିଲା ନିଶ୍ଚୟ । ମୁଖ୍ୟ ରାସ୍ତା ଓ ପାହାଡ଼ ମଝିରେ ଆଉଗୋଟିଏ ସାନ ପାହାଡ଼, ଦୁଇ ପାହାଡ଼ ମଝି ସମତଳ ଅଞ୍ଚଳଟି ଘରଦ୍ୱାର କୋଠାବାଡ଼ି ରାସ୍ତାଘାଟ ଗଛ ବଗିଚାରେ ବେଶ୍ ଗଢିଉଠିଚି । ଖଣ୍ଡେ ଦୂରରେ ଧାନ କ୍ଷେତ, ଗାଁ କେତୋଟି ଦିଶୁଚି । ନୂଆ ଆସି ପହଞ୍ଚିଯାଇ ଉଚ୍ଚାଟ ଲାଗୁଥିଲା, ମାସେ ଦିମାସ ରହିବା କଥା ଆଭାବିତ ଭାଗ୍ୟ ପରି ମନେହେଉଥିଲା । ସପ୍ତାହେ ଯାଇନାହିଁ, ଶୂନଶାନ ଖା ଖାଁ ପଣଟାଏ ଆସିଲାଣି । ରାତିରେ ଲାଇଟ୍ ଚାଲିଯାଇଥିଲା, ପ୍ରାୟ ଦି ଘଣ୍ଟା ଯାଏ । ଏସି ବନ୍ଦ ହେଇଯାଇ ଗରମ ଅସହ୍ୟ ହେଲା । ଛାତ ଉପରକୁ ଚାଲିଯାଇ ଦେଖିଲା ଏଲି । ଚଉଦିଗ ଅପୂର୍ବ ଏଠି, ବିଜୁଳୀ ଆଲୁଅ ଏମିତିରେ ବି ପ୍ରକୃତିର ଅନ୍ଧାରକୁ ସାମାନ୍ୟ ଟିକିଏ ମାତ୍ର ଭେଦିଥାଏ । ଆଜି ପ୍ରଥମକରି ଏତେ ଘନଘୋର ଅନ୍ଧାର ଦେଖିଲା ଏଲି, ହୁଏତ ପ୍ରଥମ କରି ଜୀବନରେ । ମହାନଗରୀରେ ପଡ଼ିବା ଦେହ ରକ୍ତରେ ମିଶିଯାଏ, ତାର ହଟଚମକ କୋଳାହଳ ଯେତେ ଅଣନିଃଶ୍ୱାସିଆ ହେଉ ପଛକେ । କିଛିଦିନ ତଳେ ତାର ମନେହେଇ ଥିଲା ଏମିତି କୌଣସି ଜାଗା ତା'ର ଦରକାର, ତାର ଏଯାବତ୍ ଚିହ୍ନିଥିବା କୋଠାମାଳ ବେଢା ଆକାଶ, ମଟର ଧୂଆଁ ମିଶା ପବନ ଯେଉଁଠି ନଥିବ । ଲୋକେ ପୁରାପୁରି ଅଚିହ୍ନା ଥିବେ ଯାହାଠାରୁ ତା'ର କିଛି ଆଶା କରିବାର ନଥିବ । ଯାହାଙ୍କ ଆଗରେ ନିଜ ପରିଚୟ ବ୍ୟକ୍ତିତ୍ୱ ଗଢ଼ିବାଲାଗି ଲୋଡ଼ା ହେଉନଥିବ । ବାରମ୍ବାର ଏମିତି ବେଳେ ତା'ର ମନକୁ ଆସେ ପିଲାଦିନେ ଦେଖିଥିବା ବାପାଙ୍କ ରାଜ୍ୟ । ଖାଲି ପିଲାଦିନେ ଦେଖିଥିଲା ବୋଲି ନୁହେଁ, ବାପାଙ୍କ ମୁହଁରୁ ଶୁଣିଶୁଣି । କଥାକଥାକେ ତାଙ୍କ ମୁହଁରୁ ଶୁଣନ୍ତି ପିଲାମାନେ ଓ ତାଙ୍କ ସ୍ତ୍ରୀ, ହାତଛଡ଼ା ହୋଇଯାଇଥିବା ସେ ସ୍ୱର୍ଗ କଥା । ମାଆକୁ କହନ୍ତି ସେ, ରହିଗଲି ସିନା, ରହିବାର

ନଥିଲା ଏଠି । କାହିଁକି ରହିଲ ବୋଲି ମାଆକୁ କେବେ ପଚାରିବାର ଏଲି ଶୁଣିନାହିଁ । ଉତ୍ତ୍ୟ ଥାଇବି ସ୍ପଷ୍ଟ ଥାଏ ସେ ପ୍ରଶ୍ନ ଓ ଉତର । ବାପା କେତେ ଥର ଯେ ଦୋହରାଇଛନ୍ତି,କେବେ ସନ୍ତୋଷର ପରିବାର ସାଙ୍ଗେ ସଞ୍ଜଟିଏ କଟାଉଥିବାବେଳେ ତ ଆଉ କେବେ ପିକ୍‌ନିକ୍ କ୍ୟାମ୍ପରେ । ଜୀବନ ଜୀଇଁବା କଥା ସେଇଠି ଆମ ଲୋକଙ୍କ ଭିତରେ, ଏକୁ ଅରେକକୁ ଚିହ୍ନନ୍ତି ସଭିଏଁ, ସମୟର କଟକଣା ନଥାଏ, ସେଠି ଏକୁ ଆରେକ ଲାଗି ସମୟ ଦିଆଯାଇପାରେ ଅକାତରେ । ରୋଷେଇରେ କଟେଇଦିଆଯାଇପାରେ ରବିବାର ସକାଳଟି । ଭାଇ ଭଉଣୀ ପରିବାର ଏକାଠି ହେଲେ ଖାଲି ଗପରେ ଗପରେ ପାହିଯାଇପାରେ ପୂରା ରାତିଟି । ସେଠି କେଉଁ ସଂପର୍କୀୟର କେତେ ଆୟ, କେତେ ଧନ ପ୍ରତିପତ୍ତି ସେକଥା ଦେଖି ସଂପର୍କ ବନ୍ଧା ଯାଏନାହିଁ । ବାହାଘରେ ନିମନ୍ତ୍ରଣ ଯାଏ ପରିବାର ବନ୍ଧୁ କୁଟୁମ୍ବଙ୍କୁ । ସମ୍ପର୍କର ନକ୍ସା ସେଠି ପକ୍କା । ଆଜି ପାତିଦେଇ  କାଲି ସେଠି ଭଙ୍ଗାଯାଏନି ସଂପର୍କ ସେଠି ଏଠାଭଳି । ଏଇଭଳି ଛାଡ଼ିଆସିଥିବା ଛବିଟି କଥା ଘୋଷି କହୁଥାନ୍ତି ବାପା ।

ଖାଲି ଲୋକଙ୍କୁ ନୁହେଁ, ବନ୍ଧୁ କୁଟୁମ୍ବ କି ସ୍ନେହ ଆଦରକୁ ନୁହେଁ, ଏଠା ପାଣିପବନକୁ ଝୁରି ହୁଅନ୍ତି ସେ । ମା କିଛି ବୁଝନ୍ତି କିଛି ବୁଝନ୍ତିନି ସେ ଭାବକୁ । ବବି ବୁଝେନାଇଁ ପ୍ରାୟ, ଦୂରେଇ ରହେ ମା ପାଖିଆ ହେଇ । ଏଲି ବାପାଙ୍କ ଆଖି ଦେଇ ଦେଖିପାରେ ସେ ସ୍ୱପ୍ନସବୁ, ଶୁଣିପାରେ ସେଠା ସଂଗୀତ, ନାକରେ ସେଠା ବାସ୍ନା ବାରିପାରେ । କମଳା ନିଳୟକୁ ଯିବା ଆସିବା ବନ୍ଦ ହେଇଗଲା ପରେ ବି ତା'ର ଆବହାଓ୍ୱା କିଛି କିଛି ସଞ୍ଚରି ସାଇତି ହେଇସାରିଥାଏ ତାମନ ଗହୀରରେ, ନିଜ ଆଙ୍ଗେ ନିଭେଇଥିବା ଦିନରୁ କିଛି, ଆଉ ବାକିତକ ବାପାଙ୍କ କଥାରୁ ।

କାଲି ପ୍ର. ପଣ୍ଡାଙ୍କ କଥା କଥାରେ ଗୋରା ଲୋକଙ୍କ ସଂସ୍କୃତିର ନିନ୍ଦା ଜାରୀ ଥିଲା । ଏଲିକୁ ଏସବୁ ଚୁପ୍ ହେଇ ସହିବାକୁ କଷ୍ଟ ହୁଏ, ହେଉ ପଛକେ ସେ ଗୋରା ସାହେବ ଭଳି ଦେଖାଯାଏନି । ନିଜକୁ ଗୋରା ଜାତି ସଂଗେ ସମ୍ପୂର୍ଣ୍ଣ ଏକୀଭୂତ ବି କରିପାରିନି କେବେ । ତଥାପି, ତା ଜୀବନର ଅଙ୍ଗ ହେଇଥାଏ ମାଆ ବିଚାରୀ । ଏମାନେ ସମସ୍ତେ, ବାପାଙ୍କର ବନ୍ଧୁ କୁଟୁମ୍ବଙ୍କଠୁ ଆରମ୍ଭ କରି ଏଠି ସେଠି ଚିହ୍ନା ହେଇଥିବା ଲୋକେ, ସମସ୍ତଙ୍କର ଯଦି କିଛି ଦୟା ଥିବ ବିଧୁ ନାୟକଙ୍କର ଲାଗି, ତା ଏଇଥିପାଇଁ ଯେ ସେ ବିଚରା ଏଡ଼େ ଶିକ୍ଷିତ ପ୍ରତିଭାବାନ ଲୋକଟା ନଷ୍ଟ ହେଇଗଲା ଗୋରା ସ୍ତ୍ରୀ ପାଲରେ ପଡ଼ି, ବିଲାତୀ ରକ୍ତ ମିଶା ପିଲାଙ୍କର ଲାଗି ଅର୍ଥୋପାର୍ଜନ କରି, ଗୋରା ଜାତିକୁ ଆପେଣେଇନେଲା ବୋଲି । ଭାନୁ ପିଇସୀ କହିଥିଲେ, ଯେ ସେମାନେ ଚାହିଁଥିଲେ ତେରୀରେ ହେଉପଛେ ତାଙ୍କ ଭାଇ ଭାରତୀୟ ସ୍ତ୍ରୀଟିଏ ବାହାହେଇ ଘରସଂସାର କରୁ ବୋଲି । କିଏ କହିଲା ଭାରତୀୟ ସ୍ତ୍ରୀ ହିଁ ସ୍ୱାମୀ ଲାଗି ତ୍ୟାଗ କରେ, ପରିବାର ଲାଗି ଦୁଃଖ ସହେ ବୋଲି ?

ଇଂରେଜ ଝିଅଟିଏ, ଅଠର ବର୍ଷର । ଖରାଛୁଟିରେ ହାତଖର୍ଚ୍ଚ ରୋଜଗାର କରିବ ବୋଲି ଆଉରି ଅନେକ ସାଙ୍ଗସାଥୀଙ୍କ ପରି ଲଣ୍ଡନର ରେସ୍ତୋରାଁଟିଏରେ କାମ କରୁଥାଏ । କୋଉ ଗରିବ କି ତଳିଆ ସମାଜର ନଥିଲା ତ, ମହାନଗରୀର ସମ୍ପନ୍ନ ଅଞ୍ଚଳରେ ତା ବାପାଙ୍କ ଘର, ସମ୍ଭ୍ରାନ୍ତ ଲୋକଙ୍କ ଭିତରେ ଉଠାବସା ସେମାନଙ୍କର । ସେଇ ଝିଅଟି, ପିଲାଟି ଦିନରୁ ଭଲ ବହି ପଢ଼ିବା, ଉଚ୍ଚାଙ୍ଗ

ସଙ୍ଗୀତ ଶୁଣିବାର ରଚି ଥିଲା ତା'ର । ଖାଲି ଟଙ୍କା ପଇସା ପ୍ରତିପତ୍ତି ଆଡ଼ମ୍ବର ନୁହେଁ, ବୌଦ୍ଧିକ ପ୍ରାପ୍ତିକୁ ସମ୍ମାନ କରିବାକୁ ଶିଖାଇଥିଲା ଯାର ସଂସ୍କାର । ସେଇ କୋମଳମତି ସୁକୁମାର ଝିଅଟି ଦିନେ ଦେଖିଥିଲା ସାବନା ସୁନ୍ଦର ଯୁବକଟିଏକୁ, ରେସ୍ତୋରାଁରେ ବସିଥାଏ ସିଏ ଏକୁଟିଆ । ଅନ୍ୟ ଦେଶ ଓ ସଂସ୍କୃତିର ହେଉ ପଛେ, ତାର ଉଦାସ ମୁହଁ, ବିଷର୍ଣ୍ଣ ଆଖି, ଓଠ ଦେଖି ଅଗ୍ରାହ୍ୟ କରିଦେବାଭଳି ବୟସ୍କ ଦନ୍ତୁଡ଼ାପଣ ଅବା ସଂସ୍କାରର ରୁକ୍ଷତା ତାର ନଥିଲା । କେଉଁ କଲେଜର ଛାତ୍ର ନିଶ୍ଚୟ, ପାଖରେ ବହି ଦି'ଖଣ୍ଡ କହିଦେଉଚି । ହାତରେ ମଦଗିଲାସ, ଚୁପ୍‌ଚାପ୍ ବସିଚି ଏକୁଟିଆ । ସାଙ୍ଗ ସାଥୀ ମାନେ ସଭିଏଁ ସଙ୍ଗୀତ ସାଙ୍ଗରେ ଦେହ ଭସେଇ ନାଚୁଛନ୍ତି ସଙ୍ଗୀ ମାନଙ୍କୁ ନେଇ । ଏ ପିଲାଟିର ଧ୍ୟାନ ନା ଅଛି ତା' ହାତର ପାନୀୟରେ ନା ତା' ସାଥୀ ପୁଅଝିଅଙ୍କ ନାଚରେ । ଯାଉଣୁ ଆସୁଣୁ ଦେଖିନେଉଥିଲା ତାକୁ ଗୋରା ଝିଅଟି, ନାଁ ତାର ଲିସା ପ୍ୟାଟ୍ରିକ୍ । ସାବନା ପିଲାଟି କେତେବେଳେ ବେଶୀ ଅନ୍ୟମନସ୍କ ହେଇପଡ଼ିଥିଲା, ଗିଲାସ ଥୋଇଦେଇ କେବେ ବା ଉଠିଯାଇଥିଲା ବାଥରୁମ୍‌କୁ । ମୁହଁରେ ରୁମାଲ ଚାପି ଫେରିଲା ବେଳକୁ ତା ଆଖି ନାଲି ଦିଶୁଥାଏ । ଲିସା ଆନ୍ଦାଜି ନିଗା କଲା, ତରୁଣଟି ଟେବୁଲର ହାଲୁକା ଆଲୁଅରେ ସମସ୍ତଙ୍କୁ ଲୁଚେଇ ଲୁହ ପୋଛୁଚି ଥରକୁ ଥର ।

ଦୟା ପାଇଥିଲା ଗୋରା ଝିଅ ଲିସା । ଏଲି ମନେ ମନେ ଦେଖିଚି ଏ ଦୃଶ୍ୟଟିକି, ମାଆଠାରୁ ବର୍ଣ୍ଣନା ଶୁଣି । ମାଆଠୁ ଆଉରି ବି ଶୁଣିଚି ତା ପରବର୍ତ୍ତୀ ଘଟଣାମାନ, ଅନେକ ଦିନ ପରେ, ବାପାଙ୍କଠୁ ଛାଡ଼ବାଡ଼ ହେଇସାରିବାର ଦୀର୍ଘଦିନ ପରେ ଦିନେ ତାକୁ ମା ଶୁଣେଇଥିଲେ ତାର ବାପାଙ୍କୁ ଭେଟିବାର କାହାଣୀ । ବିଧିର ନିର୍ଦ୍ଦେଶ ସତେକି, ଯାହା ସେ ଲଂଘି ପାରିନଥାନ୍ତା କେଭେ । ରେସ୍ତୋରାଁରେ ଗ୍ରାହକ ସଙ୍ଗେ ବେଶୀ ଗପସପ କରିବା ମନା, ତେଣୁ ପରେ ବଜାର ଭିତରେ ପଡ଼ିଥିବା ବେଞ୍ଚରେ ସେଇ ପିଲାଟି ଥକା ମୁହଁରେ ପୁଣି ସେମିତି ଏକା ବସିଥିବା ଦେଖି ଲିସା ପାଖକୁ ଯାଇ ପଚାରିଥିଲା ତା ନାଁ ପରିଚୟ । ବିଚରା ପିଲାଟି । ନିଜ ଘରୁ, ଜନ୍ମଭୂଇଁରୁ କାଇଁ କେତେ ଦୂରକୁ ଆସି ରହିଚି ଏଠି, ଅଚିହ୍ନା ବିଦେଶ ଜାଗାରେ, ପାଠ ପଢ଼ିବ ବୋଲି । ଏଇ କେତେଟାଦିନ ତଳେ ଖବର ଆସିଚି, ଯେ ମା ତାର ମରିଯାଇଚି । ଫେରିଯିବାର ଉପାୟ ନାଇଁ, ତା ପାଖେ ଟଙ୍କା ନାଇଁ, ଥିଲେ ବି ବାପାଙ୍କ ଅନୁମତି ବିନା ସାହସ ନଥାନ୍ତା । ନିଜ ଲୋକ, ଏମିତି କି ନିଜ ଦେଶର ଲୋକବାକ କାହାରି ସଙ୍ଗେ ବି ଚିହ୍ନା ପରିଚୟ ନାହିଁ ତା'ର ଏଠି । କଥାବାର୍ତ୍ତା, ପୁଣି ବନ୍ଧୁତାରୁ ପ୍ରେମ । ପଚାରିଥିଲା ଲିସା, ମଦ ପିଇବାର ଅଭ୍ୟାସ ଯଦି ନାଇଁ, ଜବରଦସ୍ତି ପିଉଚ କାହିଁକି ? ଅସହାୟ ଭାବେ କହିଥିଲା ବିଧୁ, ମଦରେ ଦୁଃଖ ଭୁଲିହେଇଯାଏ କାଳେ । ଆଉ ମା କୁ କେବେ ଦେଖିବିନି । ଏକଥା ସହିବା, ମାନିବା କଷ୍ଟ ।

ଏଲିକୁ ସବୁ କଥା କୁହାଯାଇନଥିଲେ ବି ସେ ଅନୁମାନ କରିଚି । ପ୍ରେମରେ ପଡ଼ିଲେ ସେ ଦେଶରେ ଶରୀରକୁ ଦୂରେଇ ରଖିବାର ବାଧ୍ୟବାଧକତା ନଥାଏ । ବିଧୁର କୋଠରୀରେ ଅନେକ ସମୟ ବିତିଥିବ ଲିସାର । ଦିହେଁ ପରସ୍ପରକୁ ଲୋଡ଼ିଥିବେ, ସମୟ ପାଇଲା ମାତ୍ରେ ଭେଟିଥିବେ, ବିତିଯାଇଥିବ ଦିହିଙ୍କ ଛାତ୍ର ଜୀବନ । ବର୍ଷକ ପରେ ବିଧୁ ଯାଇଥିଲା ନିଜ ଦେଶକୁ, ଲିସାର ଭୟ ହେଉଥିଲା କାଳେ ସେ ତାକୁ ଭୁଲିଯିବ, କାଳେ ଆଉ ନ ଫେରିବ, କାଳେ ନିଜ ଜାତିର ଝିଅଟିଏକୁ ବାହାହେଇଯିବ ଦେଶରେ ବୋଲି । ତା'ର ସବୁ ଆଶଙ୍କାକୁ ଧୂଆଁ କରିଦେଇ ବିଧୁ ନିଜ ଦେଶରୁ

ନାନା ଚେଷ୍ଟାରେ ତାକୁ ଫୋନ୍ କରିଥିଲା, ଯେ ତା'ର ମନ ଲାଗୁନାହିଁ ସେଠି, ଶିଘ୍ର ଲିସା ପାଖକୁ ଫେରିଆସିବାକୁ ମନ ଡାକୁଚି ।

ପ୍ରଥମ ପରିଚୟର ତିନି ଚାରିବର୍ଷ ପରେ, ବିଧୂ ଚାକିରୀ ପାଇଲା କ୍ଷଣି ସେ ଦୁହେଁ କୋର୍ଟରେ ବାହାହେଇ ପଡ଼ିଥିଲେ । ଲିସାର ବାପା ମା ପ୍ରଥମେ ଆପତ୍ତି କରିଥିଲେ, ପ୍ରଥମ ଚାରିଛଅ ମାସ ଝିଅ ସାଙ୍ଗେ ସଂପର୍କ ବି ରଖିନଥିଲେ । ବିଧୂର ବାପାଙ୍କୁ ଖବର ଦିଆଯାଇନଥିଲା ଦୁଇବର୍ଷ କାଳ । ଶେଷକୁ ବିବାହର ପାଞ୍ଚବର୍ଷ ପରେ, ଟିକି ଅଞ୍ଜଳିକୁ ସାଙ୍ଗରେ ନେଇ ବିଧୂ ଓ ତା'ର ଇଂରେଜ ପତ୍ନୀ ଯାଇ ପହଞ୍ଚିଥିଲେ କମଳା ନିଳୟରେ ।

ବାପାଙ୍କର ଉପରେ ଜେଜେଙ୍କର ରାଗ, ତାଙ୍କୁ ନାନାଦି କଡ଼ା ଚିଠି ଲେଖିବା, କ୍ରୋଧରେ ଦୁଃଖରେ ଥରେ ତ୍ୟଜ୍ୟପୁତ୍ର କଲେ ବୋଲି ଘୋଷଣା କରିବା, ପୁଣି ଚିଠିରେ ଅଭିସମ୍ପାତ ଦେବା ଆଦି ସବୁ କଥା ଶୁଣିଚି ଏଲି । ବିଧୂର ମାଆର ପୁତ୍ରଶୋକରେ ପ୍ରାଣବଳି ଦେଇଦେବା କଥାଟିକି ଲିସା ନା ବୁଝିପାରିଥିଲା, ନା ତା ବାପାଙ୍କର କ୍ରୋଧ, ହତାଶା, ଉଦ୍‌ଭ୍ରାନ୍ତ ହେବାଭଳି ପ୍ରତିକ୍ରିୟାର ଯୁକ୍ତିଯୁକ୍ତତା ଦେଖିପାରିଥିଲା । ସାଧୁ ନାୟକ କାଳେ ଉଇଲ କରି ପୁଅକୁ ତାଙ୍କ ସମ୍ପତ୍ତିରୁ ବେଦଖଲ କରାଇବାରେ ସନ୍ତୁଷ୍ଟ ହେଲେନାହିଁ, ବ୍ରାହ୍ମଣକୁ ଡକାଇ ତାଙ୍କ ପୁଅର ଶ୍ରାଦ୍ଧ କରିପକାଇଥିଲେ । ପୁଣି ଚାରିବର୍ଷପରେ ପୁଅ ସାଙ୍ଗେ ତା ଗୋରା ବୋହୁ ଓ ଅଧଗୋରା ନାତୁଣୀକୁ ଭାବବିଭୋର ହୋଇ ପାଖ ପଡ଼ିଶା ସଧବା ସ୍ତ୍ରୀଙ୍କ ହାତରେ ବନ୍ଦାଣ କରାଇ ସ୍ୱାଗତ କରିଥିଲେ । କାନ୍ଦି କାନ୍ଦି କହିଥିଲେ, 'ତୋ ମାଆର ଏ ଦିନ ଦେଖିବା ଭାଗ୍ୟର ନଥିଲାରେ ବାବୁ !'

ହେତୁ ପାଇଲା ଦିନୁ ଏଲି ଯାଇଚି କମଳା ନିଳୟକୁ, ପ୍ରତି ବର୍ଷ ପ୍ରାୟ । ଅନେକ ବର୍ଷ ଧରି । ବାପାଙ୍କ ଚାକିରୀ ବଡ଼ କଲେଜରେ ହେଉଥାଏ । ଜେଜେ ବି ହୁଏତ ବାଟଖର୍ଚ୍ଚ ଦେଉଥିବେ କିଛି କିଛି, ତାଙ୍କ ଚାଷଜମି, ଘର ଭଡ଼ା ଆୟରୁ । ଉଡ଼ାଜାହାଜ ସେତେବେଳକୁ ଲୋକଙ୍କ ହାତ ପାଆନ୍ତା ହେଲାଣି, ଦଶବର୍ଷ ପୂର୍ବଭଳି ଆଉ ପାଣି ଜାହାଜରେ ମାସେ ପନ୍ଦରଦିନ ଲେଖାଁ କଟେଇ ଲୋକଙ୍କୁ ବିଦେଶ ଯାତ୍ରା କରିବାକୁ ହେଉନଥାଏ । ବିଧୂ ନାୟକଙ୍କୁ ସୁହାଉଥିଲା ସେ ଜୀବନ । ଭାରତରୁ ଗୋରା ମାନେ ବିଲାତ ଫେରିଯିବାର ବେଶୀ ଦିନ ହେଇନଥିଲା । ତାଙ୍କ ଅନୁପସ୍ଥିତିକୁ ଝୁରିଲା ଭଳି ବିଲାତ ଫେରନ୍ତା ଦେଶୀ ଲୋକଙ୍କୁ ଲୋକେ ପୂର୍ବ ଗୋରା ସାହେବଙ୍କଠାରୁ ବେଶୀ ସମ୍ମାନ ଭକ୍ତି କରୁଥିଲେ ।

କମଳା ନିଳୟ ରେ ମଉଚ୍ଛବ ଲାଗିଯାଏ ବିଧୂ ନାୟକ ଆସିଲେ । ଖାଲି ସେଇ ଘରେ ନୁହେଁ, ଆଖପାଖ ପଡ଼ିଶାରେ ରାଷ୍ଟ୍ର ହେଇଯାଏ ଖବର । ସ୍କୁଲ କଲେଜରୁ ଭାଷଣ ଦେବାଲାଗି, ପୁରସ୍କାର ବିତରଣ କରିବାଲାଗି ଡାକରା ଆସେ, ସହରର ପଦସ୍ଥ ଲୋକେ ବୁଲିଆସନ୍ତି ଦେଖା କରିବାକୁ, ଘରକୁ ଖାଇବାକୁ ନିମନ୍ତ୍ରଣ କରନ୍ତି । ଏଲିର ମନେଅଛି, ମାଆଙ୍କୁ ଶାଢ଼ୀ ପିନ୍ଧି ଖାଲି ପାଦରେ ବେଳେବେଳେ ଚାଲିବାକୁ ହୁଏ ସିନା, ଯେମିତି ରାଣୀଭଳି ଆଶ୍ଚର୍ଯ୍ୟରେ ପରମ ବିସ୍ମୟରେ ତାଙ୍କୁ ବନ୍ଧୁ କୁଟୁମ୍ବର ସଭିଏଁ ଦେଖନ୍ତି, ସେଭଳି ଅନୁଭବ ଅନ୍ତତଃ କେବେ ହୋଇନଥିବ ତାଙ୍କର ନିଜ ଦେଶରେ । ଅନୁଭବ ମାନ କେଉଁ ମୋଡ଼ ମାନଙ୍କରୁ ବଦଳିଲା, ସୁହେଇଲା ନାହିଁ କ୍ରମେ, ପୁଣି କଠୋର ହୋଇ କଷ୍ଟଦାୟକ ହେଲା ସେ ଭିନ୍ନ କଥା ।

॥୧୨॥

ରବିବାର ସକାଳଟିରେ ବାହାର ବାରଣ୍ଡାରେ ବସି ଏଲି ଚା' ପିଉଥିଲା । ଏଇଠି ଏମିତି ବସି ଚା' ପିଉଥିବେ ତା ବାପା ବି, ଏକୁଟିଆ କେଜାଣି ତାଆରି ଭଳି ଭାବୁଥିବେ କାହିଁକି ନିଜ ଇଚ୍ଛାରେ ଆଦରିନେଲେ ଏ ଏକୁଟିଆ ପଣକୁ ବୋଲି । ପୁଣି ଏଲି ଭଳି ମାସେ ଅଧେ ଲାଗି ନୁହେଁ, ଆଜୀବନ । ପଛ ଜୀବନ ସାଙ୍ଗେ ଡୋରି କାଟିଦେଇ ।

ଯେତେଦୂର ସ୍ମୃତିର ଆଖିପାଏ, ଏଲି ଦେଖେ, ବାପା ତା'ର କେବେ ନିତିଦିନିଆ ପାରିବାରିକ ସୁଖରେ ବାନ୍ଧିହୋଇ ରହିବା ଲୋକ ନଥିଲେ । ଆଦ୍ୟ ଯୌବନରେ ବିଦେଶରେ ଏକୁଟିଆ ହୋଇଯିବା, ଅଥବା ସେ ଯାବତ୍ ଭୋଗିଥିବା ସବୁଠୁ ବଡ଼ ଶୋକକୁ ନେଇ ଏକୁଟିଆ ପୋଡ଼ିଜଳି ହେବା, ସେସବୁ ମିଶି କେଜାଣି କ'ଣ ରସାୟନ ତିଆରିକରିଥିବ ତାଙ୍କ ମନରେ । କେଜାଣି ଅବା ମୂଳରୁ ଥିବ ସେ ସ୍ୱପ୍ନ କେତୋଟି ଯାହା ସାକାର ହେବାକୁ ଲୋଡୁଥିବ ନିଶାରେ ଥିଲାବେଳେ, ପରିବାରର ଲଗାମ ସବୁ ହୁଗୁଳା ହୋଇଗଲା କ୍ଷଣି ।

ମନେଅଛି, ମାଆ କାନ୍ଦି କାନ୍ଦି କହେ, 'ତମେ ପ୍ରତିଜ୍ଞା କରିଥିଲ ନିଶା ଛାଡ଼ିଦେବ ବୋଲି । ମୁଁ ବିଶ୍ୱାସ କରିଥିଲି । ନହେଲେ ବାହାହୋଇ ନଥାନ୍ତି କେବେଁ ।'

ବାପା ଏଣୁ ତେଣୁ କୈଫିୟତ୍ ଦିଅନ୍ତି । ତାଙ୍କ ନିଜର ବିଶ୍ୱାସ ନଥାଏ ନିଜ ଯୁକ୍ତିରେ, ତା ଦିଶୁଥାଏ ତାଙ୍କ ମୁହଁରୁ । ହେଲେ ଗୋଟିଏ କଥା ସବୁଦିନେ ସତ ଥିଲା, ଦୁଇତିନି ଗିଲାସ ପରେ ସେ ମଣିଷଟି ଭିନ୍ନ ପାଲଟିଯାଏ, ପୁରାପୁରି ଆଉଜଣେ କିଏ । ସ୍ନେହ ଆଦର ନଥିବା ନୀରସ, ରୁକ୍ଷ ଲୋକଟିଏ । ଆଖ ପାଖର ସଭିଙ୍କର ଉପରେ ତାର ଆକ୍ରୋଶ । ସମସ୍ତେ ସ୍ୱାର୍ଥପର, ଭଣ୍ଡ । ଆଉ ନିଜଲାଗି ତାକୁ ଆଉରି ଶ୍ରମ କରିବାକୁ ହେବ । ନହେଲେ କାଲି ସବୁ ହାତଛଡ଼ା ହୋଇଯାଇପାରେ ।

ଲିସାକୁ ଗାଳିଦିଏ ସେ ଲୋକଟି ବିନା କାରଣରେ, ଏଲି ଦେଖିଚି । ସେତିକିବେଳେ ସାବନା ରଂଗର ଝିଅଟି ଗୋଟିପଣେ ମା ପାଖିଆ ହୋଇଯାଏ, ଦିଓଠ ମଝିରେ ଜିଭ ଘୋଷାରି ଖନେଇ ପାଟିତୁଣ୍ଡ କରୁଥିବା ଲୋକଟି ତା ନିଜ ରଂଗର ହୋଇଥିଲେ ବି ଏଲିକୁ ଦିଶେ କୋଉ ଗରିବ ଅନୁନ୍ନତ ଦେଶର ଅଶିକ୍ଷିତ ବର୍ବର ଲୋକଟିଏ ପରି । ଅବିକଳ ଲିସାର ଆଖିଦେଇ ଦେଖିପାରେ ସେତେବେଳେ ସେ । ଇସ୍, ଏଡ଼େ କଦର୍ଯ୍ୟ ଜନ୍ତୁଟାଏ କିଭଳି ମୋ ଜୀବନ ସାଙ୍ଗେ ଜଡ଼ିରହିପାରିଚି । ହେଲେ ପରଦିନ ନିଶା ଓହ୍ଲେଇଗଲା ପରେ ସେ ଲୋକଟି ଶାନ୍ତ ସୁଧାର ହୋଇଯାଇଥାଏ, ଆଖି ଟେକି ଅନେଇ ପାରେନାହିଁ ସ୍ତ୍ରୀକୁ, ପୁଅଝିଅଙ୍କୁ । ଡରିଲା ଡରିଲା ସ୍ୱରରେ କଥାକହେ, ଖୋସାମତି କଲାଭଳି । ପୁଅଝିଅଙ୍କ ସାଙ୍ଗେ ବସି ଗ୍ରଗଁ କରେ, ରେକର୍ଡ ବଜାଏ, ଗୀତ ଶିଖାଏ, ମୀରା ଭଜନ, ରବୀନ୍ଦ୍ର ସଙ୍ଗୀତଠୁ ଛାନ୍ଦ ଓଡ଼ିଶୀ ଯାଏଁ । ଏଲିକୁ ସେତେବେଳେ ଲାଗେ ଏଇ ମଣିଷଟିର ସଂସର୍ଗରେ ଆସୁଥିବା ପ୍ରତିଟି ମଣିଷ ଧନ୍ୟ । କେତେ କଳା, ପୁଣି କେତେ ସ୍ପର୍ଶକାତରତା ଭରି ହୋଇଚି ତା ବାପାଠି, ଯାହା ଠିକଣା ବାଟ ପାଇନପାରି ଛାଟିପିଟି ହେଉଚି ସତେକି ।

ଗୋରା ସ୍ତ୍ରୀ ଟି କିନ୍ତୁ ଆଉରି ଧାପେ ଆଗକୁ ଯାଏ । ନିଶାବେଳେ ସ୍ୱାମୀ କରିଥିବା ଆକ୍ଷେପ ସବୁକୁ ଭୁଲିଯିବ କ'ଣ, ତାରି ନିଜ ଦୋଷ ଦୁର୍ବଳତା ମାନଙ୍କୁ ସ୍ୱୀକାର କରି ସଜାଡ଼ିବା ଚେଷ୍ଟାରେ ଲାଗିଯାଏ । ନିଶାରେ ଯେଉଁ ଲୋକଟି ତାକୁ ନିଜ ଦେଶର ଆତ୍ମତ୍ୟାଗୀ ସତୀ ସାବିତ୍ରୀଙ୍କ ସାଙ୍ଗେ ତୁଳନା କରିଥାଏ, ସେଇ ଦୂରନ୍ତ ଛବି ମାନଙ୍କ ପରି ବାସ୍ତବରେ ହେବାଲାଗି ଚେଷ୍ଟାକରେ ସେ ।

'ଜାଣିଛ, ମୋ ନାନୀ ସଞ୍ଜବେଳଯାଏଁ ଅନେଇ ବସିଥାଏ, ଭିଣେଇ ଖାଇଲେ ଯାଇ ଖାଇବ ବୋଲି ।'

'ମୋ ସାନ ଭଉଣୀ, ନିଜେ ଡାକ୍ତର । ମୋ ଠୁ ବେଶୀ ବୁଦ୍ଧିଆ ଥିଲା ସେ, ବେଶୀ ଭଲ ପଢୁଥିଲା ସବୁଦିନେ । ନିଜ ଦରମା ତା ସ୍ୱାମୀ ହାତରେ ଦେଇଦିଏ, ଦସ୍ତଖତ କରେ ସିନା, ନିଜ ଦରମା କେତେ ଜାଣିନଥାଏ । ଫଳରେ କଣ ହୁଏ ଜାଣ, ଭାରତୀୟ ପୁରୁଷଟିଏ ଆଖିବୁଜି ଆଉଜି ପଡ଼େ ସ୍ତ୍ରୀଟି ଉପରେ, ଆସ୍ଥା ବିଶ୍ୱାସରେ । ଯେ କୌଣସି ପରିସ୍ଥିତିରେ ସେ ନିଜକୁ ପୂରାପୂରି ସମର୍ପି ଦେଇପାରେ ସ୍ତ୍ରୀ ପାଖରେ । କାହିଁକି ନା ସ୍ୱାମୀକୁ ଛାଡ଼ି ତା ସ୍ତ୍ରୀର ନିଜସ୍ୱ ସାର୍ଥ ବୋଲି କିଛି ନଥାଏ ସେଠି, ତାର କଳ୍ପନା ହିଁ ନଥାଏ, ପିଲାଦିନୁ ରକ୍ତଗତ ହୋଇଥାଏ ସଂସ୍କାର ।'

ମାଆ ଯେବେ ପଚାରେ, 'ଏଇଆକୁ ତେବେ ତମେ ଆଦର୍ଶ ମନେକରିଆସିଚ ପିଲାଦିନୁ, ତମ ମନରେ ସେଇଆ କାମ କରୁଚି ? ତା ବିନା ଅସମ୍ପୂର୍ଣ୍ଣ ଲାଗୁଥିବେ ନିଶ୍ଚୟ ତମକୁ ସବୁ ନାରୀ ।'

ବାପା ଜବାବ ଦିଅନ୍ତି, 'ଦେଖ, ଭଲ କି ଖରାପ ମୁଁ କହିପାରିବି ନାହିଁ, ହେଲେ ଏକଥା ଘଟେ ସେଠି ପ୍ରତି ଘରେ, ପ୍ରତି ଜୀବନରେ । ଯାହା ଦେଖିଚି ତମକୁ କହୁଚି । ମୋ ମନରେ ଯଦି ତାର ଛାପ ରହିଯାଇଚି, ମୋତେ ଦୋଷୀ ତ କରିପାରିବନି ସେଥିଲାଗି ।'

ବିଚାରୀ ଭିନ୍ନ ସଂସ୍କାରର ସ୍ତ୍ରୀ ଟି ଶୁଣେ, ବିଶ୍ୱାସ କରେ, ଏପରିକି ସମବେଦନା ଆସେ ତାର । ଏ ଲୋକଟି ଦେଖିଥିବା ସ୍ୱର୍ଗଟି ତାର ହାତଛଡ଼ା ହୋଇଯାଇଛି, ସେଇ ଦୁଃଖ ବୋଧେ ତାକୁ କୋରି ଖାଉଥିବ । ତେଣୁକରି ଲିସା ଭାରତୀୟ ସ୍ତ୍ରୀର ସହିଷ୍ଣୁତା ଓ ଆତ୍ମତ୍ୟାଗ କୁ ନିଜ ଜୀବନରେ ପକାଇବାକୁ ଅଭ୍ୟାସ କରେ । ଭାରତୀୟ ରନ୍ଧା, ଭାରତୀୟ ସାଜସଜ୍ଜା ତା ଘରେ ହୁଏ । ସ୍ୱାମୀ ସଞ୍ଜରେ ଘରକୁ ଫେରିଲେ ସେ ଥଟ୍ଟା ନକଲରେ ହେଉପଛେ ତାଙ୍କ ପାଦକୁ ନିଜ କୋଳକୁ ଉଠାଇନେଇ ଜୋତା ଫିତା ଖୋଲିଦିଏ । ସ୍ୱାମୀ ଥିଲା ବେଳେ ନିଜର ସବୁ ସମୟ ସେ ତାଙ୍କର ଲାଗି ଖାଲି ରଖିଥାଏ ।

ସ୍ୱାମୀର ପୂଜା ଘର ସଫାସୁତୁରା ରଖେ, ନିଜେ ବି ଚର୍ଚ୍ଚ ଯାଏନାହିଁ ରବିବାର ଦିନ, ପିଲାଙ୍କୁ ନେବା ଦୂରେ ଥାଉ ।

ଇଂରେଜ ପତ୍ନୀଟି ଗୋଟିଏ ଇଲାକାରେ ନିଶ୍ଚିତ ଥାଏ, ଯେ ନିଜ ଦେଶକୁ, ବନ୍ଧୁ କୁଟୁମ୍ବକୁ ଯେତେ ଝୁରୁଥାଉ ପଛେ, ଏ ସାବନା ଲୋକଟିର ସବୁଠୁ ବଡ଼ ସ୍ୱପ୍ନ ଟି କ'ଣ ସେ ଜାଣେ । ତା ହେଲା କେମିତି ସେ ସବୁକଥାରେ ଗୋରାଲୋକଙ୍କ ସାଙ୍ଗେ ସମାନ ହେବ, ଆଦବକାଇଦାରେ ତାକୁ କିଏ ପଛୁଆ ଦେଶର ବୋଲି ନ କହିବେ, କଥାବାର୍ତ୍ତାରେ ଚଳଣୀରେ ତା'ର ଅନୁନ୍ନତ

ସଂସ୍କାରର ଝଲକାଏ ଦିଶିନଯିବ । ସେଥିଲାଗି ତା ପିଠିପାଖେ ସଦାବେଳେ ସବୁଠୁ ବଡ଼ ଶକ୍ତି ଥାଏ ତା'ର ଗୋରା ସ୍ୱାମୀଟି, ଯିଏ ଖାଲି ତା'ର ଶ୍ୱେତଚର୍ମ ଲାଗି ନୁହେଁ, ପୃଥିବୀର ସର୍ବଶକ୍ତିଶାଳୀ ବୋଲାଇ ଆସୁଥିବା ଦେଶର ସର୍ବୋତ୍ତମ ନଗରୀର ସମ୍ଭ୍ରାନ୍ତ ଅଞ୍ଚଳରେ ଜନ୍ମ ନେଇ ବଢ଼ିଚି ବୋଲି ତାଲାଗି ଅନନ୍ୟା ଥାଏ ।

ଲିସା ନିଜ ବନ୍ଧୁ ପରିଜନଙ୍କ ଆଗରେ ସ୍ୱାମୀକୁ ନେଇ ଗର୍ବ କରେ । ହେଉ ପଛକେ ସେ କଳାଚମର ଲୋକ । ତଥାପି ସ୍ୱାମୀ ତାର ବୁଦ୍ଧିଜୀବି ମହଲରେ ମାନ୍ୟଗଣ୍ୟ । ପୁଣି ବିବାହ ଉପରେ ଭରସା କରିପାରୁନଥିବା ସେ ସମାଜରେ ତା'ର ଅଛି ସ୍ୱାମୀଟିଏ ଯିଏ ତା ଜଗତରେ ବାସ୍ତବ ଜୀବନରେ ସବୁ ମତେ ତାଆରି ଉପରେ ନିର୍ଭର କରିଥାଏ । ଲିସା ଭାବେ, ତା ସାଙ୍ଗମାନେ ଯେଉଁଭଳି ରହିଛନ୍ତି ସେ କାହାରିଠାରୁ କିଛି କମ୍ ନୁହେଁ ତ, ସମାଜରେ ପ୍ରତିଷ୍ଠାରେ ଅବା ଧନ ସମ୍ପଦରେ ।

ଏଲି ଭାବେ, ନିଜକୁ ଜଗତର ସବୁଠୁ ସଭ୍ୟ ବୋଲି ମନେକରୁଥିବା ଜାତିର ଶିକ୍ଷିତା ସେ ନାରୀଟିଏର ଆତ୍ମସନ୍ତୁଷ୍ଟି ଏଇ ଗରିବ ପଛୁଆ ଅଞ୍ଚଳରୁ ଫରକ କ'ଣ । ସଫଳକାମ ପୁରୁଷଟିର ଆତ୍ମପରିଚୟରୁ ଭାଗନେଇ ସମାଜରୁ ସ୍ୱୀକୃତି ପାଇବା ହିଁ ତାର ସମୁଦାୟ ଆକାଂକ୍ଷା ଓ ସୁଖ । କେମିତି ଅନୁଭବ ହୋଇଥିବ ସେ ସ୍ତ୍ରୀଟିର ଯେବେ ସେ ଶୁଣିଥିବ ଯେ ବିଧୂ ନାୟକ ପୁଣି ଦିନେ ପଛରେ ଛାଡ଼ି ଆସିଥିବା ସେଇ ଅଞ୍ଚଳର ଝିଅଟିଏକୁ ବାହାହେଲେ, ହେଉପଛକେ ଲିସା ସାଙ୍ଗେ ଛାଡ଼ପତ୍ର ପରେ ? ଲିସାର ଶିକ୍ଷା, ସଭ୍ୟତା ପୁଣି ଆତ୍ମତ୍ୟାଗ, ଆଦର୍ଶ ପତ୍ନୀ ହେବାଲାଗି ସାଧନାର କି ଫଳ ମିଳିଲା ?

ଛୋଟିଆ ଝିଅଟି ଥିଲା ଏଲି, ଏତେ ଅନୁଧ୍ୟାନ କରିବା ତ ଶିଖି ନଥିଲା, ହେଲେ କଷ୍ଟ ପାଉଥିଲା ବାପା ମା'ଙ୍କ ଭିତରେ ଏ ଅମେଳ, ଟଣା ଓଟରା ହେଲେ । ମାଆର ସେତେବେଳେ ସାଧନା ଦେଖିଲେ ଏଲିର ଦୁଃଖ ହୁଏ, ଦୟା ହୁଏ, କାଇଁକିନା ସେ ଜାଣେ ମାଆ ନିଜକୁ ବାଧ୍ୟ କରୁଚି ଏ ନାଟକ କରିବାକୁ । ମନ ତାର ନାହିଁ କରୁଚି, ସେକଥା ତା ମୁହଁରୁ ପଢ଼ିପାରେ ଏଲି ।

ସେଇ ମା କୋର୍ଟରେ ଆକ୍ଷେପ କରିଥିଲା ତା ସ୍ୱାମୀ ବିରୁଦ୍ଧରେ, 'ଏ ଲୋକଟି ଆରମ୍ଭରୁ ମୋତେ ଭଣ୍ଡି ଆସିଚି । ମିଛ କହି ମୋତେ ନିଜ ସୁବିଧା ମତେ ବ୍ୟବହାର କରିଚି । କହିଥିଲା ତାର ପରିବାର ଉଚ୍ଚ ଶିକ୍ଷିତ ବୋଲି, ଏମିତି କି ଉଚ୍ଚ ବର୍ଗର ଅଭିଜାତ ବୋଲି । ସବୁ ମିଛ । ଜଙ୍ଗଲୀ ବର୍ବର ଲୋକ ଗୁଡ଼ିଏ ହେଉଚନ୍ତି ତା ପରିବାର, ଗରିବ ଅନୁନ୍ନତ ଗୋଟିଏ ଜାଗାକୁ ମୋତେ ସେ ନିଏ । ଛୁଟି କଟେଇବାକୁ ମୁଁ ଯାଏ ନାଇଁ ଯେ କଳା ପାଣି ଦଣ୍ଡ ଭୋଗିବାକୁ ଯାଏ, ସେ ମୂର୍ଖ ଅସଭ୍ୟଙ୍କ ଅଦଉତି ସହିବାକୁ ।'

କାନ୍ଦି କାନ୍ଦି ଆହୁରି କହିଥିଲା ଲିସା, 'ଲୋକଟିକୁ ସନ୍ତୁଷ୍ଟ କରିବାକୁ, ମୋ ପିଲାଙ୍କ ଲାଗି ପରିବାରଟିକୁ ବଞ୍ଚାଇବାକୁ ମୁଁ କ'ଣ ନକରିଚି । ତା ଦେଶକୁ ଯାଇ ମୋତେ ବିନା ଜୋତାରେ ଲଙ୍ଗଳା ପାଦରେ ଚାଲିବାକୁ ହୁଏ, ଚଟାଣ ଉପରେ ବସି ମସଲା ରାଗ ଖାଦ୍ୟ ମୋତେ ହାତ ଆଙ୍ଗୁଠି ପାପୁଲି ଦେଇ ବିନା ଚାମଚରେ ଖାଇବାକୁ ହୁଏ । ମୋ ପେଟ ଜଳୁଥାଏ ସେ ଖାଦ୍ୟରେ, ଦିନ ଦିନ ଧରି ମୋ ପେଟ ଖରାପ ହୁଏ । ଏଠିକି ଆସିବି ବହୁ ଔଷଧରେ ମୁଁ ସବୁଦିନିଆ ପେଟ ରୋଗୀ

ପାଲଟିଯାଇଚି । ତା ବନ୍ଧୁ ବାନ୍ଧବଙ୍କୁ ଖୁସି କରିବାଲାଗି ଜଣ ଜଣ କରି ଉପହାର ନେଇ ଯାଏ ମୁଁ । ମୋ ପିଲାଙ୍କୁ ଚର୍ଚ୍ଚକୁ ନ ନେଇ ତାର ବିଚିତ୍ର ଅଦ୍ଭୁତ୍ ମୂର୍ତ୍ତିମାନଙ୍କୁ ପୂଜା କରିବାକୁ ହୁଏ ମୋତେ ସେଥିରେ ବି ମୋତେ ସମାନ ଅଧିକାର ନଦେଇ ହୀନ ବ୍ୟବହାର କରାଯାଏ, କଣ ନା ମୁଁ ବିଧର୍ମ । ମୋର ସାରା ଜୀବନର ଏତେ କଷ୍ଟ ସ୍ୱୀକାର ଓ ତ୍ୟାଗର ବଦଳରେ ସେ ମୋତେ ଦେଇଚି କଣ ପଚାରନ୍ତୁ । ଠକିଚି ମୋତେ ସଂପର୍କରେ ବି, ଅନ୍ୟ ସ୍ତ୍ରୀଙ୍କ ପାଖକୁ ଯାଇଚି ନିର୍ବିକାରରେ । ନିର୍ଲଜ୍ଜ ଭାବେ ସ୍ୱୀକାର କରିଚି, ଗର୍ବ କରିଚି ସେଥିଲାଗି । ପଚାରନ୍ତୁ ତାକୁ ।'

ଏତେ କ୍ଷୋଭ, ଏତେ ତିକ୍ତ ହାହାକାର ଫୁଟିଥିଲା ସେ ସ୍ୱରରେ, ସେ ମୁହଁ ଭାବଭଙ୍ଗୀରେ ସେ ସ୍ୱାଭାବିକ ଭାବେ ଜୁରି ସମସ୍ତେ ଦ୍ରବିଭୂତ ହୋଇ ପଡ଼ିଥିଲେ । ମାଆର ପକ୍ଷ ନେଇ ଏଲି କହିଥିଲା କୋର୍ଟରେ, 'ହଁ, ସତ କହୁଚି ମୋ ମା । ମୋ ବାପା ଅମଣିଷ । ନିଷ୍ଠୁର । ସ୍ୱାର୍ଥପର ସବୁଦିନେ ।'

ଆଜି ଏତେଦିନକେ ବାହାରିଚି ସେ, ଖୋଜିବ ଚିହ୍ନିବ ବୋଲି ଯେ ତା ବାପାର କେଉଁ ଛବିଟି ସତ । କେଉଁ ସ୍ମୃତିର ମଣିଷଟି, ତାର କୋମଳ ପିଲାଦିନର, ଉତ୍କ୍ଷିପ୍ତ କୈଶୋରର, ନା ବୟସ୍କ ଏକାକୀ ଜୀବନର ।

ମା ଯେତେବେଳେ ନିଜ ଜୀବନକୁ ସଜାଡ଼ିନେଲେ, ନୂଆ କରି ଘର ତିଆରିବାକୁ ସାହସ କଲେ, ଏଲିକୁ ଏକପ୍ରକାର ଆଶ୍ୱସ୍ତ ଲାଗିଥିଲା । ହେଲେ ଦୋହଲି ଯାଇଥିଲା ସେ, ଅନାହୁତ ଯେତେବେଳେ ବାପାଙ୍କ କାଗଜପତ୍ର, ଚିଠିସବୁ ମା' ତାଆରି ଜିମାରେ କରିଦେଲେ । କହିଲେ, 'ଏସବୁ ନଷ୍ଟ କରିନଥିଲି ରେ ମା । କାଇଁକି ରଖିଥିଲି କେଜାଣି । ତୋ ବାପା ଆମ ସମସ୍ତଙ୍କୁ ପର କରିଦେଲେ ସିନା, ତମେମାନେ କାଇଁକି ମୋ ସାଥିରେ ମିଶି ତାଙ୍କର ଗୋଟାଏ ଅସୁନ୍ଦର ଛବିକୁ ଆଖି ଆଗରେ ରଖିବ ସବୁଦିନ । କେଜାଣି ବୋଧେ ତାଙ୍କଠୁ ଦୂରେଇ ଯିବାକୁ ସୁବିଧା ହେବ ବୋଲି ମୁଁ ବି ବାଧା ଦେଲିନାଇଁ । ତେବେ ତୁ ତ ଜାଣୁ ମା, ସେତେ ଅମଣିଷ ନଥିଲେ ତୋ ବାପା ।'

॥୧୩॥

ଗୋଟିଏ ଛୋଟ କାଠ ବାକ୍ସ ଭର୍ତ୍ତି ଚିଠିପତ୍ର ଥିଲା ତା ବାପାଙ୍କର । ସିଏ ମାଆଙ୍କୁ ଦେଇଥିବା କିଛି ଚିଠି, ଆଉ ଇଣ୍ଡିଆରୁ ତାଙ୍କ ପାଖକୁ ଆସୁଥିବା ପରିବାର ଲୋକଙ୍କ, ବନ୍ଧୁ ବାନ୍ଧବଙ୍କ ଚିଠି । ଆଉ କେତେଟା ଚିଠି ବି, ଯାହା ସେ ମାଆଙ୍କୁ ଲେଖିଥିଲେ, ଛାଡ଼ପତ୍ର ପରେ । ૧

ଚିଠିବାକ୍ସ ଟି ଏଲିର ହାତକୁ ଆସିଲା ଯେତେବେଳେ, ପୁରା ଦିନ ଗୋଟାଏ ଆଉ ରାତି ସାରା କୁଆଡ଼େ ନଯାଇ କିଛି କାମ ନକରି ଏଲି ବସି ବସି କେବଳ ବାପାଙ୍କ ପୁରୁଣା ଚିଠିମାନ ପଢ଼ିଥିଲା । କଫି କପେ ପିଇଦେଇ କି ସାଣ୍ଡୱିଚ୍ ଟାଏ ଖାଇଦେଇ । କବାଟ ଦୁଆର କିଳିଦେଇ, ଏକୁଟିଆ ।

ସେଇ ବ୍ୟକ୍ତିଟି ବିନା ଜୀବନ ର ଅସ୍ତିତ୍ୱ ହିଁ ନଥିଲା ପିଲାଦିନେ । ପୁଣି ବଢ଼ି ଆସିଲା ବେଳେ ତା ଇଚ୍ଛାରେ ଏଲିର ଜୀବନ ଏଭଳି ପରିଚାଳିତ ହେଲା ଯେ ଏକ ସମୟରେ ମନେହେଲା ଅସହାୟ ଝିଅଟି ଏଲି ନିଶ୍ୱାସ ରୁନ୍ଧିହେଇ ମରିଯିବ ବୋଲି । ତେଣୁ ସବୁ ଶକ୍ତି ଦେଇ ଏକାବେଳକେ କାଢ଼ି ଫିଙ୍ଗିଦେଲେ ତାକୁ ମାଆ ସଙ୍ଗେ ମିଶି ଭାଇ ଭଉଣୀ ଦିହେଁ । ସେଇ ତାର ବାପା ପୁଣି ଫେରିଆସିଥିଲେ ତା ଜୀବନକୁ ପୁରୁଣା ଚିଠି ସବୁ ଦେଇ । ତାକୁ ଘେରିଯାଇ ଆବୋରି ପକାଇଥିଲେ ଗୋଟିପଣେ । ଦୁଃଖ ନୁହେଁ, ଗ୍ଲାନି ନୁହେଁ, ଦୟା ନୁହେଁ, ସବୁ କିଛିକୁ ଟପିଯାଇ କେଉଁ ଭାବଟିଏ ଆଡ଼କୁ ସେ ସୂଅପରି ଟାଣି ହେଇଯାଉଥିଲା କେଜାଣି ଗୋଟି ପରେ ଗୋଟି ସେଇ ଚିଠି ସବୁକୁ ହାତକୁ ନେଇ । ଆକତା ମାକତା ଉର୍ଦ୍ଧ୍ୱଶ୍ୱାସ ହେଇପଡୁଥିଲା, ତଥାପି ଜାବୁଡ଼ି ଧରିଥିଲା ତାକୁଇ ।

ସବୁ ଚିଠି ପଢ଼ା ସରିଲା ପରେ, ସେଥିରୁ ଅନେକ ଦୁଇତିନିଥର ପଢ଼ାସରି ତାରିଖ ଦେଖି ସଜଡ଼ା ହେଇ ବନ୍ଧା ସରିଲା ଯେତବେଳେ, ରାତି ତିନିଟା ହେଇଥାଏ । ସବୁ ଯାକ ବାକ୍ସଟିରେ ଯଥାବିତ୍ ରଖିଦେଇ ସାରିଥାଏ ସେ । ଆଉ ଗ୍ଲାନି କୋହ ନଥାଏ । ହାତରେ ଥାଏ କେବଳ ଗ୍ରୀଟିଂ କାର୍ଡଟିଏ, କାହ୍ନୁର ଫଟୋ ବାପାଙ୍କ ସାଙ୍ଗେ । ତା ସାବତ ଭାଇ, ଯାହାର ଅସ୍ତିତ୍ୱ ବିଷୟରେ ସେ ଜାଣି ନଥିଲା ଏଇ ତିନିଦିନ ତଳ ଯାଏଁ । ସେଇ ଦିନକ ନୁହେଁ, ଅନେକ ଦିନ ଧରି ସେ ଚିଠିମାନ ଏଲିକୁ ଘେରି ରହିଥାନ୍ତି । କାମରୁ ଘରକୁ ଫେରି ସେ ସବୁ ଚିଠିମାନ ନେଇ ବସେ । ଫଟୋମାନ ଖୋଲି ଦେଖେ । କେବେ ଦେଖିନଥିବା ସାନ ଭାଇଟି ଥିବା କାର୍ଡଟି ଅଲଗା ଥାଏ ତା ଟେବୁଲ୍ ଉପରେ ।

ବବ୍ ଯାଇ ନ୍ୟୁୟର୍କରେ ଅଛି । କୋଉ ସଙ୍ଗୀତ ଦଳରେ, ଚିଠି ଦିଆନିଆ ହୁଏ ଇମେଲ୍‌ରେ । ଆରେଇ ଯାଇଚି ବବି ନିଜ ନୂଆ ଜୀବନକୁ । ଏଲିର କଦବା ଲମ୍ୱା ଇମେଲ୍‌ର ଉତ୍ତର ସେ ଲେଖେ ସାନ କେଇ ଧାଡ଼ି ମେଲ୍, 'ଜୀବନ ତ ଏମିତି ରେ ଏଲି । ଯେତେବେଳେ ଯେମିତି ଦିନ ଆସୁଚି, ନିଜକୁ ଖାପ ଖୁଆଇ ନେଇଯା । ନହେଲେ କଷ୍ଟ ପାଇବା ସାର ।'

ଏମିତି ବୟସ୍କ ମନ ବବି କେଉଁଠୁ ପାଇଥିଲା କେଜାଣି । ବାପାଙ୍କ ଗୀତ ସଉକରୁ ସଙ୍ଗୀତକୁ ଆପଣେଇନେଲା ସେ । ଏତଭେଞ୍ଚର ପୂର୍ଣ୍ଣ ତା ଜୀବନ, ଗତ କାଲିକୁ ଅନେଇବାକୁ ସେଠି ସମୟ ନାହିଁ ।

ମା ସାଙ୍ଗରେ ଇମେଲ୍, ଫୋନ । ମାଆ ବି ଏବେ ଅନ୍ୟ ଏକ ଉପଗ୍ରହରେ । ବହୁତ କିଛି ଆଉ ତା ସାଙ୍ଗେ ଭାଗବଣ୍ଟା ହେଇ ପାରେନି । ସବୁ ସ୍ନେହ ସମବେଦନା ପରସ୍ପର ଲାଗି ଥାଇବି ।

ଈଶ୍ୱରନ ଚାଲିଯାଇଥିଲା, ଫେରିବାର ବାଟ ଆଉ ନଥିଲା । ବାହାହେଇ ଘରସଂସାର କରିସାରିଥିଲା ସେ ନିଜ ଦେଶରେ ।

ଏକୁଟିଆ ହେଇଗଲା ବେଳେ, କାଠବାକ୍ସ ଚିର କାଗଜ ମାନଙ୍କରୁ ଏକ ନୂଆ ବ୍ୟକ୍ତିକୁ ଜାଣିଲା ଏଲି । ବାପା ବୋଲି ଯାହାକୁ ସେ ଜାଣିଥିଲା ଏ ଯାକେ, ପୁଣି ଜୀବନରୁ ପୁରା କାଟି ବାହାର କରିଦେଇଚି ବୋଲି ଭାବୁଥିଲା, ଇଏ ସେଇ ନୁହେଁ ।

ଦିନ ଯାଉ ଯାଉ ଏଲି ମନକୁ ଆସିଲା ଏଇ ଇଚ୍ଛାଟି, ଯେ ପିଲାଦିନର ଛୋଟିଆ ସହରଟିକୁ ଯାଇ ବାପାଙ୍କ ଛବିକୁ ଖୋଜାଯାଉ । ଅନ୍ତତଃ ଏ ଶୃଙ୍ଖିଳା ନୀରସ ଜୀବନରେ ଗତୁଟିଏ ବଦଳୁ । ସରୁ ଝରଣା ପରି ଜନ୍ମ ନେଇ ଇଚ୍ଛାଟି ତାର ବଢ଼ି ବଢ଼ିଗଲା ଏମିତି ବିସ୍ତର ନଦୀଟିଏ ପରି ଯେ, ଦିନ କ'ଣ ରାତି କ'ଣ ସବୁ କାମ ଧନ୍ଦା ଭିତରେ, ଗପସପ ନିଦ ଦକ ଭିତରେ ଇଚ୍ଛାଟି ଆସି ଚମକି ଯାଉଥାଏ ତା ଭିତରେ । ତା ସଂଗେ ସଂଗେ ଯାବତୀୟ ଯୋଜନା, ଦଶବର୍ଷ ବୟସରେ ଛାଡ଼ିଆସିଥିବା ସହରଟିକୁ ଯିବାଲାଗି ପରିକଳ୍ପନା ।

ଛୋଟିଆ ଦମ୍ଭିଲା ସହରଟିଏ, କୋଉ କାଳର ଶିଉଳୀ ଲଗା ପରମ୍ପରା ଘୋଡ଼େଇହେଇ ବଞ୍ଚୁଥିବା ଦେଶଟିର କେଉଁ ଦୂରନ୍ତ କୋଣର ଘରଟି । ସେଇଠିକି ତାର ଯିବା ଦରକାର । ନିହାତି ।

ପହଞ୍ଚି ଦେଖୁଚି ଏବର ସହରଟି ଚିହ୍ନା ହେଇ ବି ଅଚିହ୍ନା ତାର, ପିଲାଦିନେ ଦେଖିଥିବା ପଦ୍ମଫୁଲ ପରି ବୁଜି ହେଇଯାଇଚି ସତେବା ସୂର୍ଯ୍ୟାଲୋକ ଅଭାବରେ । ତାକୁ ପାଛୋଟି ନେଉଚି ନୂଆ ସହରଟିଏ, ନୂଆ ଲୋକବାକ, ଭିନ୍ନ ଏକ ଜୀବନର ଅଂଶ ହେଇଯାଉଚି ସେ । ଯାହା ଯେତେ ପ୍ରଶ୍ନ ସବୁ ଉହ୍ୟ ହେଇ ରହିଥିଲେ ତା ମନଭିତରେ ଗୋଟିଗୋଟି ସବୁ ବେକ ଉଣ୍ଡି ତା ସାମ୍ନା କୁ ଆସୁଚନ୍ତି, ଉତ୍ତର ମାଗୁଚନ୍ତି, ଏକୁଟିଆ ପାଇଲାକ୍ଷଣି ।

॥୧୪॥

ଗତକାଲି ବରଗଡ଼, ବରପାଲି ପାଖ କୁଷ୍ଠରୋଗୀଙ୍କ ପୁନର୍ବାସ ଗ୍ରାମସବୁ ଦେଖିବାକୁ ଯାଇଥିଲା ଏଲି । ସାଙ୍ଗରେ ଥିଲା ସ୍ୱେଚ୍ଛାସେବୀ ସଂସ୍ଥାର ସୁମନ୍ତ ପୂଜାରୀ । ବୟସରେ ତାଠୁ ପାଞ୍ଚ ସାତ ବର୍ଷ ସାନ ହେବ । ଅନେକ ଦିନୁ କାମ କରୁଚି ସେ ଏଇ ବିଷୟଟିରେ । ଏଲିକୁ ଅସୁବିଧା ହେଉନାହିଁ ଆବଶ୍ୟକ ମତେ କାମ କରିବାକୁ । ସପ୍ତାହେ କାଳ ଏକାଠି କାମ କରିବା ପରେ ପ୍ରଥମେ କରି ସୁମନ୍ତ ପଚାରିଥିଲା, 'ଆପଣ ତ ବିଧୂ ନାୟକଙ୍କ ଝିଅ ନା ?'

ଏଲି ହସି କହିଲା, 'ତମକୁ ତ ଆଗରୁ ଜଣାଥିବ, ପଚାରୁଚ କାଇଁକି ?'

'ଏ କାମରେ କାଇଁକି ପଶିଲେ ? କେବଳ ବାପ ଜେଜେଙ୍କ ଜାଗାଟି ଦେଖିଯିବା ଲାଗି ଆଇଟିଏ ଦରକାର ଥିଲା ବୋଲି ?'

ଏଲି ଦେଖିଲା, ସୁମନ୍ତର ମୁହଁରେ ବ୍ୟଙ୍ଗ ନଥିଲା । କିନ୍ତୁ ଗତ କେତେଦିନରେ କେବେ ଦେଖିନଥିବା କଠୋର ଭାବଟିଏ ଥିଲା । କହିଲା, 'ଖାଲି ଆଇ ବୋଲି କହିବା ଠିକ୍ ହେବନାହିଁ ସୁମନ୍ତ । ଏଠିକି ଆସିବାର ମୋର ଥିଲା, ତେବେ କିଛି ଗୋଟାଏ କରିବାକୁ ବି ଚାହେଁ ମୁଁ, ଏଠିକା ଲୋକଙ୍କ ଲାଗି । କ'ଣ କରିବି, କେମିତି, ସେ ବାଟ ଏଯାଏଁ ମୋତେ ମିଳିନାହିଁ ।'

ସୁମନ୍ତ ମୁହଁର କଠୋର ଭାବଟି ଅପସରି ଗଲା । ଢାବାର ଖୋଲା ସଡ଼କ କଡ଼ରେ ବସି ଚା' ପିଇଲେ ଦିହେଁ, ପାଖ ଗାଁରୁ ଭାସି ଆସୁଥିବା କେଉଁ ଉତ୍ସବର ସମବେତ ନାରୀକଣ୍ଠ ଆଉ

ମୃଦଙ୍ଗ ବାଜା ଶୁଣିଲେ । ସୁମନ୍ତ କହିଲା, 'ସତ କହିଲେ ମୁଁ ବି ଖୋଜୁଚି ବାଟ ଟିଏ । ଏ ଯାଏ ପାଇଚି ବୋଲି କହିପାରିବି ନାହିଁ ।'

ସକାଳୁ ଏଲି ୱାକ୍ ରୁ ଫେରି ବସିଚି ବାହାର ବାରଣ୍ଡାରେ । ସକାଳ ଖରା ଏଠି ଡେରୀରେ ଆସେ, କାନ୍ଥ ହୁଏ ପାହାଡ଼ । ରୋଷେୟାଟି ଛୁଟିରେ ଯାଇଚି । କହିଯାଇଚି, ସବୁକଥା ଫ୍ରିଜ ରେ ଅଛି ଦିଦି, ଚଳେଇନେବେ ଦିନ ଦିଇଟା । ଗୋଟିଏ ନୁହେଁ, ଅନେକ କଥା ଚଳେଇନେବାକୁ ହୁଏ ଏଠି । ଆଗରୁ ମନକୁ ପ୍ରସ୍ତୁତ କରିଥିଲେ ବି ଚଳିବା ସହଜ ହୁଏନାହିଁ । ପାଇଖାନା ଫ୍ଲଶ୍ କାମ କରୁନାହିଁ । ମରାମତି କରି ଯାଏ ଜଣେ, ପରଦିନ ପୁଣି ଯେଉଁ କଥାକୁ ସେଇ କଥା । ଗେଷ୍ଟ ହାଉସର ଅତିଥି କୋଠରୀ ମାନଙ୍କରେ ୟୁରୋପୀୟ କମୋଡ଼, ବାଲଟିଏ ଲେଖାଁ ପାଣି ଟେକି ଅଜାଡ଼ିବାକୁ ହେବ । ଆଜି ଏଲି ପଛପାଖେ ରୋଷେୟାର ପାଇଖାନା ବ୍ୟବହାର କରିଚି । ତାକୁ କହିଚି ଏଲି ନେହୁରା ହେଇ ପ୍ରାୟ ଅନୁମତି ମାଗିଚି । ଫଳରେ ପିଲାଟି ବିଚରା ଖୁବ୍ ପରିଶ୍ରମ କରି ନଡ଼ିଆ କତାରେ ଘଷି ସଫା କରିଚି ପାଇଖାନାଟିକି ।

ଛୁଟିଦିନଟି ପୁରା ଅଛି ହାତରେ । ସକାଳ ଆଠଟା ମାତ୍ର ବାଜିଚି । ପାଖ ଝିଅ ହଷ୍ଟେଲରୁ ଦଳଟିଏ ବାହାରିଛନ୍ତି କୁଆଡ଼େ ସଜବାଜ ହେଇ, ବସ୍‌ରେ ଯିବେ ସମ୍ବଲପୁର । ନୀନା କହୁଥିଲା, ସେଇ ତାଙ୍କର ଛୁଟିଦିନର ପ୍ରୋଗ୍ରାମ ବୋଲି । ସେମାନେ ବଜାର ବୁଲିବେ, ସିନେମା ଦେଖିବେ, ପୁଣି ସମଲେଶ୍ୱରୀ ଦର୍ଶନ କରି ଭୋଗ ନେଇ ଫେରିବେ । ରାସ୍ତାକୁ ଉଠି ଟିକିଏ ଠିଆହେଇଗଲେ ଜଣକେତେ, ସେଥିରୁ ଦିଜଣ ଏଠିକି ମୋହିଁଲେଣି । ଜିନ୍ ଉପରେ ସାର୍ଟ ପିନ୍ଧିଛନ୍ତି ଦିହେଁ, ଛୋଟ କରି କଟା ବାଳ ।

'ଗୁଡ ମର୍ଣ୍ଣି ମାଡାମ୍ । ଦିହିଁଙ୍କ ମୁହଁରେ ବନ୍ଧୁତାର ହସ, ପାଖକୁ ଆସି ଇଂରାଜୀରେ କହିଲେ, 'ଆପଣ ଏଠି ରହୁଚନ୍ତି ଏକୁଟିଆ । କେମିତି ରହୁଚନ୍ତି ଟିକେ ବୁଝିବାକୁ ଚାଲିଆସିଲୁ ।'

ଆର ଝିଅଟି କହିଲା ଆଉଟିକିଏ ବିଲାତୀ ଉଚ୍ଚାରଣରେ, 'ଆମର ଦେଖାହେଇଥିଲା ଲାଇବ୍ରେରୀ ରେ, ମନେଅଛି ଆପଣଙ୍କର ?'

'ନିଶ୍ଚୟ । ବସ ବସ, ଯା ହେଉ ଆସିବାକୁ ମନକଲ, ଖୁସିଲାଗୁଚି ମୋତେ ।'

ଏଲି ବୁଝିପାରୁଥିଲା, ଯେଉଁମାନେ ଭଲ ଇଂରାଜୀ କହିପାରନ୍ତିନି, ତା ସାଙ୍ଗେ କଥାବାର୍ତ୍ତା କରିବାକୁ ସାହସ କରିପାରନ୍ତିନି ।

'ଆପଣ କାଳେ ଭାରତୀୟ ବୋଲି ଶୁଣିଲୁ । କ'ଣ ବହୁତଦିନୁ ବାହାରେ ରହିଯାଇଚନ୍ତି ?'

'ଅଧା ଭାରତୀୟ କହିପାର । ବିଲାତରେ ରହିଯାଇଚି । ପିଲାଦିନେ ଓଡ଼ିଶାରେ କିଛିଦିନ କଟାଇଚି ବି ମଝିମଝିରେ ।'

ଝିଅ ଦିହେଁ ଅନାଅନି ହେଲେ । ତେବେ ଦଶବର୍ଷ ତଳେ ଏ ଦିହେଁ ସାନପିଲା ଥିବେ, ବିଧୂ ନାୟକଙ୍କୁ ଜାଣିନଥିବେ ଜମାରୁ ।

ଏଲି ବୁଝେଇଲା ଏଠି ଥିବା ତା କାମ । କହିଲା, 'ମୋତେ ଏଞ୍ଜେଲ୍ ବୋଲି ଡାକ ।'

'ଯା ହେଉ ଦ୍ୱିତୀୟ ପିଢ଼ୀର ଭାରତୀୟ ହେଇବି ଆପଣ ନିଜ ସଂସ୍କୃତି ସଙ୍ଗେ ସଂପର୍କ ରଖିବାକୁ ଚାହୁଁଛନ୍ତି । ସାଧାରଣ କଥା ନୁହଁ ।'

ଆଉ ଝିଅଟି ପତ୍ରକାରିତା ଠାଣୀରେ ପଚାରିଲା, 'ଯାର କାରଣ କଣ ?'

ଏଲି ହସିଲା, କହିଲା, 'କିଛି ନୁହଁ । ଭାରତକୁ ଜାଣିଚି ବୋଲି ଏଇଠି ସାମୟିକ କାମଟିଏ କରିନେଲି, ଏଇ ବାହାନାରେ ବୁଲାବୁଲି ବି ଟିକେ ହେଇଯିବ ଆଉ କ'ଣ । ଖାଲି ଟୁରିଷ୍ଟ ହେଇ ଆସିଲେ ବହୁତ ସମୟ ଦରକାର, ଚାକିରୀରୁ ଛୁଟି, ପୁଣି ପଇସା, ନା ନୁହେଁ ?'

ଝିଅ ଦିହେଁ ଖୁସି ଦେଖାଗଲେ ଏ ସହଜ ଅମାୟିକତାରେ । ଏଲି ନିଜେ ପ୍ରଶ୍ନ ଅଜାଡ଼ିଲା ଏଥର, 'କ'ଣ ପଢୁଚ ? ଏଠିକା ହଷ୍ଟେଲ ମୁଁ ଦେଖିନାଇଁ କେବେ, ଜାଣିବାକୁ ଇଚ୍ଛା ଅଛି କେମିତି ତମର ହଷ୍ଟେଲ ଜୀବନ ।'

ଦିହେଁ ହଷ୍ଟେଲ ଦେଖାଇବାଲାଗି ଉତ୍ସାହ ଦେଖାଇଲେ, ନୀନା କହିଲା, 'କିନ୍ତୁ ଏଞ୍ଜେଲ୍, ଆଜି ଆମେ ବୁଲିବାକୁ ବାହାରିବୁ । ତମର ଯଦି ବିଶେଷ କିଛି କାମ ନାଇଁ ଆସୁନ ଆମ ସାଙ୍ଗେ ବୁଲିଆସିବ । କାର୍ ରେ ନୁହେଁ, ସରକାରୀ ବସ୍ ଯାତ୍ରା କେମିତି ତା ବି ଜାଣିବ । ତମକୁ ବଜାର, ମନ୍ଦିର ସବୁ ବୁଲାଇ ଦେଖାଇଦେବୁ ।'

ଏଲି ମନକୁ କଥାଟି ପାଇଲା । ସେ ଦିହେଁ କହିଲେ, 'ଆପଣ ତିଆର ହେଇଯାନ୍ତୁ, ଆମେ ଆସୁଚୁ ଅଧଘଣ୍ଟା ଭିତରେ, ହଷ୍ଟେଲ ସୁପରିଟେଣ୍ଡେଣ୍ଟଙ୍କ ଠୁ ଅନୁମତି ନେଇ ।'

ଉଠୁ ଉଠୁ ଖାଲି ରାସ୍ତାକୁ ଅନେଇ ଏଲି ପଚାରିଲା, 'ସେଇଠି ଯୋଉ ତମ ସାଙ୍ଗମାନେ ଥିଲେ କେଇଜଣ, ସେମାନେ ବି ସାଙ୍ଗରେ ଯିବେ ?'

ଦିହେଁ ଏଥିରେ ଅନାଅନି ହେଇ ହସିଲେ ତୁହାଏ । ଗୁପ୍ତକଥାଟିଏ କହିଲା ପରି ସ୍ୱର ଟିକିଏ ନୁଆଇଁ ସୀମା କହିଲା, 'ସେ ଦୁହେଁ ଆଜି ତାଙ୍କ ବଏଫ୍ରେଣ୍ଡଙ୍କ ସାଙ୍ଗେ କଟାଇବେ । ତାଙ୍କ ଲାଗିବି ଆମେ ଅନୁମତି ପତ୍ର ନେଇ ଯାଇଚୁ । ଆରଥରକୁ ସେମାନେ ଆମକୁ ସାହାଯ୍ୟ କରିବେ ।' ଆଉରି ତୁହାଏ ହସ ।

ଏମିତି ସୁଯୋଗଟିଏକୁ ଅପେକ୍ଷା କରିଥିଲା ଯେପରି ସେ । ଜଳଖିଆ ସାରିଦେଇ କ୍ୟାମେରା ଆଉ ସାନ ବ୍ୟାଗ୍‌ଟି ନେଇ ବାହାରି ପଡିଲା ଏଲି ରାସ୍ତା ଉପରକୁ । ଟିକିଏ ପରେ ବସ୍‌ଷ୍ଟାଣ୍ଡକୁ ଗଲାବେଳେ ଏଲି ନପଚାରି ରହିପାରିଲାନି, 'ଆଚ୍ଛା ସେ ଯେଉଁ ଝିଅ ଦି ତିନିଜଣ, ତାଙ୍କ ବଏଫ୍ରେଣ୍ଡ ମାନେ ସାଙ୍ଗରେ ଦିଶୁନଥିଲେ ତ ?'

'ଏଠି କେମିତି ଦିଶିବେ ? ଏକାଠି ବାହାରିଲେ ହାଷ୍ଟଲ୍ ୱାର୍ଡେନ ଦେଖିବେନି ?'

'ଦେଖିଲେ ?'

'ଅନର୍ଥ ହେବ । ତେବେ ଝିଅ ଅଛନ୍ତି ଏଠି, ସେମାନେ ଛାତି ଫୁଲାଇ ଏଇଠି ରାସ୍ତାରେ ବି ଚାଲନ୍ତି ତାଙ୍କ ବଏଫ୍ରେଣ୍ଡଙ୍କ ସାଙ୍ଗେ । କାଇଁକିନା ଘରେ ଜାଣିଲେ ବି ତାଙ୍କର ବାପା ମାଙ୍କୁ ଭୟ ନଥିବ ହୁଏତ ।'

'ହଷ୍ଟେଲ ଭିତରକୁ ପୁଅମାନେ ଯାଇପାରିବେନି ?'

'ଭିତରକୁ ? ବାପ୍‌ରେ ବାପ୍ !'

ଏଥର ଜମିକରି ହସ । ଓଲଟା ପ୍ରଶ୍ନ, 'ଆପଣଙ୍କର ସେଠିତ ଆଦୌ କିଛି କଟକଣା ନଥାଏ, ନୁହେଁ ? ଡେଟିଂ କଥା ଆମେ ଜାଣୁ, ସିନେମା ଦେଖୁ ।'

ଏଲି କହିଲା, 'କିନ୍ତୁ ମୋ ପିଲାଦିନ ଅପେକ୍ଷା ଏଠା ଲୋକେ ତ ବହୁତ ବଦଳିଚନ୍ତି ଦେଖୁଚି । ତମ ହଷ୍ଟେଲ ବାହାରେ ବି ଗେଟ୍ ପାଖେ ସବୁଦିନେ କେତେ ପୁଅଝିଅ ଗପ କରୁଥାଆନ୍ତି, ସଞ୍ଜବେଳେ ପାହାଡ଼ ତଳେ ବି ବୁଲିବାର ମୁଁ ଦେଖିଚି । ଆଉ କଟକଣା କ'ଣ ତେବେ ?'

ତୁହାକୁ ତୁହା ହସଭିତରେ ପ୍ରଶ୍ନ ହେଲା, 'ଆପଣ ନିଘା କରୁଥାନ୍ତି ତାହେଲେ । ଓ ଗଡ୍ ! ଆପଣଙ୍କଠୁ ତ ସାବଧାନ ହେବାକୁ ପଡ଼ିବ ।'

'ନିଘା କରିବା କି ଦରକାର । ଏ କ୍ୟାମ୍ପସ୍‌ରେ ତମପରି ତରୁଣ ପୁଅଝିଅଙ୍କ ଛଡ଼ା ଦେଖିବାକୁ ଅଛି ବା କଅଣ ?'

ସରକାରୀ ବସରେ ବସିବା ଏଲି ଜୀବନରେ ଏଇ ପ୍ରଥମ । ତେବେ ବହିରୁ ସିନେମାରୁ ଯଥେଷ୍ଟ ଜାଣିଚି ସେ, କ'ଣ କେତେ ଆଶା କରିବାକୁ ହେବ । ଭାରତୀୟ ଲେଖକଙ୍କ ବହି ମାନଙ୍କରେ ଏତେ ବେଶୀ ଅତିରଞ୍ଜନ ଥାଏ ଯେ ଅନ୍ତତଃ ଯାତ୍ରାରେ ଆଶ୍ଚର୍ଯ୍ୟ ହେବାକୁ ଆଉ କିଛି ବାକି ନଥାଏ ।

ଗୋଟିଏ ତିନିଟିକିଆ ସିଟ୍‌ରେ ନୀନା ଆଉ ସୀମାଙ୍କ ମଝିରେ ବସିଥିଲା ଏଲି । ସୀମା ବୁଝାଉଥିଲା, 'ଏମିତି ଏଠି ସେଠି ପୁଅମାନଙ୍କ ସାଙ୍ଗେ ଟିକେ ଗପିବା କଥା ଅଲଗା । ସାଙ୍ଗ ହେଇ ପଢୁଚୁ ଯେତେବେଳେ, କଥାବାର୍ତ୍ତା ଟିକେ କରିବୁନି ନା କ'ଣ । ତେବେ ବୟଫ୍ରେଣ୍ଡ ସାଙ୍ଗେ ଏକାଠି ସାରାଦିନ ବୁଲିବା, ସିନେମା ଦେଖିବା, ହୋଟେଲ ରେ ଖାଇବା, ଏସବୁ ଭିନ୍ନ ନୁହେଁ ?'

'ଓ୍ୱାର୍ଡେନ୍ ଜାଣିଲେ କ'ଣ କରିବେ ?'

'ଗାଳି କରିବେ । ବାପା ମାଙ୍କୁ କହିଦେବେ । ହଷ୍ଟେଲ ନିୟମ ଭାଙ୍ଗିରେ ବାହାର କରିଦେଇ ପାରନ୍ତି ।'

ଏଲି ବୁଝୁଥିଲା, ହଷ୍ଟେଲକୁ ଫେରିବାର ସମୟ ଥାଏ, ବାହାରେ ରହିବାକୁ ହେଲେ ଅଭିଭାବକଙ୍କ ହାତଲେଖା ଦରଖାସ୍ତ ଦରକାର । ଝିଅ ହଷ୍ଟେଲରେ କେବେ କେମିତି ଜଣେ ଅଧେ ୟୁନିଭର୍ସିଟୀ କର୍ମଚାରୀ ବି ରହନ୍ତି, ବିଶେଷତଃ ଅବିବାହିତ ହେଇଥିଲେ । ଏଲି ପଚାରିଲା ମୁରୁକି ହସି, 'ଓ୍ୱାର୍ଡେନ ଯେବେ ବାପା ମାଙ୍କୁ ଅଭିଯୋଗ କରନ୍ତି, କ'ଣ ବୋଲି କହନ୍ତି, ତମ ଝିଅ ପୁଅଙ୍କ ସାଙ୍ଗେ ମିଶୁଚି ବୋଲି, ନା ହଷ୍ଟେଲ୍ ବାହାରେ ଅସମୟରେ ରହି ନିୟମ ଭାଙ୍ଗୁଚି ବୋଲି ? କୋଉଟା ବେଶୀ ଗରିଷ୍ଠ ଦୋଷ ?'

ତୁହାକୁ ତୁହା ହସ ଭିତରୁ ଉତ୍ତର ମିଳିଲା, 'ମାଡାମ, ଏଠି ଆମ ଇଣ୍ଡିଆରେ ବାହାହେଇ ଝିଅଟିଏ ଯଦି ପୁଅପିଲା ସାଙ୍ଗେ ମିଶେ, ତାଠାରୁ ଗରିଷ୍ଠ ଦୋଷ ତା ଲାଗି ଆଉ କିଛି ନହେଇ ପାରେ ।'

'ବାପା ମା ଏପରି କଥା ଜାଣିପାରିଲେ କ'ଣ ହୁଏ ?'

ଏ କଥାରେ ଦୁହେଁ ଟିକିଏ ଦ୍ୱନ୍ଦ୍ୱରେ ପଡ଼ିଲାପରି ମନେହେଲା, ଦିହିଙ୍କ ଭିତରେ କଥା କଟାକଟି ବି କିଛି ହେଲା, 'ପାଠ ବନ୍ଦ କରିଦେବେ', 'ଶୀଘ୍ର ବର ଦେଖି ବାହା କରିଦେବେ', ଇତ୍ୟାଦି କେତେକ ଉତ୍ତର ମିଳିଲା । ଶେଷକୁ ସୀମା କହିଲା, 'ଦେଖ ଏଞ୍ଜେଲ୍, ଏ ସବୁ ନିର୍ଭର କରେ ବାପ ମା କେତେ ଆଧୁନିକ ବିଚାରର ତା ଉପରେ । ଯେମିତିକି ମୋ ବାପା ମା, ଆଧୁନିକ ବିଚାରର, କିନ୍ତୁ ରକ୍ଷଣଶୀଳ ।'

ନୀନା କହିଲା, 'ସେଇ ଯେଉଁ ଗୋଲଗାଲିଆ ଝିଅଟି ଦେଖିଲ ଆଜି, ଆମ ସାଙ୍ଗେ ବାହାରି ତା ବଏଫ୍ରେଣ୍ଡକୁ ଭେଟିବାକୁ ଗଲା, ତା ନାଁ ହେଉଚି ରାଧିକା । ତା ବାପା ଜଣେ ବଡ଼ ଅଫିସର, ବଡ଼ ହାଇଫାଇ ଲୋକ ।'

'ହାଇଫାଇ ?'

ଦିହିଙ୍କ ହସ । 'ମାନେ ବେଶୀ ଆଧୁନିକ, ପଶ୍ଚିମୀ ରଙ୍ଗଢଙ୍ଗ ଟିକେ ବେଶୀ ତାଙ୍କର । ତେଣୁ ତାର ସାହସ ବେଶୀ, ପୁଅସାଙ୍ଗ ସାଙ୍ଗେ ବୁଲୁଚି, ବାପାକୁ ଡର ନାହିଁ । ଏଣେ ଦେଖିବ, ଏ ଟୋକାକୁ ବାହା ହେବ ନାହିଁ ଜମା, ତା ବାପା ଠିକ୍ କଲା ବରଟାଏ ବାହାହେବ ।'

'କାହିଁକି ଏଠି ବାହାହେବ ନାହିଁ ? ହାଇଫାଇ ଲୋକେ କ'ଣ ପ୍ରେମ ବିଷୟରେ ଥାଆନ୍ତି ?'

'ଓହୋ । ସେ କଥା ନୁହଁ । ହାଇଫାଇ ବାପା ଯାଠୁ ବହୁତ ଭଲ ବର ତା ଲାଗି ଖୋଜି ଦେଇ ପାରିବେ, ଏଭଳି ବିନା ଚାକିରୀ ବାକିରୀବାଲା କଲେଜ ଟୋକାକୁ କାହିଁକି ଜ୍ୱାଇଁ କରିବେ ?'

'ଓ । କିନ୍ତୁ ବାପା ମା ଜାଣିଲେ ବିରକ୍ତ ହେବେ ନା ନାହିଁ ?'

'ହଁ, ବିରକ୍ତ ହେବେ ଅବଶ୍ୟ । ଝିଅ ବଦନାମ ହେଉ ବୋଲି କିଏ ଚାହେଁ ଯେ ?'

ଏଲି ଚିନ୍ତିକରି ତଥାପି ଯୁକ୍ତିକଲା, 'ତଥାପି ତ କିଛି ଝିଅ ଥାଆନ୍ତି ଯେଉଁମାନେ ନିଜ ଇଚ୍ଛା ମତେ ବାହାହୁଅନ୍ତି, ନା ନାହିଁ ?'

'ହଁ, ଥାଆନ୍ତି କେତେକ । ସେମିତି ତାଙ୍କର ବଡ଼ ଜୋର୍ ଲଭ୍ ହୋଇଯାଉଥିବ । କିମ୍ବା ଘରେ ଆକଟ କରିବାକୁ କେହି ନଥିବେ । ସମାଜର ନୀତି ନିୟମକୁ ଭାଙ୍ଗିବା ଲୋକେ ବି କ'ଣ ନଥାନ୍ତି ସବୁଠି ?'

ଏତେମତେ ଜାଣି ବି ଏ ସମାଜର ଚାଲିଚଳଣକୁ ଭଲକରି ବୁଝିପାରିଚି ବୋଲି ଏଲିର ମନେହୁଏ ନାହିଁ । ବିଧୂ ନାୟକଙ୍କ କଥା ଅବଶ୍ୟ ଭିନ୍ନ ହେଉଥିବ । ତାଙ୍କ ଯୁଗରେ ସେ ନିଜେ ବି ହାଇଫାଇ ଘର ପିଲା ହୋଇଥିବେ । ପରିବାରର ଆଶା ଉଚ୍ଚାକାଂକ୍ଷା ନିଶ୍ଚୟ ପ୍ରଚୁର ଥିବ ତାଙ୍କଠାରୁ । ତାଙ୍କ ଦ୍ୱିତୀୟ ପତ୍ନୀ ଜ୍ୟୋତି । ପନ୍ଦର ବର୍ଷ ତଳେ ସେ କରିଥିଲେ ଅସାଧାରଣ ପ୍ରେମ ବ୍ୟାପାର । ସୀମା ଆଉ ନୀନା ଏ ଭିତରେ ଅନ୍ୟ କିଛି ତାଙ୍କର କଥା ହେଉଚନ୍ତି, ଠାରନାରରେ । ହସ, ଆଖି, ହାବଭାବ ତାଙ୍କର କହିଦେଉଚି ।

'ତମେମାନେ ବି ବଏଫ୍ରେଣ୍ଡକୁ ଭେଟିବାକୁ ଯାଉନା ତ ?'

'ଆରେ ନାଇଁ । ହୋଇଥିଲେ ଆମେ ତମକୁ ସାଙ୍ଗେ ଆଣନ୍ତୁ ?'

ନୀନା କହିଲା ସୀମାକୁ ଦେଖେଇ, 'ୟାର ବଏ ଫ୍ରେଣ୍ଡ ଅନ୍ୟ ସହରରେ ରହୁଚି ତ । ଆସିନି ବୋଲି ତା ମନଦୁଃଖ ।'

ସୀମା କହିଲା, 'ଆଉ ୟାର ବିବାହ ଠିକ୍ ହେଇ ସାରିଚି, ତେଣୁ ଆଉ ପ୍ରେମ ଚଳିବନି । ତେଣୁ ଆମେ ଦିହେଁ ସାଙ୍ଗ ହେଇ ବାହାରିଚୁ ।'

ନୀନା ଟିକିଏ ରହି ଧୀର ସ୍ୱରରେ କହିଲା, 'ଏଥର ଆପଣଙ୍କ ବଏଫ୍ରେଣ୍ଡ କଥା କହନ୍ତୁ ।'

'ମୋର ଆପାତତଃ ନାହାନ୍ତି କେହି । ଯିଏ ଗଲା ତା କଥା କହି ଲାଭନାହିଁ ।

ଦିହେଁ ଟିକିଏ ବେଳ ଚୁପ୍‌ହେଲେ । ହଠାତ୍ ସୀମା କହିଲା, 'ଏଠି କେହି ମିଳି ବି ଯାଇପାରେ ତମକୁ, ଅସମ୍ଭବ କ'ଣ ?' ନୀନା କହିଲା ଓଡ଼ିଆରେ, ' ହେଏ ! ଏକୁଟିଆ ହେଲା ବୋଲି ବିଚାରୀ ଏଠିକା ମଫା ଓଡ଼ିଆ ପ୍ରେମିକ କରିବ ନା କ'ଣ ?'

ଏଥର ଏଲି ସେ ଦିହିଙ୍କି ଚମକାଇ ଦେଇ ଜବାବ ଦେଲା ଓଡ଼ିଆରେ, 'କରିପାରେ ହୁଏତ । ଅସମ୍ଭବ ନା କ'ଣ ?'

ନୀନା ଚମକିପଡ଼ି ଜିଭ କାମୁଡ଼ିଲା, ଦିହେଁ ସମସ୍ୱରରେ କହିଲେ, 'ଆପଣ ଓଡ଼ିଆ ଜାଣନ୍ତି ? ଇସ୍ ! ସରି ସରି । କେମିତି ? କେବେ ଶିଖିଲେ ?'

ଏଲି ପ୍ରଶ୍ନର ଉତ୍ତର ଏଡ଼ାଇ ପଚାରିଲା, 'ଏଥର କୁହ, ମୁଁ ଓଡ଼ିଆ କହିଲେ ମୋତେ ଆଉ କୁଆଡ଼େ ସବୁ ବୁଲାଇବାକୁ ନେବ ?'

॥୧୫॥

ସିନେମା ଦେଖା ଆଉ ସେଦିନ ହେଲାନାଇଁ । ସହରରେ ଗଣ୍ଡଗୋଳ । ନୀନାର କିଏ ମାଉସୀ ଜଣେ ଥାଆନ୍ତି, ତାଙ୍କ ଘରକୁ ଯିବାର ଠିକ୍‌ହେଲା । ଏଲି ଠିକ୍‌କଲା ଭାନୁ ପିଉସୀଙ୍କ ଘରକୁ ଯିବ, ହରଓ୍ୱନ୍ତ ସିଂ ଙ୍କ ହୋଟେଲ ତ ଅଛି କିଛି ନହେଲେ । ସହରରେ ତାକୁ ସ୍ୱାଗତ କରିବାର ଆଶା ଥିଲାଭଳି ଏକମାତ୍ର ଘର ଆଗରେ ପହଞ୍ଚି ଏଲି ଦୋଦୋପାଞ୍ଚ ହେଇ ଠକ୍-ଠକ୍ କଲା । ନୂପୁର କବାଟ ଖୋଲୁ ଖୋଲୁ ପାଟିକରି ଡାକ ଦେଇଥା ଭିତରକୁ, 'ଆସ ଗୋ ବୁଢ଼ୀ ମା, ଦେଖ, କିଏ ଆଜି ଆସିଚନ୍ତି ତମ ଘରକୁ ।' ଅଚାନକ ନିଜ ଘରେ ତାକୁ ଦେଖି ଭାନୁ ପିଇସୀ ଏତେ ବେଶୀ ଖୁସି ହେଇଯିବେ ବୋଲି ଏଲି ଆଦୌ ଭାବିନଥିଲା ।

ଉପର ଓଳି ଖରା ନଇଁଆସିଥାଏ, ନୂପୁର ଆସି କହିଲା ଏଲିକୁ, 'ତମକୁ କିଏ ଡାକୁଛନ୍ତି ଗୋ । ବାବୁ ଜଣେ କିଏ ।'

ନୂପୁରର ମୁହଁରେ ସମ୍ଭ୍ରମ ନଥାଇ ଆଉ ଟିକିଏ କଣ ଥିଲା ଭଳି ଦିଶୁଥିଲା, ନାପସନ୍ଦ କଲା ଭଳି କିଛି । ଭାନୁ ଆଶ୍ଚର୍ଯ୍ୟ ହେଲେ, 'ତୁ ଏଠି ଅଛୁ ବୋଲି କାହାକୁ କହିଥିଲୁ କି ଅଞ୍ଜୁ ?'

ଏଲି ନାହିଁ କଲା, ଭାବିଲା କିଏ ହେଇଥିବ, ଆଉ ଦାଣ୍ଡ କବାଟକୁ ଗଲା । ସୁମନ୍ତ ଠିଆହେଇଥିଲା । ସୌମ୍ୟ ସ୍ମିତ ନେଇ କହିଲା, 'ନମସ୍କାର । ସରପ୍ରାଇଜ୍ ଦେଲି ନା ?'

'ଆରେ, ତମକୁ କିଏ କହିଲା ମୁଁ ଏଠି ଅଛି ବୋଲି ?'

'ଜାଣିଲି । ଦୀପକ ହୋଟେଲ ରେ ବୁଝିଲି, ସେଠି ନାହାନ୍ତି । ଆଜି ତ ସହର ବନ୍ଦ, ଚକ୍କା ଜାମ୍ । ଫେରିଯାଇନଥିବେ, ତେଣୁ ଏଇଠି ।'

ଭିତରକୁ ଡାକିବ କି ନାଇଁ ଭାବୁ ଭାବୁ ଏଲି ପଚାରିଲା, 'ଏଇଠି ଥିବି ବୋଲି କାହିଁକି ଭାବିଲ ?'

ସୁମନ୍ତ ହସିଲା ତାର ମୁଗ୍ଧକାରୀ ହସ । ଏଲି ର ପରିଚିତ ଏ ଗୁଣ । ଆଜିକାଲି ସହଜରେ ଆଉ ମନ ଚହଲେ ନାଇଁ । ଏ ଭାବକୁ କିନ୍ତୁ ସେ ଚିହ୍ନିପାରେ ଦେଖୁଣୁ ।

ଏଲି ପଛପାଖେ ଆସି କେତେବେଳେ ଠିଆହେଇଥିବା ଭାନୁଙ୍କୁ ନମସ୍କାର କଲା ସୁମନ୍ତ, 'ମାଇଁ, କହିଦିଅ ତ, କେମିତି ମୋତେ ଜଣାପଡ଼ିଲା ଯେ ଡକ୍ଟର ପ୍ୟାଟ୍ରିକ ଏଇଠି ଥିବେ ?'

ଭାନୁ ପିଇସୀଙ୍କ କାନକୁ ବୋଧେ ଝିଅାରୀର ଇଂରାଜୀ ନାଆଁଟି ଖଟ୍‌କା ଲାଗିଲା । କହିଲେ, 'ହଅଁରେ, ଅଞ୍ଜୁ ମୋର ମୋ ଘରକୁ ଆସିଲା, ପିଇସୀ ବୋଲି ମାନିଲା । ସେତିକିରେ ମୁଁ ଖୁସି । ମୋତେ ଯାର ଏଡ଼େ ବଡ଼ ନାଁ ଶୁଣାଇ କି ଲାଭ ?'

ଭାନୁଙ୍କର ସ୍ୱର କହୁଥିଲା ସୁମନ୍ତର କଥା ତାଙ୍କୁ ଭଲ ଲାଗିନାହିଁ । ତଥାପି କହିଲେ, 'ଆ, ଆ । ଭିତରକୁ ଆ । ତୋ ମା କେମିତି ଅଛି ? ଆଣ୍ଠୁ ଦରଜ ଟିକେ କମିଚି ନା ?'

ତାଙ୍କ କଥାବାର୍ତ୍ତାରୁ ଏଲି ବୁଝିନେଲା, ସମ୍ପର୍କୀୟ ସେମାନେ ।

'ଯା ମା ତୋ ପିଇସାର ନିଜ ମାଉସୀ ଝିଅ ଭଉଣୀ, ଜାଣିଚୁ ନା ଅଞ୍ଜୁ ।'

ଏଲି ଆଶ୍ଚର୍ଯ୍ୟଭାବ ଦେଖାଇ କହିଲା, 'ସତେ ? ମାନେ ସୁମନ୍ତ କ'ଣ ମୋର ବି ସଂପର୍କୀୟ ?'

ଭାନୁ ଆଉ ସୁମନ୍ତ ହସିଲେ । ସୁମନ୍ତ କହିଲା, 'ଆରେ ନାଇଁ ନାଇଁ । ରକ୍ଷାକର । ସେମିତି ହେଲେ ତ ସହର ଗୋଟାକ ଯାକ ବନ୍ଧା ଛନ୍ଦା ହେଇପଡ଼ିବୁ ।'

ସୁମନ୍ତ କହିଲା ଭାନୁଙ୍କୁ, 'ଭାବୁଥିଲି ଡ. ପ୍ୟାଟ୍ରିକ ଟିକେ ବୁଲି ଦେଖନ୍ତୁ ଆମ ସହର, ଏଇ ଚାଲି ଚାଲି ଆଖପାଖ ଯିବା ଟିକିଏ ।'

ଏଲି ଦେଖିଲା ସୁମନ୍ତ ବାସ୍ତବରେ ଅନୌପଚାରିକ ଭାବେ ଭାନୁଙ୍କର ଅନୁମତି ମାଗୁଥିଲା ଏଲିକୁ ସାଙ୍ଗରେ ନେବାଲାଗି । ତଥାପି କଥାଟାରେ ଭାନୁ ସେତେ ଖୁସି ହେଲାଭଳି ଦେଖାଯାଉନଥିଲେ । କହିଲେ, 'ଅନ୍ଧାର ହେବା ଆଗରୁ ଫେରି ଆସିବ । ଯେତେହେଲେ ଏଠି ତାର ଅଭ୍ୟାସ ନାହିଁ ।'

ରାସ୍ତାରେ ଚାଲୁ ଚାଲୁ ଆଗକରି ଏଲି ପଚାରିଲା, 'ଆମେ କାଇଁକି ସମ୍ପର୍କୀୟ ନ ହେବା କହିଲ ସୁମନ୍ତ, ଯଦି ଭାନୁ ପିଇସୀ ତମର...'

'ସେ ମୋ ମାଇଁ । ଏ ସବୁ ଗହନ କଥା । ଆମର ଏଠି ସାମାଜିକ ସଂପର୍କ ଲାଗି ଗଣିତ ଥାଏ, ସେ ଅନୁସାରେ ହିସାବ କରାଯାଏ କିଏ କେତେ ଘନିଷ୍ଠ ।'

ଏଲିକୁ ଏତେ ପ୍ରକାର ସମ୍ପର୍କ ଏବେ ବି ବୁଝା ପଡ଼େନାହିଁ । ତାର ମନେଅଛି, ବାପା ପିଲାଦିନେ ତାକୁ ଓ ବବିକୁ କହନ୍ତି, 'କଜିନ୍ ମାନଙ୍କୁ ଖଣ୍ଡେ ଲେଖାଁ ଚିଠି ଲେଖିବାକୁ ସମୟ ହେଉନି ତମ ଦିହିଙ୍କର ? ସାଙ୍ଗ ମାନଙ୍କ ପାଇଁ ଏତେ ସମୟ ଅଛି ?' ଏଲି ଓ ବବି ଗୋଲକଧନ୍ଧାରେ ପଡ଼ନ୍ତି । କଜିନ୍ ମାନଙ୍କୁ କାହିଁକି ଚିଠି ଲେଖିବେ ସେମାନେ, କ'ଣ ସବୁ ବା କହିବେ ସେଥିରେ ।

ଗଣିତ ସୂତ୍ରଟିଏ ମନେପଡ଼ିଗଲାପରି ଏଲି କହିଲା, 'କେଉ ପାଦ ଲେଖାଁ ଘୁଞ୍ଚି ଘୁଞ୍ଚି ଯାଉଥାଏ ରକ୍ତ ଜରିଆରେ ସଂପର୍କ, ପୁଣି ଗୋଟିଏ ବାହାଘର ହେଇଗଲେ ଦି ପରିବାର ସାରା ସଂପର୍କୀୟ ହେଇପଡ଼ନ୍ତି । ସତ ନା ?'

ସୁମନ୍ତ ଆଖି ନଚେଇ ନାଟକୀୟ ଭାବେ ହଁ କଲା । ଏଲି ପୁଣି ପଚାରିଲା, 'ଗଣିତରୁ ବାହାରିଥିବା ସଂପର୍କୀୟ ମାନଙ୍କ ଲାଗି ସ୍ନେହ ବି ଆସେ ?'

'ଅଲବତ୍ ଆସେ । ଦେଖୁନା, ଆମ ଦିହେଁ ସଂପର୍କୀୟ ବୋଲି ତମର ମନେହେଉନି ?'

ଏଲି ସୁମନ୍ତ ପିଠିରେ ମିଠା ଚାପୁଡ଼ା ମାରି କହିଲା, 'ନାଇଁ । ମୋତେ ଟିକେ ବୁଝାଇଦିଅ । ଦୂର ସଂପର୍କ ପାଖ ସଂପର୍କ ଭିତରେ ଫରକ୍ କ'ଣ ? ସେହି ଅନୁପାତରେ ସ୍ନେହ କମ୍ ବେଶୀ କରାଯିବ ?'

ସୁମନ୍ତ ଏଥର ବୁଝାଇବାକୁ ଚେଷ୍ଟାକଲା, 'ଆମ ଲାଗି ଦାୟିତ୍ୱ କଥାଟା ବେଶୀ ବଡ଼, ବୁଝିଲ ଏଲି । ସାମାଜିକ, ପାରିବାରିକ ଦାୟିତ୍ୱ । ବ୍ୟକ୍ତିର ମର୍ଜି, ବ୍ୟକ୍ତିର ଖୁସି ଆସେ ତା ପରେ । ତଥାପି ଆସେ, ବଳେ ଆସେ ସ୍ନେହ ବି । ବୁଝାପଡ଼ିଲା କିଛି ?'

ମୁଣ୍ଡ ଲାଡ଼ିନାହିଁ କରି ଏଲି କହିଲା, 'ବୁଝିବି କେବେ, ଏଇଠି ଆସି ବେଶୀଦିନ ଧରି ଯଦି କେବେ ରହେ ।'

'ଏଇଠି ଆସି କେତେଦିନ ରହିବ ? ବର୍ଷେ ଦିବର୍ଷ ? ଚାନ୍ସ ନାହିଁ ସେତିକି ସମୟରେ ଆମକୁ ବୁଝିପାରିବା । ଗୋଟିଏ କାମ କର । ଆର ଜନ୍ମଟି ଏଇଠି ନେବ ବୋଲି ଆଜିଠୁଁ ଭଗବାନଙ୍କୁ ଏପ୍ଲାଏ କରିଦିଅ ।'

ହସ ଭିତରେ ସୁମନ୍ତ ସ୍ୱର ଧିମେଇ ଆଉରି ଯୋଡ଼ିଥିଲା, 'କିନ୍ତୁ ଆମ ଠାକୁରଙ୍କୁ ଡାକିବାକୁ ହେବ । ଜନ୍ମ ଜନ୍ମାନ୍ତର ବିଭାଗଟି ତମ ଠାକୁରଙ୍କ କ୍ଷେତ୍ର ବାହାରେ ।'

ସୁମନ୍ତର ହା ହା ହସ ସାଙ୍ଗେ ଠିକ୍ ମନ ମିଶେଇ ହସି ପାରିଲା ନାଇଁ ଏଲି । କହିବାକୁ ମନ କଲାନାଇଁ ଯେ ଠାକୁର ମାନେ ଏଯାଏଁ ତା ଭିତରେ ବିଭାଗ ପରିବର୍ତ୍ତନ କରିନାହାନ୍ତି । ଭିନ୍ନ ଭିନ୍ନ ହେଇବି ରହିନାହାନ୍ତି । ନଥିଲେ କେବେ ବି ।

ଏଲି ଏଥର ବିଷୟ ବଦଳାଇଲା । ଅଣଓସାରିଆ ରାସ୍ତାଟିର ଦୁଇପାଖ ପୁରୁଣା ଘରମାନଙ୍କ ଆଡ଼େ ଅନେଇ କହିଲା, 'ଏଇ ରାସ୍ତା ଦେଇ ହୁଏତ ଯାଇଥିବି ମୁଁ ପିଲାଦିନେ । ବା ଏଇଭଳି ଅନ୍ୟ କେଉଁ ରାସ୍ତା ହେଇଥିବ । ବିଶେଷ କିଛି ବଦଳିନାହିଁ କିନ୍ତୁ, କୋଡ଼ିଏ ବର୍ଷରେ ।'

'ବଦଳିନଥିଲେ ତୁମେ ମୋ ସାଙ୍ଗେ ଏମିତି ଚାଲୁଥାନ୍ତ ? ଏକାଠି ପୁଅଝିଅ ଦିଜଣ ଏମିତି ବିଚ୍ ରାସ୍ତାରେ ?'

ଏଲି ଦେଖୁଥିଲା, ସୁମନ୍ତର ହାବଭାବରେ ପୁଣି ଖେଳୁଆଡ଼ ପଣ ।

ଏଲି ହସିଲା, 'ଆଚ୍ଛା ?, ଏକାଠି ଚାଲିବା ତେବେ ଅନୁମୋଦିତ ଏବେ ? ଆଉ ହାତ ଧରାଧରି ହେଇ ଚାଲିବା ?'

ନିଜ ହାତକୁ କରେଣ୍ଟ ମାରିଲାପରି ଦୂରେଇ ନେଇ ସୁମନ୍ତ କହିଲା, 'ଆରେ ବାବା ନା, ସେକଥା ଚଳିବନି ଏଠି ।'

ଏଲି ହସ ସମ୍ଭାଳି କହିଲା, 'ନାଇଁ, ମୁଁ ଧରୁନି ତମ ହାତ । ତମେ ତ ରୀତିମତ ଡରିଯାଉଚ ?'

ଦିହିଙ୍କ ଏକାଠି ହସିବାକୁ ଏଥର ଗଲାଆସିଲା ଲୋକ ଅନାଉଥିଲେ, ପ୍ରଶ୍ନ ନେଇ, ନାପସନ୍ଦ ଭାବ ନେଇ । ସାଇକଲ୍ ରିକ୍‌ସାରେ ମହିଳା ଦିଜଣ, ଛତାକୁ ଆଶ୍ରାକରି ଚାଲୁଥିବା ବୁଢ଼ାଲୋକ ଜଣକ । ସୁମନ୍ତ କହିଲା, 'ଏତେ ଜୋର୍‌ରେ ହସିଲେ ଆମ ଘରକୁ ଶୁଣାଯିବ ଜାଣିଛ ?'

ଏପାଖ ସେପାଖ ଅନେଇ ଏଲି ପଚାରିଲା, 'କୋଉଟା ତମ ଘର କି ?'

'ନାଇଁ, ଘର ତ ଅଧମାଇଲ ଦୂର ଅଛି । ମାନେ ଆମେ ପହଞ୍ଚିଲା ପୂର୍ବରୁ ଆମର ଏକାଠି ହସିବା ଖବର ମୋ ମା ପାଖେ ପହଞ୍ଚି ସାରିଥିବ ।'

'ସେଇଥି ? ଗାଳି କରିବେ ତମ ମା ?'

'ସିଏ ଗାଳି କରିବା ଦରକାର ନାଇଁ । କାଲି ସକାଳକୁ ପଡ଼ାଯାକର ଲୋକେ ମୋ ମା କୁ, ମୋତେ ଗାଳି କରୁଥିବେ ଆମ ପଛରେ ।'

'ଓ । ଆଉ ନିଜ ଲୋକ କେହି ମାଇଣ୍ଡ କରିବେନି ? ତମ ଗାର୍ଲଫ୍ରେଣ୍ଡ ?'

ସୁମନ୍ତର ହସ ସେଇକ୍ଷଣି ବନ୍ଦ ହେଇଗଲା । ଉପସ୍ଥିତ କର୍ତ୍ତବ୍ୟ ମନେପଡ଼ିଗଲା ଭଳି ପରିବେଶକୁ ଧ୍ୟାନ ଦେଲା, ଭାବି କହିଲା, 'ଏଇଠି ବାଁ ହାତି ରାସ୍ତାରେ ଯିବା ଚାଲ । ସିଧା ଯିବା ନଦୀକୂଳକୁ, ନାଁ କ'ଣ ?'

ଟିକିଏ ବେଳ ଚୁପ୍‌ଚାପ ଚାଲିବା ପରେ ଏଲି ପଚାରିଲା, 'କଣ ଗାର୍ଲଫ୍ରେଣ୍ଡ କଥା କହିବା ମୋର ଅଭଦ୍ରାମୀ ଥିଲା କି ? ସରି ।'

ସେମିତି ଚାଲୁଚାଲୁ ଏଲିର ଦୃଷ୍ଟିରେ କ୍ଷଣେ ରହିଗଲା ସୁମନ୍ତର ଦୃଷ୍ଟି । ହେଲେ ସେ ଦୃଷ୍ଟିକୁ ତଥାପି ପଢ଼ିପାରିଲା ନାଇଁ ଏଲି, ସେଥିରେ ନା ଅକ୍ଷେପ ଥିଲା ନା ଆମୋଦ । କଣ ଗୋଟିଏ ଉଦାସ ଭାବ ଥିଲା ।

ଘରଧାଡ଼ି ମାନଙ୍କ ମଝି ଗଳି ବାଟଦେଇ ଥରେ ଥରେ ନଦୀର ଅଂଶ ଦେଖାଯାଉଚି । କିଛି ବାଟ ଯାଉଣୁ ଦିଶିଲା ନଦୀର ପଥୁରିଆ ବିସ୍ତାର । ଏ କୂଳରୁ ସେ କୂଳଯାଏଁ ବାଲି ଭିତରୁ ଛତୁ ପରି ଫୁଟିଥିବା ପୁଞ୍ଜା ପୁଞ୍ଜା ତୀଖ ପଥରରେ ହିଁ ପୂରିଚି ନଦୀଗର୍ଭ ।

ନଈପଠାକୁ ଓହ୍ଲେଇଯାଇଚି ଓସାରିଆ ଘାଟ । ଭାଙ୍ଗି ଭୁଷୁଡ଼ି ଗଲାଣି ତହିଁରୁ ଅନେକ । ତାଆରି ପାଖ ବରଗଛ ତଳେ ଘାଟକଡ଼ର ଅଧାକାନ୍ଥି ଉପରେ ବସିଚନ୍ତି ବୁଢ଼ାଲୋକ ଜଣେ ।

ପତଳା, ଛୋଟିଆ ହେଇ ମଣିଷଟିଏ, ମୁଣ୍ଡ ବାଳ ଧଳା । ନିଜ ପିଠି ଆଉ ଆଣ୍ଠୁ ତଳକୁ ଗାମୁଛାରେ ବାନ୍ଧିଦେଇ ନିଜ ଦେହକୁ ଦୋଳିକରି ଝୁଲୁଥିଲେ ଅନାୟାସ । ସୁମନ୍ତକୁ ଦେଖିଦେଇ ଡାକିଲେ ବଡ଼ ପାଟିରେ, 'ଆମ ବାବୁ ସୁମନ୍ତ କିରେ ? ଇଆଡ଼େ କୁଆଡ଼େ ? କିଏ ସେ ତୋ ସାଙ୍ଗରେ ?'

ସୁମନ୍ତ ରହିଯାଇ ଜିଭ କାମୁଡ଼ିଲା, 'ଆରେ ଯାଃ । । ବୁଢ଼ା ଥିବବୋଲି ତ ମୋର ଜମାରୁ ମନେ ନଥିଲା ।'

ଏଲି ପଚାରିଲା, 'ଫେରିଯିବା ତେବେ ? କ'ଣ କିଛି ଅସୁବିଧା ହେଲା ତମଲାଗି ?'

ବୁଢ଼ା ଡାକିଲେ ଅଧାକାନ୍ଥି ଉପରୁ, 'କିଏ କିରେ ସିଏ ? ଆମ ନାତି ବୋହୂ ଯଦି ଆଣୁନୁ ଏଠିକି, ଦେଖିବା ଟିକିଏ ।'

ସୁମନ୍ତ ପାଖକୁ ଯାଉ ଯାଉ ଉତ୍ତର ଦେଲା, 'ତମ କଥା ରହିଲେ ତ ସହର ଗୋଟାକର ଝିଅସବୁ ତମ ନାତିବୋହୂ ହେବାକୁ ନିଅଣ୍ଟ ପଡ଼ନ୍ତେ । ନିଜ ପାଇଁ ଗୋଟାଏ ତ ପାଇପାରିଲନି, ଆମ ବାହାନାରେ ଆଖି ଘୂରାଉଥାଅ ।'

ଏଲିକୁ ଦେଖାଇ କହିଲା, 'ଏଇ ଭେଟ ଯାଙ୍କୁ, ଡକ୍ଟର ପ୍ୟାଟ୍ରିକ୍ ଅସିଚନ୍ତି ଇଂଲଣ୍ଡରୁ, ତମ ଅଞ୍ଚଳର ଗରିବ ଗୁରୁବାଙ୍କ ସେବା କରିବେ ବୋଲି । ଆଉ ତମ ମୁଣ୍ଡକୁ ବେକାର ନାତିଟି ସାଙ୍ଗେ ଯୋଡ଼ିଦେବା ଛଡ଼ା ଆଉକିଛି ଜୁଟୁନି ।'

ପାଟିରେ ଥିବା ସମୁଦାୟ ଦୁଇତିନୋଟି ଦାନ୍ତ ଦେଖାଇ ହସୁ ହସୁ ନିଜ ଦେହରୁ ଗାମୁଛା ଖୋଲି ଗୋଡ଼ ଝୁଲେଇ ବସିଲେ ସେ । ବିଶୁଦ୍ଧ ଇଂରାଜୀରେ ପରିଚୟ ଲାଗି ଆନନ୍ଦ ବ୍ୟକ୍ତ କରି କହିଲେ, 'ପ୍ଲିଜ୍ ଡୋଣ୍ଟ ମାଇଣ୍ଡ୍ । ଏ ଟୋକା ହେଉଚି ମୋ ନାତି, ତା ସାଙ୍ଗରେ ମୋର ସମ୍ପର୍କ ହେଉଚି ହସ ମଜାର, ଆମେ କଳି କରୁଚୁ ବୋଲି ଭାବୁନା ତ ?' ପୁଣି ହୋ ହୋ ହସି ମାତୃଭାଷାକୁ ଫେରିଆସି ସୁମନ୍ତ କୁ କହିଲେ, 'କିରେ, ମୋ ପରିଚୟ ବି ତାଙ୍କୁ ଦେ ଏଥର ।'

ଅଧାକାନ୍ଥି ଉପରଟି ରେ ପଡ଼ିଥିବା ଝଡ଼ା ପତ୍ର ରୁମାଲରେ ଝାଡ଼ି ସୁମନ୍ତ ଏଲିର ବସିବାଲାଗି ଜାଗା କରୁଥିଲା । ତାର ଚିଡ଼ା ଭାବଟି ଯାଇନଥାଏ । ତାକୁ ଅପେକ୍ଷା ନକରି ବୁଢ଼ା ନିଜ ପରିଚୟ ଦେଲେ ଏଲିକୁ, ଅତିରଞ୍ଜିତ ଉଚ୍ଚାରଣର ଆଳଙ୍କାରିକ ଇଂରାଜୀରେ, 'ମୁଁ ହେଉଛି ବ୍ରଜକିଶୋର ପାଢ଼ୀ, ବି.ଏ.ଏଲ୍.ଏଲ୍.ବି. ।'

ଏଲି ହାତ ଯୋଡ଼ି କହିଲା, 'ଭାରୀ ଖୁସି ହେଲି ଆପଣଙ୍କୁ ଭେଟି ।'

ବ୍ରଜକିଶୋର କହିଲେ, 'ମୁଁ ଏଲ୍ଲାବାଦରୁ ବି.ଏ., ପୁଣି କଲିକତାରୁ ଏଲ୍.ଏଲ୍.ବି. ।'

ଏଲି ଖୁସି ଗଳାରେ କହିଲା, 'ଓ, ସତରେ । ଏତେ ଉଚ୍ଚଶିକ୍ଷିତ କାହାକୁ ଏ ଯାଏଁ ଭେଟିନଥିଲି ଏଠି, ମାନେ ଆପଣଙ୍କ ସମୟର ।'

ସୁମନ୍ତ କହିଲା, 'କେବେ ପାସ୍ କରିଥିଲ ତା ବି କହିଦିଅ ଅଜା, ସେ ଉନବିଂଶ ଶତାବ୍ଦୀ ବୋଲି ନଭାବନ୍ତୁ ।'

ପୁଣି ଥଟ୍ଟା ଛାଡ଼ି ସେ ଏଲିକୁ କହିଲା, 'ଭାରତ ସ୍ୱାଧୀନ ହେବାର ଅନେକ ପୂର୍ବରୁ ତାଙ୍କ ପଢ଼ା ସରିଥିଲା, ସେତେବେଳେ ଏ ଅଞ୍ଚଳରୁ ଖୁବ୍ କମ୍ ଲୋକ ରାଜ୍ୟ ବାହାରେ ପାଠ ପଢ଼ିବାକୁ ଯାଉଥିଲେ । ହେଲେ ପଢ଼ିଥିବା ପାଠକୁ ଧନ ଉପାର୍ଜନରେ କେବେହେଲେ ଲଗାଇନାହାନ୍ତି ଆମ ଅଜା । ସ୍ୱାଧୀନତା ସଂଗ୍ରାମୀ ବି ଥିଲେ ସେ, ଗାନ୍ଧୀ ଙ୍କ ଚେଲା । ପରେ ବିନୋବା ଭାବେଙ୍କ ଭୂଦାନ ଆନ୍ଦୋଳନରେ ମାତି ଘର ଛାଡ଼ିଲେ । ଆଜୀବନ ବ୍ରହ୍ମଚାରୀ ରହିଲେ । ବ୍ରହ୍ମଚାରୀ ମାନେ ବୁଝୁଚ ନା ନାଇଁ ?'

ଏଲି ବିସ୍ମୟ ବିସ୍ଫାରିତ ନେତ୍ର କରି ପଚାରିଲା, 'ବ୍ରହ୍ମଚାରୀ ? ତୁମ ଗ୍ରାଣ୍ଡ ଫାଦର ?'

ଏଥର ଅଜା ନାତି ଅଟ୍ଟହାସରେ ପରିବେଶ କମ୍ପାଇଦେଲେ, ଏଲିକୁ ବୋକା ମୁହଁରେ ଏକୁଟିଆ ଛାଡ଼ିଦେଇ । ସୁମନ୍ତ ସେମିତି ହସୁ ହସୁ କହିଲା, 'ତା' ଠିକ୍ । ମୁଁ ଏକା ନୁହେଁ, ଆଉରି କେଜାଣି ଅଗଣିତ ଥିବେ ଯାଙ୍କ ଦାୟାଦ ।'

ପାକୁଆ ପାଟିର ହସ ମଝିରୁ ବୁଢ଼ା କହିଲେ, 'ମୋ ସାନଭାଇ ହେଉଚି ଯାର ନିଜ ଗ୍ରାଣ୍ଡ ଫାଦର । ବ୍ରହ୍ମଚର୍ଯ୍ୟ କାହାକୁ କହନ୍ତି ସେ କଥା ତୁମେ କଣ ଏ ଟୋକା ବି ବୁଝିବ ନାହିଁ । ମୋ ପିଢ଼ୀର ଲୋକେ, ଖାଲି ବୟସରେ ନୁହେଁ, ସେ ପ୍ରକାର ନୀତି ଆଉ ମୂଲ୍ୟବୋଧର ଲୋକେ, କାଳଗର୍ଭରେ ଲୀନ ହୋଇସାରିଛନ୍ତି । ପରବର୍ତ୍ତୀ ପିଢ଼ୀ ସବୁରେ ଉଦଣ୍ଡ ବାଲୁଙ୍ଗା ବାହାରିଚନ୍ତି ଏ ଦେଶରେ । ନାଇଁ ତମର ଏଇ ସାଙ୍ଗ ଟି ଭଲ ପିଲାଟିଏ, ନହେଲେ ମୋ ସାଙ୍ଗ ହୁଅନ୍ତା କିପରି ?'

ସୂର୍ଯ୍ୟାସ୍ତର ନାଲିଖରା ପଡ଼ିଚି ଆରକୂଳ ଯାଏଁ, ପୁଣି ଏପାଖ ସେପାଖ ଆଖି ପାଉଥିବା ଯାଏଁ ନଦୀର ପଥୁରିଆ ବିସ୍ତାରରେ । ପାଣି ଟିକିଏ ହେଲେ କାହିଁ ଦେଖାଯାଉନି ।

ଏଲିର ମନେପଡୁଥିଲା, ବାପା ଚିତ୍ର ଆଙ୍କିବା ଶିଖାଇଦିଅନ୍ତି, ନିଜେ ରଂଗ ପେନ୍‌ସିଲ ଧରି । ନଈଟିଏ ନିଶ୍ଚେ ଥାଏ ତାଙ୍କ ହାତଅଙ୍କା ଚିତ୍ରରେ । ଉଚ୍ଚ ଉଚ୍ଚ ପାହାଡ଼ ଦୁଇ ତିନିଟି, ତା ମଝି କୋଣରୁ ସୂର୍ଯ୍ୟ ଉଦୟ ହେବ ଫାଳେ ଗୋଲେଇ ହେଇ, ତହିଁରୁ ଟେର୍ଛା ରଶ୍ମୀ ସବୁ ବିକୀରଣ ହେଉଥିବେ, ଚଢ଼େଇ ସବୁ ଉଡ଼ିଯାଉଥିବେ ବଙ୍କା ଦି କେନିଆ ଡେଉଟିଏ ଲେଖାଁ ହେଇ । ପାହାଡ଼ ତଳୁ ନଈ ବହିଆସିବ ତାପରେ, ଅଙ୍କେଇ ବଙ୍କେଇ ଖାତା ପୃଷ୍ଠାର ତଳ ଡାହାଣ କଣ ଯାଏଁ । ନଈରେ ହେବ ଡଙ୍ଗାଟିଏ ଆଉ ଆଲପିନ୍ ଭଳି ଗୋଲିଆ ମୁଣ୍ଡ ଗାରେ ଦେହ ଥିବା ନାଉରୀଟିଏ ଆଉ ଟେର୍ଛାଏ ଗାରର କାତ ମାରୁଥିବ । ପାହାଡ଼ ତଳେ ନଈକୂଳେ ଗୋଟିଏ ଦୁଇଟି କୁଡ଼ିଆ ଘର, ଦୁଇଟି ଖଜୁରୀ ଗଛ, ଆଉ ବୁଦାଗଛ କିଛି । ବାସ୍ । ଏଇ ଚିତ୍ରଟି ବାପା ତାଙ୍କ ପିଲାଦିନରୁ ଉତାରି ଆଣି ଆଙ୍କି ଦେଇଥିଲେ ତାଙ୍କ ବିଲାତୀ ପିଲାଦିହିଙ୍କ ମନରେ । ତା ସ୍କୁଲରେ ଅନ୍ୟ ପିଲାମାନେ ପଶୁପକ୍ଷୀ ଗଛ ଫୁଲ, କି ଘର ଗାଡ଼ି ବଜାର ଆଙ୍କିଲା ବେଳେ ଏଲି ଏଇ ଚିତ୍ରଟି ଆଙ୍କେ । ବଡେଇଦିଏ ସାଙ୍ଗ ପିଲାଙ୍କୁ, 'ଏଇ ଆମ ଇଣ୍ଡିଆ, ଯାଇଛ କେବେ ?' ପିଲାଏ ଚମତ୍କୃତ ହୁଅନ୍ତି । ସେପରି କୁଡ଼ିଆ ଘର, ସେଭଳି ନୌକା କି ଖଜୁରୀ ଗଛ ସେମାନେ କେହି ଦେଖି ନଥାନ୍ତି । ଜାଣିନଥାନ୍ତି ଯେ ଏଲି

ନିଜେ ବି ଠିକ୍ ସେଭଳି ଦୃଶ୍ୟ ଦେଖିନାହିଁ । ତେବେ କଦବା କେବେ ସିଏ ନଦୀ, କୁଡ଼ିଆ ଗଛବୃଛ ଯାହା ଦେଖିଥାଏ ଲଣ୍ଡିଆରେ ତାର ଛାପ ଭିନ୍ନ ହୋଇ ରହିଥାଏ ମନ ଭିତରେ । ଇଚ୍ଛାଟିଏ କଅଁଳ ଚାରାଭଳି ବଢୁଥାଏ, କେବେ ଦିନେ ଅବସରରେ ବସି ବସି ପୁରା ଚିତ୍ର ମାନ ଦେଖିବ ଯେଉଁଥିରେ ଏ ବି ଥିବ, ଆଉରି ଅନେକ କିଛି ଥିବ ଯାହା ଦେଖା ହୋଇନାହିଁ ଏ ଯାକେ ।

ତା ଦୃଷ୍ଟିକୁ ବାରି ବୁଢ଼ା କହିଲେ ସୁମନ୍ତ କୁ 'ଯାକୁ କ'ଣ ଦେଖାଇବାକୁ ଆଣିଲୁ କିରେ ? ନଦୀ ଆଉ କାହିଁ ?'

ପୁଣି ତାଙ୍କର ସାମ୍ରାଜ୍ଞୀ-ଅନୁମୋଦିତ ଇଂରାଜୀକୁ ଫେରିଯାଇ ଏଲିକୁ କହିଲେ, 'ବହୁତ ଆଗରୁ ତମକୁ ଏଠିକି ଆସିବାର ଥିଲା, ନେହେରୁଙ୍କ ଆସିବା ଆଗରୁ, ହୀରାକୁଦ ବନ୍ଧ ବନ୍ଧାହେବା ଆଗରୁ । ଆମ ପିଲାଦିନେ ଏଇ ନଦୀ କୂଳ ଉଛୁଳୁଥିଲା ବର୍ଷା ଦିନେ । ଆଉ ଖରାଦିନେ ଥିଲା ଗାଧୋଇବାର ଅସଲ ମଜା । ଏଇ ଘାଟକୁ ଲାଗି ସବୁଦିନେ ପାଣି ଧାରଟିଏ ଥାଏ, ଯେତେ ବଡ଼ ଗ୍ରୀଷ୍ମ ଋତୁ ହେଉ । ହେଲେ ଆମ ପୁଅମାନେ ଯାଉ ହେଇ ସେ ଦୂରକୁ, ବଡ଼ ଧାରକୁ । ଆଃ କି ପାଣି ସେଠି । ଖରାଦିନେ ବି ଲୋକ ବୁଡ଼ି ମରିବା ଭୟ ଥାଏ । ପାଣି କାଚଭଳି ଏମିତି ଯେ ତଳ ବାଲି ଦିଶୁଥିବ ପରିଷ୍କାର । ଦେଖ ଏବେ, ଏଇ ସେ ନଦୀ ।'

ତାଙ୍କ ଗଳାରେ ବାମ୍ପ ଭରିଗଲା, ସେ ଆଉ କହିପାରିଲେ ନାହିଁ ।

ଏଲି କହିଲା, 'ମୁଁ ପିଲାଦିନେ ଏଇ ନଈରେ ଗାଧୋଇଚି, ମୋର ମନେଅଛି । ସେତେବେଳେ ବି ଏଇ ପଥୁରିଆ ପଠା ଥିଲା, କିନ୍ତୁ ପାଣି ବି ଥିଲା ।'

ବୁଢ଼ାଙ୍କ ବିସ୍ମୟକୁ କାଟିଦେଇ ସୁମନ୍ତ କହିଦେଲା ଏଲିର ଏ ସହର ସାଙ୍ଗେ ସମ୍ପର୍କ । ବୁଢ଼ା ଏଥର ଖାଣ୍ଟି ଆଞ୍ଚଳିକ ଭାଷାକୁ ଖସିଆସି କହିଲେ, 'ଆରେ ତୁ ଆମ ବିଧୂ ଝିଅ କି ? ସେଇଆ କହୁନୁ ? ଏ ଚଣ୍ଡାଳ ମୋତେ କହୁଚି ବିଲାତରୁ ଆସିଚନ୍ତି ଡାକ୍ତର ।'

'ମୁଁ ମିଛ କହିଲି ନା କ'ଣ ?'

'ନାଇଁ, ହେଲେ ସେ ଆମ ବିଧୂ ଝିଅ, ପରେ ଆଉ ଯାହା ନା...ଏ ଟୋକା ତମ କଥା ମୋତେ କହିନାଇଁ, ଲୁଚେଇଚି ମୋତେ ଏଁ, ତମେ ତା ସାଙ୍ଗ ବୋଲି...'

ସୁମନ୍ତର ଗଳାରେ ପୁଣି ଚିଡ଼ାଭାବ ଆସିଗଲା, 'କଣ ତମେ କହୁଚ ଅଜା । ସେ ମୋ ଠୁ କେତେ ବଡ଼ ଜାଣିଚ, ବୟସରେ ବି ଯୋଗ୍ୟତାରେ ବି ? କଣ ଭାବୁଥିବେ ସେ ତମକୁ ?'

'ମୋତେ କାଇଁକି କ'ଣ ଭାବିବ, ଆମ ବିଧୂ ଝିଅ ପରା ? ତୁ ଓଡ଼ିଆ ବୁଝୁଚୁ ନା ନାଇଁ ?'

'ଓଡ଼ିଆ ସେ ବୁଝନ୍ତି ଆଉ କହନ୍ତି ବି । ତମେ ଯାହା ସବୁ କହୁଚ ତାଙ୍କୁ ନେଇ ସବୁ ସେ ବୁଝୁଚନ୍ତି ।'

'କାଇଁ କିଛି ତ କହିନି ମୁଁ । ତୁ ନିଶ୍ଚେ ବୁଝୁଥିବୁ ଝିଅ, ଏ ଟୋକା ମୋତେ କେମିତି ଗାଳି କରୁଚି ?'

ଏଲି ଓଡ଼ିଆରେ କହିଲା, 'ସବୁ ବୁଝୁଚି । ଅଜା ନାତି ଥଟ୍ଟା ଚାଲିଚି ବୋଲି ବି ବୁଝୁଚି ।'

ସୁମନ୍ତ କହିଲା, 'ଥଟ୍ଟା ନୁହେଁ । ଯାକୁ କହନ୍ତି ପୁରୁଣା ବ୍ୟାଚେଲରଙ୍କ ହତାଶା, ଫ୍ରଷ୍ଟ୍ରେସନ ।'

ବୁଢ଼ା ଚଟ୍‌କିନି ପଚାରିଲେ, 'କାହା କଥା କହୁଚୁ ? ତୋର ନା ମୋର ?'

ତାପରେ ତିନୋଟି ଦାନ୍ତ ଦେଖାଇ ହା ହା ହସ ।

ସଞ୍ଜ ଆଲୁଅ କେତେବେଳୁ ଯାଇସାରିଥିଲା । ମସ୍ତବଡ଼ ଜହ୍ନଟାଏ ଉଇଁଆସୁଥିଲା । ବୁଢ଼ା କହିଲେ, 'ଆରେ ଫ୍ରଷ୍ଟ୍ରେସନ୍ ଖାଉଚି ତମକୁ । ଆଜିକା ଟୋକାଙ୍କୁ, ଯିଏ ସବୁ ଯୁବା ବୟସରେ ବୁଢ଼ା ହେଇ ବସିଚ । ଘରେ ପଶିଚ ମୁଣ୍ଡରେ ଲୁଗା ଦେଇ । ତମ ବୟସରେ ଆମେ ସବୁ ଭରା ନଈକୁ ଡେଇଁ ପଡୁଥିଲୁ, ଏମିତି ଜହ୍ନ ରାତିରେ , ବାଜି ମରାମରି ହେଇ ପହଁରି ଯାଉଥିଲୁ ଆରକୂଳକୁ ।'

ଏଲି କୁ ଚାହିଁ ପୁଣି ଇଂରାଜୀରେ କହିଲେ ସେ, 'ଆମ ବେଳ ହେଇଥିଲେ ଏଠି ଏତେବେଳକୁ ଆମ ଟୋକା ଦଳଙ୍କର ଜମିଥାଆନ୍ତା ଆସର । ବାଗୁଡ଼ି ବହୁଚୋରୀ ଖେଳ ହୁଅନ୍ତା, ଥଟ୍ଟା ତାମସା ଗୁଲିଗପ ବି ହୁଅନ୍ତା । ହେଲେ ତା ସାଙ୍ଗେ ଗାନ୍ଧିଜୀ ଥାଆନ୍ତେ ପ୍ରତି କ୍ଷଣ, ବିବେକାନନ୍ଦ ଥାଆନ୍ତେ ।'

ସୁମନ୍ତ କହିଲା, 'ଜାଣିଚୁ ଜାଣିଚୁ ଆମେ ସେ ସବୁ କଥା । ତମ ଯୁଗରେ ସଭିଏଁ ଆଦର୍ଶ ପୁରୁଷ ଥିଲ ।'

ତା କଥାକୁ କାନ ନଦେଇ ବୁଢ଼ା ଜାରୀ ରଖିଲେ, 'ଏବେ ତମର ଆସର କୋଉଠି ନା ବିଚ୍ ବଜାରରେ, ସିନେମା ହଲ୍ ସାମ୍ନାରେ । ଆଲୋଚନାର ବିଷୟ ହେଲା ଚିତ୍ର ତାରକାଙ୍କ ପ୍ରେମ ପ୍ରସଙ୍ଗ, ନହେଲେ ଅଫିସରଙ୍କ କଳା ପଇସା । ଛି ଛି ।'

ସୁମନ୍ତ ଅଧୈର୍ଯ୍ୟ ହେଲା ଟିକିଏ, ଏଲିକୁ ଚାହିଁ କହିଲା, 'ଏ ଟପିକ୍ ଟି ଆରମ୍ଭ ହେଲେ ଅଜା ଆଉ ଛାଡ଼ିବେନି । ଆଜିକାଲି ପିଲାଏ ଖାଲି ଶସ୍ତା ମଉଜ କରି ଜୀବନ କାଟୁଛନ୍ତି ଏକଥା ସତ ନୁହେଁ । ପ୍ରତିଯୋଗିତା ଏତେ ବେଶୀ, ପାଦେ ଆଗେଇବାକୁ ହେଲେ କେତେ ଲୋକଙ୍କୁ ଟପିବାକୁ ହୁଏ, କେତେ ପରିଶ୍ରମ କରିବାକୁ ହୁଏ, ଅଜା ଖବର ରଖି ନାହାନ୍ତି । ଭଲ ଗୋଟିଏ କଲେଜରେ ସିଟ୍‌ଟିଏ ପାଇବାକୁ ହେଲେ, ଭଲ ପାଠ ପଢ଼ି ବାହାରିବାକୁ ହେଲେ...'

ବୁଢ଼ା ଆଉ କୁହାଇ ଦେଲେନି, 'କି ମୂଲ୍ୟ ସେ ପଢ଼ାର ? ଖାଲି ଚିନ୍ତା ହେଲା କେମିତି କୋଉଠି ଚାକିରୀ କି ବେଉସା ଖଣ୍ଡେ କରି ଟଙ୍କା ପୁଳାଏ ରୋଜଗାର କରିବେ । ଅତିହେଲେ ଖବରକାଗଜରେ ବାହାରିବେ, ଟିଭିରେ ନିଜ ଚେହେରା ଦେଖେଇବେ । ସେତିକି ।'

'ହଉ ହେଲା, ତମ କଥା ମିଛ ନୁହେଁ । ତେବେ ତମ ସମୟରେ ବି ଦେଶଟା ଯାକ ଲୋକ ଖାଲି ଗାନ୍ଧି କି ସୁଭାଷଙ୍କ ଅନୁଗାମୀ ହେଇ ଜୀବନ ଉତ୍ସର୍ଗ କରୁନଥିଲେ । ବିଦେଶୀ ଶାସନ ତାହେଲେ ଚାଲୁଥିଲା କେମିତି ? ଇଂରେଜ ଶାସନ କାହାକୁ ବଙ୍କ କରି, ହତିଆର କରି ଶାସନ କରୁଥିଲେ ଏ ଦେଶରେ ? ଇଂରେଜ ସାଇବଙ୍କ ପଛଗୋଡ଼ା ହେବା ବି ତ ଉଚ୍ଚାକାଂକ୍ଷା କୁହାଯାଉଥିଲା ସେତେବେଳେ ନା ନାହିଁ ? କେ ବୋଲଇ ମୁହିଁ ଅଟଇ ଦିପୋଟି, କଳା ଲୋକଙ୍କ ଉନ୍ନତିର କୋଟି...'

ବୁଢ଼ା ଏଲି ମୁହଁକୁ ଅନେଇଲେ, କହିଲେ 'ଠିକ୍। ତମ ଜେଜେ ଥିଲେ ସେଇ ଦିପୋଟି...' କହୁ କହୁ ସେ ରହିଗଲେ।

ଜହ୍ନ ଉଠିଆସିଥାଏ ଏଥର ବେଶ୍ ଉପରକୁ, ଏଲିର ମନଦେଇ ଶୁଣୁଥିବା ବ୍ୟଗ୍ର ମୁହଁଟିର ଭାବ ବଦଳାଇବାକୁ ବୋଧେ ତାଙ୍କ ମନ ବଳିଲା ନାହିଁ। ସ୍ୱର ବଦଳାଇ କହିଲେ, 'ପେଟପାଟଣା ଅବା ଉଚ୍ଚାକାଂକ୍ଷା ଲାଗି କିଛି ଲୋକେ ବିଦେଶୀ କିମ୍ବା ଅତ୍ୟାଚାରୀ ଶାସକ ଦଳରେ ମିଶିନଯିବେ, ଏମିତି କଣ କୋଉ ଯୁଗ ଆସିଚି ଇତିହାସରେ ? ତା ବୋଲି ଦେଶଟା ଯାକର ଯୁବା ଗୋଟିପଣେ ଧନାଢ୍ୟ ଦେଶଙ୍କୁ ହିଁ ଚରମ ସ୍ୱର୍ଗ, ପରମ ତୀର୍ଥ ମଣିବା, ପଦପଦକେ ବିଦେଶୀଙ୍କ ଅନୁକରଣ କରିବା, ଯାକୁ ମଣିଷପଣିଆ କହିବା ନା ମାଙ୍କଡ଼ପଣିଆ ?'

ଏଲି ଅଳ୍ପ ହସି ପଚାରିଲା, 'ମୋ ଜେଜେ ଦିପୋଟି ଥିବା କଥା କହୁଥିଲେ ? କେଉଁ ପାଖେ ଥିଲେ ସେ, ଦେଶୀ ନା ବିଦେଶୀ ?'

ବୁଢ଼ା ଟିକିଏ ବେଳ ଭାବି କହିଲେ, 'ସମସ୍ତଙ୍କୁ ସେଭଳି କଳା ଧଳା କରିବା ଦେଖିବା ଭୁଲ୍ ହେବ ଝିଅ। ତମ ଜେଜେ ଖୁବ୍ ଜଣାଶୁଣା ମାଜିଷ୍ଟ୍ରେଟ ଥିଲେ, ହେଲେ ଶାସକ ଦଳ ସାଙ୍ଗରେ ଗୋଟିପଣେ ସାମିଲ ନଥିଲେ। ପ୍ରକୃତରେ ଅଧିକାଂଶ ଲୋକେ ଜୀବିକା ଲାଗି ବା ସମାଜରେ ପ୍ରତିଷ୍ଠା ପାଇବାକୁ, ସରକାରୀ ଚାକିରୀ କରୁଥିଲେ, କିନ୍ତୁ ସେଇ ସମୟରେ ତହିଁରୁ ଅନେକ ସାଧ୍ୟମତେ ଦେଶସେବା ବି କରୁଥିଲେ। ସାଧୁ ନାୟକ ନିଜେ ବିପଦ ମୁଣ୍ଡେଇ ସ୍ୱାଧୀନତା ସଂଗ୍ରାମୀଙ୍କୁ ସାହାଯ୍ୟ କରିବା କଥା ମୁଁ ଜାଣେ।'

ସୁମନ୍ତ କହିଲା, 'ଚାଲ ଯିବା ଏଥର ଏଲି, ଅନ୍ଧାର ହେଲାଣି ଆସି।'

ଏଲି ପଚାରିଲା ବୁଢ଼ାଙ୍କୁ, 'ମୋ ବାପାଙ୍କୁ ଆପଣ ଜାଣିଥିଲେ ?'

'ବିଧୁ କୁ ? ପିଲାଟି ଦିନରୁ ତାକୁ ଜାଣେ। ମୋ ସାନ ଭାଇ ସାଙ୍ଗେ ପଢୁଥିଲା। ଭାରୀ ବିଚକ୍ଷଣ ପିଲା ଥିଲା ସେ, ବ୍ରିଲିୟାଣ୍ଟ ପିଲା। ଭାରୀ ଉଚ୍ଚକାଂକ୍ଷୀ। ଆମ ଭଳି ପିଲାଙ୍କ ସାଙ୍ଗେ ସେ ସମୟ ନଷ୍ଟ କରୁନଥିଲା, ଯଦିଓ ସ୍କୁଲରେ ତା ଠୁ ବିଚକ୍ଷଣ ଛାତ୍ର ଥିଲି ମୁଁ।'

ସୁମନ୍ତ କହିଲା, 'ତମକୁ ମାର୍ଗଦର୍ଶନ ଦେବା ଲାଗି ମାଜିଷ୍ଟ୍ରେଟ ବାପା କି କକା ଜଣେ ଥିଲେ ହୁଏତ ତମ ଜୀବନ ବି ଭିନ୍ନ ଗତି ଧରିଥାନ୍ତା।'

'ସେକଥା ନୁହେଁ। ଅଳ୍ପ ବୟସରେ କିଏ ଗାନ୍ଧୀ ମହାତ୍ମାଙ୍କୁ ଆଦର୍ଶ କଲା ତ କିଏ ବିଲାତୀ ସାହେବଙ୍କୁ। କିଏ ଦେଶ ସେବା ବାଛିଲା, କିଏ ଆତ୍ମ-ସେବା।'

ସୁମନ୍ତ କହିଲା, 'ହେଲେ ଅଜା, ଥୋକେ ଦୁଇଟିଯାକ ପଥକୁ ମିଶେଇ ଦେଇ ବି ସଫଳ ହେଇଚନ୍ତି। ଦେଶର ସବୁଠୁ ସଫଳ ନେତା ଥିଲେ ସେଇମାନେ।'

ବୁଢ଼ା କହିଲେ, 'ଥୋକେ ସଫଳ ହେଲେନାଇଁ ବି, ଦୁଇପ୍ରକାର ଆଦର୍ଶ ମଝିରେ ପେଶିହେଇଗଲେ। ଏଇ ଆମ ବିଧୁ କଥା ନିଅ। ତା ପିଲାଦିନେ ସ୍କୁଲରେ ମାଷ୍ଟରମାନେ, ସିନିୟର

ପିଲାମାନେ ସବୁ ମାତିଥାନ୍ତି ଗାନ୍ଧୀଙ୍କ ଡାକରାରେ । ବର୍ଣ୍ଣନା କରିହେବ ନାହିଁ ସେ ପ୍ରକାର ନିଶା, ଇସାରା ମିଳିଲେ ସେଠି ଜୀବନ ଦେଇଦିଆଯାଏ । ଉପରେ ଚାଲିଥାଏ ଆମର ନିତିଦିନିଆ ଜୀବନ, ଭିତରେ ଭିତରେ ନଈ ବହୁଥାଏ ନିଆଁର । ବିଧୂ ତେଣେ ଥାଏ ତା ବାପାଙ୍କ କଡ଼ା ଶାସନରେ । ଆମ ଘରକୁ ବି ତାକୁ ଡରି ଡରି ଲୁଚି ଆସିବାକୁ ହୁଏ । ମୋର ମନେଅଛି, ସିଏ ଦଶ ବାର ବର୍ଷର ହେଇଥିବ, ସ୍କୁଲରେ ଭାଷଣ ପ୍ରତିଯୋଗିତାରେ ଏଡ଼େ ଚମତ୍କାର କହିଥିଲା ଯେ-କ'ଣ ଗୋଟାଏ ବିଷୟ ଥିଲା ଟି ଶିଳ୍ପଦ୍ୟୋଗ ବିପକ୍ଷରେ କୁଟୀର ଶିଳ୍ପ ସପକ୍ଷରେ ସେ କହିଲା ନା କ'ଣ, କୋଉ ବାଗରେ ଗାନ୍ଧିଜୀ ଓ ସ୍ୱଦେଶୀ ଆନ୍ଦୋଳନ କଥାକୁ ନେଇଆସିଲା, ଏଡ଼େ ଭାବଗର୍ଭକ ଥିଲା ତା ଭାଷଣ । ଆମର ସବୁଠୁ ଛାତ୍ର ବତ୍ସଳ ଦୀନବନ୍ଧୁ ସାର୍, ଯିଏ ପରେ ପୋଲିସ୍ ଲାଠି ମାଡ଼ ଖାଇ ଜେଲ୍ ଯାଇଥିଲେ, ସିଏ ସେଦିନ କାନ୍ଦିପକେଇ ବିଧୂକୁ କୁଣ୍ଢେଇ ପକେଇଥିଲେ । ଆଉ ଯୋଉଥର ଆମସାଙ୍ଗେ ଶୋଭାଯାତ୍ରାରେ ଯାଇଥିଲା, ବିଚରା ଘରେ ପହଞ୍ଚି ଯାଏ କୁଆଡ଼େ, ତିନିଦିନ ପରେ ଯେବେ ସ୍କୁଲ ଆସିଲା ପିଠିରୁ ତା ବାପାଙ୍କ ବେତମାଡ଼ର ଦାଗ ଲିଭିନଥାଏ ।'

ଏଲି ଜାଣେ, ବିଧୂ ନାୟକଙ୍କ ମନରୁ ବି ଛବିମାନ ଲିଭିନଥିଲା କେବେବି । ଶୋଭାଯାତ୍ରା ପରଦିନ ବାପା କିଶୋରଟି ଲାଗି ଆଣିଦେଇଥିଲେ ତା ଜୀବନର ପ୍ରଥମ ଫାଉଣ୍ଟେନ୍ ପେନ୍, ଯେଉଁଟିକି ତା ପିଲାମାନେ ଦେଖିଥିଲେ ଅନେକ ବର୍ଷ ପରେ, ତା'ଙ୍କ ଲଣ୍ଡନ ଘରେ । ପୁଅ ହାତରେ ବିଲାତୀ କଲମ ଦେଇ ମାଜିଷ୍ଟ୍ରେଟ ବାପା ଆଜି ଛଳଛଳ କରି ବୁଝାଇଥିଲେ ତାଙ୍କ ନୟନ ପିତୁଳାକୁ, 'ଆରେ ସେ ମଳିମୁଣ୍ଡିଆ ମାନେ ମାତିଥାନ୍ତୁ ତାଙ୍କର, ରାସ୍ତାରେ ପାଟିତୁଣ୍ଡ କରି । ତାଙ୍କ ଲାଗି ଆଉ ଅଛି କ'ଣ କରିବାକୁ ? ତୋତେ କେତେକଥା କରିବାକୁ ଅଛି ପରା ଜୀବନରେ ? ଜେଲଯାଇ ନାଁ କମେଇବାର ଜାଗା ନୁହେଁ ଏଇ ପୋଚରା ସହର, ଘାସଫୁଲ ପରି ଜୀବନଟା ନଷ୍ଟ ହେଇଯିବ କେହି ଜାଣିବେ ନାହିଁ । ସେ ବାରବୁଲା ଲୋକଙ୍କ କି କ୍ଷତି ଟା ହେବ ? ଏମିତିରେ ବି ଯାଇତାଇ ଜୀବନଟା କାଟିଦିଅନ୍ତେ, କାଟିଦେବେ ସେମିତି, ଜେଲ୍‌ଗଲେ ଦିଦିନିଆ ବାହାବା ବି ତାଙ୍କୁ ମିଳିଯିବ । ତୋର ପରା ଗୋଟାଏ ଭବିଷ୍ୟତ ଅଛି ?'

ପିଲାଟି ଲାଗି ବାପା ଅରଟ ବି ଆଣିଦେଇଥିଲେ, କହିଲେ, 'ଘରେ ସୂତାକାଟ, ଭଲକଥା । ଗାନ୍ଧୀଜୀ ଙ୍କୁ ବି ମୁଁ ବି ପ୍ରଣାମ କରେ । ହେଲେ ଦୂରରୁ । ରଜାମାନେ ଋଷିମୁନିଙ୍କୁ ପ୍ରଣାମ କରୁଥିଲେ ନା ନାହିଁ ? ତା ବୋଲି ରାଜଗାଦି ଛାଡ଼ି ନିଜେ କୌପୁନୀ ପିନ୍ଧିବା ଦରକାର କି ? ଋଷିମୁନିଙ୍କ ଚେଲା ହେଇ ଆଜୀବନ ତାଙ୍କ ପଦସେବା କରି ଜୀବନ କାଟିଦେଉଥିଲେ ଯେଉଁ ଲୋକ, ପ୍ରାୟ ତଷାଭୂଷା ଶ୍ରେଣୀୟ ଲୋକ ଥିଲେ ସେମାନେ । ରଜାପୁଅ ନୁହନ୍ତି । ରଜାପୁଅର କର୍ତ୍ତବ୍ୟ ଭିନ୍ନ । ନହେଲେ ଦେଶକୁ ଶାସନ କରିବ କିଏ ?'

ଶୁଖିଲା ନଈକୁ ଅନେଇ ବୁଢ଼ା ତାଙ୍କ କଥା ଜାରୀ ରଖିଥିଲେ, 'ତୋ ବାପା ମୋର କେଡ଼େ ଘନିଷ୍ଠ ଥିଲା, ସେବେ ସମୟ ଥିଲା, ସେ ବଡ଼ ଭାଇ ଭଳି ମାନୁଥିଲା ମୋତେ । ପରେ ଆମର

ମତଭେଦ ହେଲା । ପୁଣି ବିଲାତ ଗଲାପରେ କେଇଥର ଚିଠି ଦିଆନିଆ ବି ହେଇଚି । ବହୁତ ପରେ, ବିଲାତରୁ ସେ ଫେରିଆସିଲା ପରେ ପୁଣି ଦେଖାହେଇଚି କେତେଥର । ସେତେବେଳକୁ ସେ ଭିନ୍ନ ମଣିଷଟିଏ ପାଲଟିଗଲାଣି । ତଥାପି ତା'ର ପିଲାଦିନର ଖିଅ କିଛି ମୁଁ ଧରିପାରିଥିଲି ।'

ଏଲି ପାଖରେ ସାଇତା ବିଧୂ ନାୟକଙ୍କ ହଳଦିଆ ପଡ଼ିଯାଇଥିବା ଚିଠି ମାନଙ୍କରୁ ବି ଉଦୁରେ କେତେ ଚିତ୍ର । ବିଲାତ ଯିବା ପରେ ବାପା ମା'ଙ୍କଠାରୁ ପାଇଥିବା ଚିଠି ଠୁ ଆତ୍ମୀୟ ସ୍ୱଜନ ସାଙ୍ଗ ସାଥୀ ଯାହାଠୁ ଚିଠି ଖଣ୍ଡେ ଆସେ ସେ ସାଇତି ରଖୁଥିଲେ, ତାରିଖ ଅନୁସାରେ ଥାକକରି ବାନ୍ଧି । ଏକ ଭଦ୍ରଲୋକଙ୍କ ଚିଠି ମାନ ସେଥିରୁ କେଉଁଟି କେଜାଣି ।

ତିନିହେଁ ଏଥର ଫେରିବା ରାସ୍ତା ଧରିଥିଲେ । କେତେବେଳୁ ବିଜୁଳୀ ଚାଲିଯାଇଚି । ଜହ୍ନ ଆଲୁଅରେ ଫର୍ଚ୍ଚା ଦିଶୁଚି ଚାରିଆଡ଼ । ପୁରୁଣା ସମୟର ଝଲକଟିଏ ଦେଖାଇଦେବାକୁ ଅବା ।

'ଅନେକ ଉଚ୍ଚ ଶିକ୍ଷିତ, ସମାଜ ସଂସ୍କାରକଙ୍କ ବିଶ୍ୱାସ ରେ ମାନବ ସଭ୍ୟତାର ଚରମ ଉତ୍କର୍ଷ ହେଲା ପଶ୍ଚିମର ସଂସ୍କୃତି । ଖାଲି ତମ ବାପା କାହିଁକି, ଦେଶବାସୀଙ୍କ କଳ୍ପନାର ସ୍ୱର୍ଗ ତ ସବୁଦିନେ ଥିଲା ଗୋରା ସାହେବଙ୍କ ଦେଶ, ସଭ୍ୟତା କହିଲେ ତାଙ୍କରି ସଭ୍ୟତା । ସେହି ନ୍ୟାୟରେ ପଶ୍ଚିମର ସହଜ ଲୋଭନୀୟ ଦିଗ ପ୍ରତି ପିଲାଏ ବେଶୀ ଟାଣି ହୋଇଯାଆନ୍ତି । ପିଲାଦିନୁ ପରିଶ୍ରମୀ ଥିଲା ବିଧୂ, ହେଲେ କୁଆଡୁ ସବୁ ନାନା ପ୍ରକାର ବହି ଆଣି ପଢେ, ଏଣୁ ତେଣୁ ଛବି ଥିବା ବହି । ମଦ ପିଇବାରେ କ୍ଷତି ନାହିଁ ବୋଲି କହେ । ପ୍ରେମ କବିତା ସବୁ ମୁଖସ୍ତ କରିଥାଏ । ଗାନ୍ଧିଜୀଙ୍କ ବ୍ରହ୍ମଚର୍ଯ୍ୟ କଥାଟାକୁ ନେଇ ତ କେତେ ଯେ ଥଟ୍ଟା କରେ ।'

ସୁମନ୍ତ କହିଲା, 'ବାସ୍ । ଅଜା ଆସିଗଲେ ନିଜ ଫର୍ମକୁ ଏଥର । ନିଷିଦ୍ଧ ବିଷୟ ସବୁ କୁ ନୀତି ନାଆଁରେ ଆଲୋଚନା କରିବା ।'

'ଆରେ, ଏମିତି ଜହ୍ନରାତିର ଆନନ୍ଦ ଯିଏ ଜାଣିଚି, ସିଏ କୋଉ ନିଷିଦ୍ଧ ସୁଖକୁ ଅନେଇଯିବ କାଇଁକି ? ନା କ'ଣ ମା ? ଯାହାକୁ ସିଧା ବାଟରେ ଆନନ୍ଦ ମିଳିବ, ସିଏ ଅବାଟରେ କାଇଁକି ଯିବ ?'

ସୁମନ୍ତକୁ ଏ ବିଷୟଟି ସୁହାଉନଥିଲା, କହିଲା, 'ତମକୁ ଯାହା ଭଲ ନଲାଗିଲା ତା ଅବାଟ କାଇଁକି ହେବ ଯେ ? ଦୁନିଆଁସାରା ତ ମଦ ପିଉଚନ୍ତି, ସମସ୍ତେ ଖାଲି ଅବାଟରେ ଯାଉଚନ୍ତି ?'

ବୁଢ଼ା ଏଥର ଲମ୍ବା ଭାଷଣ ଟିଏ ଦେବାଲାଗି ଅଣ୍ଟା ଭିଡୁଥିଲା ଭଳି ଜଣାଗଲା । ଗଳି ପାଖ ଦୋଛକି ରେ ଠିଆହେଇ ସୁମନ୍ତ କହିଲା, 'ହଉ ଅଜା, ତମେ ଘରକୁ ଗଲ ଏଥର, ଖାଇପିଇ ଶୋଇବ ଯାଅ ।'

ବୁଢ଼ା ପଚାରିଲେ, 'ଆମ ଘରକୁ ଆସିବୁନି ଝିଅ ?'

ଏଲି ଉତ୍ତର ଦେଲା, 'ପିଉସୀ ଅପେକ୍ଷା କରିଥିବେ । ଆଉଦିନେ ଆସିବି ।'

ତା ନମସ୍କାରର ଉତ୍ତରରେ ବୁଢ଼ା ତା ମୁଣ୍ଡରେ ହାତ ଦେଲେ, କହିଲେ, 'ଭଲରେ ଥାଆ ମା । ତୋ ବାପା ହାତରେ କ'ଣ ସବୁ ଅସାଧ୍ୟ ସାଧନ ହେବ ବୋଲି ଆମେ ସବୁ ଭାବିଥିଲୁ ।

ଲଣ୍ଡନରୁ ସ୍ୱର୍ଣ୍ଣପଦକ ପାଇଥିଲା, ବିଦେଶୀ ପତ୍ରିକାମାନଙ୍କରେ ଗବେଷଣାର ଲେଖା ଛାପୁଥିଲା, ପ୍ୟାରିସ୍ ରେ ଭାରତର ପ୍ରତିନିଧିତ୍ୱ କରିଥିଲା । ଏ ଅଞ୍ଚଳର ସବୁଠୁ ମଉଡ଼ମଣି ହେବ ସିଏ ବୋଲି ଧରିନେଇଥିଲେ ସମସ୍ତେ । ହଉ । ତୋ ହାତରେ ହେଉ କିଛି ଭଲ କାମ, ଈଶ୍ୱରଙ୍କ ଆଶୀର୍ବାଦରୁ ।'

ରାତି ଆଠଟା ବାଜିଥିବ ମାତ୍ର । ଲାଇଟ୍ ନାହିଁ ବୋଲି ଶୂନ୍‌ଶାନ୍ ସଡ଼କ । ସୁମନ୍ତ ପଚାରିଲା, 'ତମ ମନ ଖରାପ ହେଲା କି ଅଜାଙ୍କ ବାଜେ ଗପ ଶୁଣି ?'

'ବାଜେ ଗପ କ'ଣ ? ଏଇ କଥାମାନ ଶୁଣିବି ବୋଲି ତ ଅପେକ୍ଷା କରିଥିଲି ଆସିଲା ଦିନୁ ।'

ସୁମନ୍ତ କହିଲା, 'ଡ. ନାୟକଙ୍କର ଏଠିକି ଫେରିଆସିବାର ନଥିଲା । କାହିଁକି ଫେରିଆସିଲେ ସେ ଜାଣିଚ ?'

ଏଲି ର ମନହେଲା କହିବ, ବିଦେଶରେ ସବୁଦିନେ ଏକୁଟିଆପଣ ରେ ଘାରି ହେଉଥିଲେ ସେ । ନିଜ ଲୋକଙ୍କ ଗହଣରେ ବିସ୍ତୃତ ପରିବାରର ସ୍ନେହଛାୟା ପାଇବାର ଆଶାରେ ଫେରିଥିଲେ ସେ । ହେଲେ ଏଲି ଚୁପ୍ ରହିଲା । ସୁମନ୍ତ ତାକୁ ଚମକାଇଦେଇ କହିଲା, 'ଏ ସହର ଲୋକଙ୍କ ଉପରେ ପ୍ରତିଶୋଧ ନେବାଲାଗି ଆସୁଥିଲେ ସେ ।'

'କି ପ୍ରତିଶୋଧ ?'

'ସାଧୁ ନାୟକ ଆଉ ତାଙ୍କ ଝିଅମାନଙ୍କୁ ଯେଉଁ ବଦ୍‌ନାମ, ଛି ଛାକର ମିଳିଥିଲା ତାଆରି ପ୍ରତିଶୋଧ । ନିଜ ବଢ଼ିଲା ଝିଅ ମାନଙ୍କୁ ପାଠ ପଢ଼ାଇଥିଲେ ବୋଲି, ରାଜ୍ୟ ବାହାରର କଲେଜମାନଙ୍କୁ ପଠାଇଥିଲେ ବୋଲି କମ୍ ଦଣ୍ଡ ମିଳିନାଇଁ ତମ ଜେଜେଙ୍କୁ, ଏଇ ଅନ୍ଧାରୁଆ ଅଞ୍ଚଳର ଲୋକଙ୍କଠୁ । ତମ ବାପା ଅତି ଅଳ୍ପ ବୟସରେ ଭୋଗିଥିଲେ ସେ ଅପମାନ ସବୁ । ତେଣୁ ବୋଧେ ପରେ ବାରମ୍ବାର ଆସୁଥିଲେ ସେ ଏଠିକି, ତାଙ୍କ ସାହେବୀପଣ ନେଇ, ମେମ୍‌ସାହେବ ସ୍ତ୍ରୀଙ୍କୁ ନେଇ ।'

ଏଲି ନିଶ୍ୱାସଟିଏ ଛାଡ଼ିଲା । ଏ କଥା ତ ତା ମୁଣ୍ଡକୁ ଆସିନାଇଁ କେବେ ବି ।

ସରୁ ଗଳିଟିଏ ଆବୁଡ଼ା ଖାବୁଡ଼ା ରାସ୍ତାରେ ଅତି ସାବଧାନ ହେଇ ଚାଲୁଥିବା ଏଲିର ହାତ ଧରିନେଇ ସୁମନ୍ତ କହିଲା, 'କେଡ଼େ ବାଜେ ରାସ୍ତା, କେବେ ଜୀବନରେ ଦେଖି ନଥିବ ତମେ, ନାଇଁ ? ଆମେ ଏଇଠି ବଢ଼ିଚୁ, କିଛି ଅସୁବିଧା ହୁଏ ନାହିଁ, ଅନ୍ଧାର, ମଇଳା, ଖାଲଢ଼ିପ ରାସ୍ତା । ସେଇଥିଲାଗି ତ ମୋ ଗାର୍ଲଫ୍ରେଣ୍ଡ ଛାଡିଦେଲା ମୋତେ, ମୋ ସାଙ୍ଗେ ଚାଲିବାକୁ ସାହସ କଲାନାଇଁ ।'

'ଛାଡ଼ି ଚାଲିଗଲା ? ଏଇ କାରଣରୁ ବୋଲି ସେ କହିଲା ତମକୁ ?'

'ନା । ତା ବାପାଙ୍କ ନିଷ୍ପତ୍ତି ଥିଲା, ସେ ମାନିନେଲା । ମୋ ହାତରେ ତ ଭରସା କଲା ଭଳି ଚାକିରୀଟାଏ ବି ନାହିଁ, ତାକୁ ରୋକିଥାନ୍ତି କେମିତି ?'

ଏଲି ଚୁପ୍ ରହିଲା, କେମିତି ସାନ୍ତ୍ୱନା ଦିଆଯାଏ ତାକୁ ଜଣାନଥିଲା । ସୁମନ୍ତ କହିଲା, 'ଆମର ଏଠି ଏମିତିକା ଘଟଣା ନିତିଦିନିଆ କଥା । ସହିଯିବାକୁ ହୁଏ ।'

||୧୬||

ସକାଳେ ଏଲିକୁ ଦେଖିଲାବେଳୁ ଭାନୁର ଦିନଟି ବଦଳି ଯାଇଥିଲା । ରାଜୀବ ଅଫିସ୍‌ରୁ ଫେରିବାକ୍ଷଣି ସେଦିନ ବି ଭାନୁଙ୍କର କେତେକଥା କହିବାକୁ ଥିଲା ପୁଅକୁ । ଏବେ ପୁଣି ସୁମନ୍ତ ସାଙ୍ଗରେ ଯାଇଚି ଏଲି, ଫେରିବ ତାଙ୍କରି ଘରକୁ । ସହରରେ ତ ଗାଡ଼ି ଚାଲୁନି, ରାତିଟା ଏଇଠି ରହିବ ନିଶ୍ଚେ ।

ରାଜୀବ କହିଲା, 'ଅଞ୍ଜୁ ବୋଲି ଆଉ ଡାକିବୁ ନାହିଁ ତାକୁ । ତା ନାଁଟା ବଦଳି ଯାଇଚି ଜାଣିଚୁ ତ ?'

ଭାନୁ କହିଲେ, 'ଆରେ କାହିଁକି ତୁ ସେଇ କଥାରେ ଲାଗିଚୁ ସେଇଦିନୁ ? ନା ବଦଳିଲେ ସତରେ କ'ଣ ମଣିଷଟା ବଦଳି ଯାଏ ? ବାପା ନିଜେ ରାଗରେ ବିଧୂକୁ ଫିରିଙ୍ଗୀ ବୋଲି କହୁନଥିଲେ, ତା ପିଲାମାନଙ୍କୁ ବି ? ହେଲେ ତାଙ୍କର ଆସ୍ଥା ଥିଲା ବିଧୂର ପିଲାମାନେ ତାଙ୍କରି ଜାତି ବଂଶ ରଖିବେ ବୋଲି । ଭଲହେଲା, ଯାହାସବୁ ଘଟିଗଲା ସେ ଦେଖିବାକୁ ରହିଲେ ନାହିଁ ।'

ରାଜୀବ କହିଲା, 'ଯାହାହେଉ, ତୋ ଇଚ୍ଛା ଥିଲା ଅଞ୍ଜୁ ଆସୁ ଥରେ ବୋଲି, ଆପେ ଆସିଗଲା ।'

ଭାନୁ କହିଲେ, 'କହୁନଥିଲି ମୁଁ, ଖବର ଟିକିଏ ଦେ ତାକୁ । ଆସୁ ଟିକେ ଆମ ଘରକୁ, ଭାତଖାଇ ଯିବ ।'

'ଭାତ ସେ ଖାଉନଥିବ ମା । ତାଙ୍କର ସେଠି ପ୍ରାୟ ପାଉଁରୁଟି ମାଂସ ଖାଆନ୍ତି । ଆଉ ପିଉସୀ ପୁଅ ଭାଇକୁ ସେମାନେ ନିଜର ବୋଲି ଭାବନ୍ତିନି, ଘରେ ଆସି ରହିବା ଭଳି । ତୁ ମିଛଟାରେ ଉପରେ ପଡୁଚୁ । ତୋତେ ଚିହ୍ନିଲା ଯାହେଉ, ସେତିକି ବଡ଼ କଥା ।'

'ଚିହ୍ନିବନି, ତମମାନଙ୍କ କଥା ସବୁ ପଚାରୁଥିଲା । ପିଲାଦିନୁ ସେ କେଡ଼େ ଶାନ୍ତ ଶିଷ୍ଟ ଝିଅଟିଏ ।'

'ଆଉରି କିଛି ନା । ସେ ସାଇବାଣୀ ଥିଲା ପିଲାଦିନୁ ।'

ଭାନୁ କହିଲେ, 'ମୋର ମନେଅଛି, ଅଞ୍ଜୁ ଆସି ମୋ ପାଖେ ଜାକିହେଇ ଗପ ଶୁଣେ । ପାନଡ଼ାଲାରୁ ପାନ ମାଗେ ଡରିଡ଼ରି , ଖଣ୍ଡିଏ ଭାଙ୍ଗିଦେଲେ ତା ମାଆକୁ ଲୁଚେଇ ଖାଏ । ତା ପରେ ମୁହଁ ଧୁଏ କୁଳକୁଞ୍ଚା କରେ ।'

ପାନଟିଏ କଚ୍ଛରେ ଜାକି ଭାନୁ କହିଲେ 'ଭଲ ମଣିଷ ଥିଲା ତା ମା' ବି । ଆମ ବିଧୂ ସାଙ୍ଗେ ତାର ପଡ଼ିଲାନାହିଁ ସେ ଭିନ୍ନକଥା ସିନା । ବିଧୂର ତ ଗୁଣ ସେମିତି, କାହାକୁ ଦୋଷ ଦେବା ?'

ନିଜ ଶୋଇଲା ଘରେ ଲୁଗା ବଦଳୁ ବଦଳୁ ରାଜୀବ କହିଲା, 'ହଁ ମନେଅଛି । ସେତେବେଳେ ମାମୁ ଆସିଲେ ତମେ ସବୁ ଭଉଣୀମାନେ ମିଶି ଯାହା ଠାକୁର ପରି ତାଙ୍କର ପୂଜା କରୁଥିଲ, ସେଇଥିରେ ତାଙ୍କ ମୁଣ୍ଡଟି ବିଗିଡ଼ିଗଲା । ଅଜା ତ ଆମକୁ ଦୁଇ ଆଖିରେ ଦେଖିପାରୁନଥିଲେ, ତାଙ୍କର ପୁଅ ବୋହୂ ଆସିଲାବେଳେ ।'

ଭାନୁ ତମତମ ହୋଇ ଉଠିଗଲେ ନିଜ ବଖରାକୁ । ଠିକ୍ କଥା ନୁହେଁ ଭଏ । ରାଜୀବ କାହିଁକି ଏଡ଼େ ଅକୃତଜ୍ଞ ହେଲା । କମଳା ନିଳୟରେ ତାର କ'ଣ ସବୁ ଅଭାବ ପୂରଣ ହେଉପାରିଲା ନାହିଁ ତାର ହିସାବ ରଖିଚି, ହେଲେ ଯାହା ତା ନିଜ ବାପ ଜେଜେବାପଙ୍କର କରିବାର ଥିଲା, ନିଜ ଦାୟିତ୍ୱ ସେମାନେ ଖସେଇଦେଲେ ବିନା ଦୋଷରେ, ଅଜାଘର ଉପରେ ଲଦିଦେଇ ଦୂରି ହେଇଗଲେ, ସେକଥା କାହିଁ ବିଚାର କରୁନାହିଁ ତ । ହଉ ହେଲା, ବେଳ ଅବେଳରେ ସେ ନିଜେ ବି ନିଜ ବାପକୁ ନିନ୍ଦିଚନ୍ତି, ନିଜ ଅବସ୍ଥା ଲାଗି ଦାୟୀ କରିଚନ୍ତି । ଏଡ଼େ ଅକର୍ମା ଲୋକଟା ସାଙ୍ଗେ ଛନ୍ଦିଦେଲେ, ଖାଲି ଘର ବଂଶ ଦେଖି । ଏଡ଼େ ପାଠୁଆ ସାହେବ ବାପର ଝିଅ ହେଇ ଏମିତି ହୀନିମାନ ହେଇ ବାପଘରେ ପିଲାଛୁଆ ସମେତ ମୁଣ୍ଡ ଗୁଞ୍ଜି ଜୀବନଟା କାଟିଦେଲେ ଭାନୁ । ଶଶୁର ଘର ପଚାରିଲେ ନାହିଁ ସତ, ହେଲେ ସାଧୁ ନାୟକଙ୍କର କେଉଁ ଯଶ ରହିଲା । ନିନ୍ଦା ନୁହେଁ, ଅଭିମାନ କରି କହନ୍ତି ସେ ବେଳେ ବେଳେ ବାପାଙ୍କ ବିଷୟରେ ।

ଏ ପିଲାଏ ତାଙ୍କର ବୁଝନ୍ତିନି । ତିନିଝିଅ ରେ ପୁଅ ରାଜୀବ । ଖୁବ୍ ବଡ଼ ଲୋକ ନହେଲା ନାହିଁ । ନିଜ ଗୋଡ଼ରେ ଠିଆହୋଇ ଘର ସଂସାର କଲା, ସମାଜରେ ପାଞ୍ଚଜଣଙ୍କ ଭିତରେ ମୁଣ୍ଡଟେକି ଠିଆହେଇ ପାରିଲା, ଏମିତି କମ୍, କଥା ତା ଲାଗି ? କମଳା ନିଳୟ ରଘୁ ଓକିଲର ଅକ୍ତିଆର ଏବେ । କ'ଣ ନା ଏସବୁ ତ ସାଧୁ ନାୟକ ପିଲାମାନଙ୍କ ସମ୍ପତ୍ତି । ବାକି ସମସ୍ତେ ନିକଲ ବାହାର ଏଠୁ । କିଏ ତା ସାଙ୍ଗରେ କଳି କରିବାକୁ ଆଗଉ ନାହାନ୍ତି । ସାପ ଗାତରେ ହାତ ପୁରେଇବ କିଏ । ଭାଇ ଥାଉ ଥାଉ ତ ପଚାରିଲା ନାହିଁ ।

ଏଲିକୁ ସୁମନ୍ତ ଆଣି ଛାଡ଼ିଦେଇଗଲା, ସେଇକ୍ଷଣି ବିଜୁଳି ଆସିଗଲା । ସୁମନ୍ତ ଡାକି କହିଲା, 'ଦେଖ ଭାଇ, ବିଜୁଳୀ ଖେଳାଇ ତମ ଘରକୁ କିଏ ଆସିଚନ୍ତି ।'

ଏଲି ଦେଖୁ ଦେଖୁ ଚିହ୍ନିପାରିଲା ରାଜୀବ କୁ ।

ନଡ଼ିଆପୁର ଦିଆ ସୁଜି କାକରା ଆଉ ଖିରୀ କରିଥିଲେ ଭାନୁ । ଏଲିକୁ ବଳେଇ ବଳେଇ ଖାଇବାକୁ ଦେଇ କହୁଥିଲେ ନିଜ କାହାଣୀ, 'ମୁଁ ଥିଲି ଭାଇ ଭଉଣୀଙ୍କ ଭିତରେ ସବୁଠୁ ଅଭାଗୀ । ବଡ଼ ଭଉଣୀ ଆମର ପିଲାଦିନୁ ବାହାହେଇ ବି ଚାକିରିଆ ସ୍ୱାମୀ ପାଇଲେ, ଶାଶୁଘର ବଡ଼ କୋଠା, ସୁଖରେ ରହିଲେ ସିଏ । ମୋଠୁ ସାନ ତିନିଜଣ କଲେଜ ପାଠ ପଢ଼ିଲେ, ଡାକ୍ତର ପ୍ରଫେସର ହେଲେ । ମୋତେ ନା ଏପାଖ ମିଳିଲା ନା ସେପାଖ । ବାପଘରେ ଆଶ୍ରିତ ହେଇ ଜୀବନ କଟାଇଦେଲି ।'

ଏଲିର ମନେଅଛି, ଭାନୁ ପିଇସୀ ଆଉ ତାଙ୍କ ପିଲାମାନେ ସବୁଦିନେ ସେଇଠି ଥାଆନ୍ତି । କମଳା ନିଳୟ ତାଙ୍କର ବି ନିଜ ଘର ବୋଲି ତା'ର ଧାରଣା ହେଇଥିଲା ସେବେ ।

'ତୁ ବା କେମିତି ଜାଣିବୁ, ଜାଣି ବା କ'ଣ କରିବୁ, ତୋ ବାପା ଯେବେ ବିଲାତରେ ବାହାହେଇଚି ବୋଲି ଖବର ଆସିଲା, ତା ପୁଣି ମେମ୍ ଝିଅ ବାହାହେଇଚି ବୋଲି, ବାପା ତ ଏକାବେଳକେ ଭାଙ୍ଗି ପଡ଼ିଲେ । ବିଧୂ ତ ଥିଲା ଆମ ବାପା ମାଆଙ୍କ  ନୟନ ପିତୁଳା । ଭଲହେଲା ସେ ଖବର ଶୁଣିବାକୁ ମା ଆମର ନଥିଲେ । କେମିତି ସହିଥାନ୍ତେ ସେ ଧକ୍କା ?'

'ଏତେ ବଡ଼ ଦୁଃଖର ବିଷୟ ଥିଲା କଥାଟା ? ମୋ ବାପା ମା ଙ୍କର ବାହାଘର ଘଟଣା ?'

'ହେବନାହିଁ ? ମୋ ବାପାଙ୍କର କେତେ ଆଶା ଥିଲା ବିଧୂଠୁ, ତୁ କ'ଣ ବୁଝିବୁ । କ'ଣ ସେ ନକରିଚନ୍ତି ତାଙ୍କର ଗୋଟିଏ ବୋଲି ପୁଅ ଲାଗି, କେତେ ଉଚ୍ଚ ଅଭିଳାଷ ଥିଲା ତାଙ୍କର । ସେପରି ଲୋକ ଥିଲେ ବୋଲି ପୁଣି କ୍ଷମା କରିଦେଇ ତମମାନଙ୍କୁ ଆପଣେଇ ନେଲେ ନା ?'

ଖାଉ ଖାଉ ଏଲି ପଚାରିଲା, 'ତେବେ ମା ବାପା କ'ଣ ତାଙ୍କ ଉଚ୍ଚାକାଂକ୍ଷା ର ଅନୁରୂପ ହୋଇପାରିନଥିଲେ ? ଜେଜେ କ'ଣ ଗୋରା ଲୋକଙ୍କୁ ଏତେ ବେଶୀ ଘୃଣା କରୁଥିଲେ ?'

'ଆରେ ନାଇଁ ମ । ଗୋରା ସାହେବଙ୍କ ସାଙ୍ଗେ ପରା ଉଠା ବସା ଥିଲା ତାଙ୍କର, ସେକାଳେ ଥିଲେ ସେ ମାଜିଷ୍ଟ୍ରେଟ । କେଇଜଣ କଳାଲୋକଙ୍କୁ ମିଳେ ସେ ସମ୍ମାନ ? ସେଇଥିଲାଗି ସେ ପୁଅକୁ ବିଲାତ ପଠାଇଥିଲେ, ଗୋରାଙ୍କ ସାଙ୍ଗେ ପାଠ ପଢ଼ି ତାଙ୍କ ସାଙ୍ଗେ ସମାନ ହୋଇ ବାହାରୁ ବୋଲି । ତା ବୋଲି ତାଙ୍କ ଭିତରୁ ଗୋଟିଏକୁ ବାହାହେଇ ପଡ଼ିବ ? ଛି ଛି, କି ଲାଜକଥା । ତିନିପାଞ୍ଜିରୁ ଯିବା ସମାନ ।'

ଏଲି ଚୁପ୍ ହେଇ ଖାଇଲା । ଭାନୁ ପିଉସୀ ଙ୍କ ମୁଣ୍ଡର ତରଙ୍ଗ-ଦୈର୍ଘ୍ୟ ସାଙ୍ଗେ ତାଳ ଦେବାକୁ ଚେଷ୍ଟାକରିବା ତା ଲାଗି ବୃଥା । ବରଂ କାକରା ପିଠାର ରେସିପି ତାଙ୍କଠୁ ପଚାରି ଲେଖିନେବ, ଖିଆସରିଲା ପରେ ।

ଔପଚାରିକ କଥାବାର୍ତ୍ତା କିଛିବେଳ ପରେ ରାଜୀବ ପାଖ କୋଠରୀରେ ଟିଭି ଦେଖୁଥିଲା । ଗିନି ବି ପାଖରେ ବସିଲା କିଛି ସମୟ, ହେଲେ ଦିନ ଯାକ ଅଫିସ୍ କାମପରେ ଏ ପିଉସୀ ଝିଆରୀଙ୍କ ପରିବାର-ଇତିହାସ ଶୁଣିବା ଅପେକ୍ଷା ଟିଭି ସିରିଆଲ୍ ଟାଏ ବରଂ ଦେଖିଲେ ଭଲ ।

ଟି.ଭି. ଦେଖୁ ଦେଖୁ ରାଜୀବ ବେଳେ ବେଳେ କାନ ଡେରି ଦେଉଥାଏ ତେଣେ ଚାଲିଥିବା ଗପରେ । ପିଲାଦିନ ମନେ ପଡ଼ିଯାଉଥିଲା, କେବେହେଲେ ବି ଅନ୍ୟ ମାଉସୀ ପିଉସୀ ଘର ଭାଇଭଉଣୀଙ୍କ ଭଳି ଖୋଲା ଭାବ ନଥିଲା ଏଲି ବବିଙ୍କ ସାଙ୍ଗେ । ଦଶହରା ଲାଗି କମଳା ନିଳୟରେ ଏକାଠି ହୁଅନ୍ତି ସବୁ ବିବାହିତା ଝିଅମାନେ ନିଜ ପିଲାଝିଲାଙ୍କୁ ନେଇ । ଅଜାଙ୍କ ଭାଇଙ୍କ ପିଲାଝିଲା ମାନେ ବି ଆସନ୍ତି ଦେବୀ ମେଢ଼ ଦେଖିବେ ବୋଲି । ଦିନ କେତେ ମଉଛବ ଲାଗିଯାଏ । ମାମୁ ଗୋଟିଏ ବୋଲି ଭାଇ ପାଞ୍ଚ ଭଉଣୀରେ, ସମସ୍ତେ ତାଙ୍କ ଲାଗି ଭାଇଜୀଉନ୍ତିଆ ବ୍ରତ ରଖନ୍ତି, ଦୁର୍ଗାପୂଜା ଦଶମୀ ଦିନ ସକାଳୁ ଦୁବ ଚାଉଳ ଦେଇ ବନ୍ଦାନ୍ତି । ମାମୁ ଆସନରେ ବସିଥାନ୍ତି ସାମ୍ନାରେ ଭୋଗ ଥାଳି ଥୁଆହେଇଥାଏ । ଦୁର୍ଗାପୂଜା ଯାଇ ସାରିଥିଲେ ବି, ମାମୁ ଯେବେ କେଉଁ ବର୍ଷ ଶୀତଦିନେ ଆସନ୍ତି, ଠିକ୍ ଦଶହରା ପରି ମଉଛବ ହୁଏ । ସବୁ ବର୍ଷ ବି ସେ ଆସନ୍ତି ନାହିଁ । ମାମୁଁଙ୍କ କପାଳରେ ଚନ୍ଦନ ସିନ୍ଦୁର ଟୀକା ଲାଗେ, ଚାରିଆଡ଼େ ବେଢ଼ିଯାଇ ଦେଖୁଥାନ୍ତି ସବୁ ପିଲାଏ । ମାମୁ ଶେଷକୁ ଜଳଖିଆ ଥାଳିଆରୁ ଗୋଟିଏ ଲେଖାଁ ଉଠାଇ ପିଲାମାନଙ୍କୁ ଯାଚନ୍ତି । ଆଗରୁ ତାଗିଦା କରାଯାଇଥାଏ, ପିଲାଏ ମନା କରନ୍ତି, ନାଇଁ ମାମୁ, ନାଇଁ ନାଇଁ ଆମେ ଖାଇଚୁ, ତମେ ଖାଅ ।

ପିଲାଦିନେ ଯେବେ ଏଲି, ବବି ଆସନ୍ତି, ଅନ୍ୟ ସବୁ ପିଲାଙ୍କଠୁ କେଇହାତ ଉଚ୍ଚରେ ଥାଏ ତାଙ୍କ ସ୍ଥାନ । ସବୁ ସମ୍ପର୍କୀୟ ଭାଇଭଉଣୀମାନେ ତିଆର ହେଉଥାନ୍ତି ମନେମନେ, ଯେ ତାଙ୍କୁ ଏମିତି

ବ୍ୟବହାର କରିବାକୁ ହେବ, ସେମିତି ନୁହଁ । ପୁଣି ଇଂରାଜୀ ଟିକିଏ ଲେଖାଁ ବି ଅଭ୍ୟାସ କରିହୁଏ ତାଙ୍କ ସାଙ୍ଗେ । ତାଗିଦା କରାଯାଇଥାଏ ସବୁ ପିଲାଙ୍କୁ, ତାଙ୍କୁ ଚିଡ଼େଇବ ନାହିଁ କିଏ, ଏଣୁ ତେଣୁ ବାଜେ ପ୍ରଶ୍ନ ପଚାରିବ ନାହିଁ, ମାରିବା ଚିମୁଟିବା ତ ଦୂରର କଥା । ସବୁ ନୀତି ନିୟମ ମଞ୍ଜୁର କରିନେଇ ସବୁ ପିଲା ଘେରି ଯାଆନ୍ତି ତାଙ୍କ ଅଧା ସାହେବ ଭାଇ ଭଉଣୀ ଦିହିଙ୍କି ।

ଇଂରାଜୀ ଢାଞ୍ଚାରେ ଫୁଲେଇ ହେଇ କଥା କହେ ଏଇ ଅଞ୍ଜୁ । ଇଂରେଜୀରେ କହୁ କି ଓଡ଼ିଆ କହୁ, ତା କଥା ବୁଝିହୁଏ ନାହିଁ, ପାଞ୍ଚଥର ଏଁ ଏଁ ଏଁ କରନ୍ତି ସବୁ ପିଲାଏ । ଅନ୍ୟ ପିଲାଏ ହସି ହସି ଗଡ଼ି ଯାଆନ୍ତି । ସବୁ ବାରଣ ଭୁଲି ଅଞ୍ଜୁର କହିବା ଢଙ୍ଗକୁ ନକଲ କରନ୍ତି । ଖନେଇ ଖନେଇ ଇଂରାଜୀ କହନ୍ତି ତା ସଙ୍ଗେ, ଅଯଥା କଥା ପଚାରନ୍ତି ।

'ହ୍ୱାଟ୍ ଫ୍ରୁଟ୍ ଗ୍ରୁଡ୍ ଇନ୍ ଇଂଲଣ୍ଡ ?'

ଅଞ୍ଜୁ କି ଉତ୍ତର ଦିଏ ଶୁଣିବାକୁ କାହାରି ଧୈର୍ଯ୍ୟ ନଥାଏ । ପ୍ରଶ୍ନ ମାନଙ୍କରେ ହିଁ ଥାଏ ମନୋରଞ୍ଜନ । କେତେବେଳେ ବାସ୍ତବ ଉତ୍ସୁକ ଭାବ ବି ଥାଏ ।

'ୟୋର ଟୀଚରେ ବିଟ୍ ୟୁ ୱିଥ୍ ସ୍କେଲ୍ ?'

ସେମାନଙ୍କର ଅକାରଣ ହସରେ ଅପମାନିତ ହୁଅନ୍ତି ଏଲି, ବବି । କାନ୍ଦି ପକାନ୍ତି ହୁଏତ ଅଥବା ଦଉଡ଼ି ପଳାନ୍ତି ତାଙ୍କ ଉପର କୋଠରୀର ଦୁର୍ଗକୁ, କହି କହି, 'ୟୁ ଡର୍ଟି କିଡ୍ସ୍ ।'

ପରେ ସମସ୍ତେ ଛାତ ଉପରେ ଖେଳୁଥିଲା ବେଳେ ଆପେ ବନ୍ଧୁତା କରିବାକୁ ଆସନ୍ତି ଭାଇଭଉଣୀ ଦିହେଁ, ଓଡ଼ିଆରେ ଡାକନ୍ତି, 'ରାଜୁ ଭାଇ, ଆଜି ସ୍କୁଲ ଯାଉନ କି ?'

ଶୁଦ୍ଧ ଓଡ଼ିଆରେ ଉତ୍ତର ମିଳେ, 'କିପରି ଯିବୁ ଆମ୍ଭେମାନେ ? ତୁମ୍ଭପରି ମହତ୍ତ୍ୱପୂର୍ଣ୍ଣ ଲୋକ ଥିବାଯାକେ ଆମ୍ଭର ସ୍କୁଲ୍ ବନ୍ଦ ।'

ହସରୋଳରେ ଭାଗନେଇ ପାରନ୍ତି ନାହିଁ ବିଚରା ଭାଇଭଉଣୀ । ଅଞ୍ଜୁର ମନେଥିବକି ପିଲାଦିନର ସେ ଅପମାନର କଥା ?

ତେବେ ଭଲ ସମୟ ବି ମନେଥିବ । ନହେଲେ ଆସନ୍ତା କାହିଁକି ଏଠିକି, ସେବା କରିବାକୁ ତ ପୁରା ଭାରତ ପଡ଼ିଚି । ନିଶ୍ଚେ ତାର ମନେଥିବ, ଦି ଭାଇଭଉଣୀଙ୍କୁ କେତେ ପରିଶ୍ରମ କରି ଓଡ଼ିଆ ଶିଖାଇଚି ରାଜୀବ ନିଜେ । ଅନ୍ୟ ମାଉସୀ ମାନଙ୍କ ପିଲାଙ୍କଠୁ ତ ସେ ସହଜେ ନିଊନ ଥାଏ । ସମସ୍ତଙ୍କ ଦୃଷ୍ଟିରେ ପରାଶ୍ରିତ । ସବୁ ପିଲାଙ୍କୁ ମନାଥାଏ ମାମୁଙ୍କ କୋଠରୀକି ଯିବାଲାଗି । ଥରେ ସେ ଚାଲିଯାଇଥିଲା । ବବିର ଚାବିଲଗା ଗାଡ଼ିଟିଏ ଉଠେଇନେଇଥିଲା ତଳୁ । ଚାବି ଦେଇଥିଲା, ତଳେ ଥୋଇ ଚଳନ୍ତା ଗାଡ଼ି ଦେଖି ଖୁସିହେଇଥିଲା । ଚଳନ୍ତା ଗାଡ଼ି ସେ ନ ଦେଖିଚି ତା ନୁହେଁ । ହେଲେ ଏଡ଼େ ସୁନ୍ଦର କେବେ ନୁହେଁ । ତାଛଡ଼ା ରାଜୀବ ଲାଗି ପିଲାଦିନେ ନୂଆ ଖେଳନା ପ୍ରାୟ ଆସେନାହିଁ ।

ସେଦିନ ମାଇଁ, ଅଞ୍ଜୁର ଇଂରେଜ ମାଆ ଧୀରେ କରି ଭୂଇଁରୁ ଖେଳନାଟି ଉଠେଇ ଟେବୁଲ ଉପରେ ଥୋଇ ଦେଇଥିଲେ । ଶୀତଳ ଦୃଷ୍ଟିରେ ଚାହିଁ ଦଶବର୍ଷର ରାଜୀବ କୁ ଇଂରାଜୀରେ କହିଥିଲେ, 'ଏ କୋଠରୀ ଭିତରକୁ ଆସିବ ନାହିଁ । ବାହାରେ ଖେଳିବ ଯାଅ ।'

ରାଜୀବଙ୍କୁ ଅନାହୂତ ଚାପୁଡ଼ା ଖାଇଲା ପରି ଲାଗିଥିଲା । ସେ କ'ଣ ସନ୍ଦେହ କରୁଥିଲେ ଖେଳନାଟି ରାଜୀବ ନେଇଯିବାକୁ ବସିଚି ବୋଲି ନା କ'ଣ । ମାମୁଁ ଅନ୍ୟ ପିଉସୀମାନଙ୍କ ପିଲାଙ୍କୁ ଦାମୀ ବିଲାତୀ ଚକଲେଟ ପ୍ୟାକେଟ ଦେଉଥିଲେ । ଆଶ୍ରିତ ଭଣଜା ଭାଣିଜୀ ମାନଙ୍କୁ ସେପରି ଡବା କେବେ ମିଳୁନଥିଲା, ଖୋଲା ଗୋଟିଏ ଅଧେ ଚକଲେଟ ମିଠେଇ ଦେଇଦିଅନ୍ତି । ଫେରିଗଲା ବେଳେ କିଛି ପୁରୁଣା ଜିନିଷ ବି ଦିଅନ୍ତି । ପରେ ଅବଶ୍ୟ ମାଆଠୁ ସେ ଶୁଣିଥିଲା ତାଙ୍କୁ ସାନ ଭାଇଟି ହାତରେ ଟଙ୍କା ଦେଇଯାଏ, ସାହାଯ୍ୟ କରେ । ନହେଲେ କଣ ବଗିଚା ଘର ମାଟିଘରଟି ବି ସେ ମରାମତି କରିପାରିଥାନ୍ତେ । ଆଶ୍ରିତ ବେଳର ସ୍ମୃତି ଆଉ ସେତେ ନାହିଁ । ସେମିତି ନାହାନ୍ତି ଅଞ୍ଜୁ ଆଉ ବବି ।

ଏଲି ଜାଣିବାକୁ ଚାହୁଁଚି, ସାଧାରଣ ଭାରତୀୟ ଟିଏ ଗୋରା ଲୋକଙ୍କୁ ପ୍ରକୃତରେ ଘୃଣା କରୁଥିଲା, ନା ସମ୍ମାନ ? ଭାନୁ ବୁଝାଇବାକୁ ଚେଷ୍ଟା କରୁଥିଲେ ସେ କଠିନ ଗଣିତ । କେମିତି ବୁଝିବ ଏଲି, ଅଧା ଇଂରେଜ ଝିଅଟି, ମାଟିଆ ଲୋକଙ୍କ ଆଖିରେ ଠିକ୍ କେମିତି ଦିଶୁଥିଲା ସେତେବେଳେ ଇଂରେଜ ଲୋକ ? ଅଧା ଦେବତା ଥିଲା ସେ, ଅଧା ରାକ୍ଷସ । ସଞ୍ଜବେଳେ ବାପା ଫେରନ୍ତି ଅଫିସ୍‌ରୁ । ଦାଣ୍ଡଘରେ ଜୋତା ମୋଜା କୋଟ୍ ଟାଇ ଜାମା କାଢ଼ି ପକାଇ ଖାଲି ପାଦରେ ସିଧା ଚାଲିଯାନ୍ତି ବାରି ପାଖକୁ, ଭିତର ଅଗଣା ମଝି ଅଗଣା ଡେଇଁ ଏକାବେଳକେ ବଡ଼ ବାରି । ବଡ଼ ପାଟିରେ ଡାକି କହିଯାଆନ୍ତି, କୂଅ ମୂଳକୁ ଧୋତି ଗାମୁଛା ପଠେଇଦେବ ।

ଚାକର ଭୀମା ଧୋତୀ ଗାମୁଛା ସାଙ୍ଗେ ସାବୁନ ବି ନେଇ ପହଞ୍ଚିଲା ବେଳକୁ ସାହେବ ସାଧୁ ନାୟକ କୂଅରୁ ନିଜେ ପାଣିଟଣା ଆରମ୍ଭ କରିଦେଇଥାନ୍ତି । କେବେ କେବେ ଭୀମା ଆଗ ଧାଇଁଯାଏ ପାଣି ଟାଣିବାକୁ, ଭାନୁ ପଛେ ପଛେ ଯାଏ ଧୋତୀ ଗାମୁଛା ନେଇ । କେବେ ବା କୂଅ ଚାନ୍ଦିନୀରେ ପଡ଼ିଥିବା ପିତଳ ଯୋଡ଼ ଲଗା ବଡ଼ କାଠ ପିଢ଼ାରେ ବସି ଭୀମାକୁ କହନ୍ତି, ଦେ ଅଜାଡ଼ ପାଣି । ବାଲଟି ପୁରା ତାଙ୍କ ମୁଣ୍ଡରେ ପାଣି ଅଜାଡ଼େ ଭୀମା । ଭାନୁ ବୁଝିପାରେ, ବାପାଙ୍କୁ ଡର ସହୁନାହିଁ ସେ ମଇଲା ଗନ୍ଧ ଯାକ ଧୋଇ ପକାଇବାକୁ । ଯଦିଓ କେବେ ଭରସି ପଚାରିନାହାନ୍ତି ତାଙ୍କ ପିଲାଏ, ସାଧୁ ନାୟକଙ୍କ ସାହେବୀ ପଣିଆର ଅସଲ ମଞ୍ଜଟି ସମସ୍ତେ ଧରିଥିଲେ, ଖାଲି ବିଧୁ ଛଡ଼ା । ନିତି ଗାଧୁଆ ବେଳେ ପଇତାକୁ ମାଜି ମାଜି ଧୁଅନ୍ତି ସେ । ଧୋତି ପିନ୍ଧି ଦେଇ କେତେ ରକମ ମନ୍ତ୍ର ଜପି ଜପି ସେ ସିଧା ଚାଲିଯାଆନ୍ତି ଅନ୍ଧାରୁଆ ଠାକୁର ଘରକୁ । ସେଠି ଟିକିଏ ପୂର୍ବରୁ ସନ୍ଧ୍ୟା ଦେଇ ଯାଇଥାଏ ମା, ତୁଳସୀ ଚଉରାରେ ଦୀପ ଜଳୁଥାଏ ।

ଭାନୁ ଲମ୍ବ ନିଶ୍ୱାସ ଟିଏ ଛାଡ଼ିଲେ, ଛାତି ଜମାଟ ବାନ୍ଧି ଆସୁଚି । କୁଆଡ଼େ ଉଡ଼ିଯାଇଚି ସେ ଦିନ ସବୁ । ମେଘ ଖଣ୍ଡେ ଭଳି ଉଭାନ୍ ହେଇଯାଇଚି ।

କହିଲେ ଏଲିକୁ, 'ତୁ ଆମ ମାଆକୁ ଦେଖି ପାରିଲୁନି ରେ ଅଞ୍ଜୁ । ତାଙ୍କ ଯୁଗରେ ଆଉ ପ୍ରକାରେ ଥିଲା ଆମ ଘର ।'

ଏଲି କହିଲା, 'ଜେଜେ ମାଙ୍କ ଫଟୋ ଦେଖିଚି ମୁଁ । ଆମ ଘରେ ଥିଲା । ବାପା ତାଙ୍କ ଟେବୁଲ୍ ସାମ୍ନାରେ ରଖିଥିଲେ, ତାଙ୍କ ଭଉଣୀ ବାହାଘର ବେଳ ଫେମିଲି ଫଟୋ । ତାଙ୍କ ପିଲାଦିନର ଫଟୋ ରେ ବି ତାଙ୍କ ମା ଅଛନ୍ତି, ସେତେବେଳେ ସେ ଲେସ୍ ଲଗା ବ୍ଲାଉଜ୍ ପିନ୍ଧୁଥିଲେ, ନୁହେଁ ?'

ଭାନୁ ହସିପକେଇଲେ, ଆଖିରୁ ଲୁହ ପୋଛି କହିଲେ, 'ନାଇଁ ରେ ମା, ସେ ଜମାରୁ ବ୍ଲାଉଜ ପିନ୍ଧୁନଥିଲେ ସେତେବେଳେ । ସେଇ ଦିଇଟା ଲେସ୍ ଲଗା ବ୍ଲାଉଜ୍ ବାପା ତାଙ୍କ ଲାଗି କଲିକତାରୁ ଆଣିଦେଇଥିଲେ । ତାକୁଇ ପିନ୍ଧି ସେ ଫଟୋ ଉଠେଇଥିଲେ, ଅକାଳେ ସକାଳେ ପିନ୍ଧିଦେଉଥିଲେ ପାଟ ଲୁଗା ସାଙ୍ଗେ । ଆମେ କଟକରେ ଯେତେବେଳେ ରହୁଥିଲୁ, ବାପା ମଝିମଝିରେ କଲିକତା ଯାଆନ୍ତି, ମୁଁ ବି ଯାଇଚି ଥରେ ତାଙ୍କ ସାଙ୍ଗେ ।'

ଭାନୁ କହୁଥିଲେ ତାକୁ, 'ସେତେବେଳେ କେହି ଏଠି ବ୍ଲାଉଜ ପିନ୍ଧା ଜାଣିନଥିଲେ । ବୁଝୁଚୁ ତ, ଚାଳିଶ ମସିହା ପାଖାପାଖି କଥା କହୁଚି । ଏ ସହରରେ ଆମେ ଭଉଣୀମାନେ ପ୍ରଥମ କରି ସାୟା ବ୍ଲାଉଜ ପିନ୍ଧିଲୁ, ସାୟା ଉପରେ କୁଞ୍ଚକରି ଶାଢ଼ୀ ପିନ୍ଧୁଥିଲୁ ବୋଲି ଯୋଉ ପାଟିତୁଣ୍ଡ ହେଲା ସମାଜରେ, କଣ କହିବି ?'

'ଅନ୍ୟମାନେ କେମିତି ଲୁଗା ପିନ୍ଧୁଥିଲେ ?'

'ଖାଲି ଦେହରେ ସାଧା କରି ଗୁଡ଼େଇ ପିନ୍ଧୁଥିଲେ, ଗାଁ ଗଣ୍ଡାରେ ଏବେବି ପିନ୍ଧନ୍ତି, ବୁଢ଼ୀଲୋକେ ବି ପିନ୍ଧନ୍ତି, ଦେଖିଥିବୁ କି ନାଇଁ ?'

'ଲୋକେ ଆପତ୍ତି କଲେ କାହିଁକି ସେଥିରେ, ସାୟା ବ୍ଲାଉଜ ପିନ୍ଧିଲେ କ୍ଷତି କଣ ଥିଲା ତାଙ୍କ ଦୃଷ୍ଟିରେ ?'

ତା ପ୍ରଶ୍ନକୁ ନ ଶୁଣି ଭାନୁ କହିଲେ, ସ୍ମୃତି ତାଙ୍କ ଗଳାକୁ ଏଥର ଚଟେଇ ଦେଇଥାଏ, 'ଆମକୁ ଡାକିଲେ ନାଚନୀ, ମାନେ ନାଚୁଣୀ । ବୁଝିଲୁ ? ବେଶ୍ୟେନ୍ ବି କହୁଥିଲେ । ମାନେ ବେଶ୍ୟା । କଲିକତା, ବନାରସ ଯାଇ ଦେଖି ଆସିଥିଲେ ଜଣକେତେ, ସେଠି ସେମିତିକା ସ୍ତ୍ରୀ ଲୋକଙ୍କୁ ହିଁ ଦେଖି ଆସିଥିବେ ଆଉ କଣ ?'

ଏଲି ହସି ପକେଇଲା, ଭାନୁ ବି ହସିଲେ ତା ସାଙ୍ଗେ । କହିଲେ, 'କେଡ଼େ ଦୁଃଖ କଷ୍ଟ ଆମେ ସହିଚୁ ପାଠ ପଢ଼ିବା ଲାଗି । ଏ ଛୋଟିଆ ସହରଟିରେ ଅନ୍ୟ ରାଜ୍ୟର ଆଧୁନିକ ଶିକ୍ଷିତ ଝିଅଙ୍କ ପରି ଲୁଗାପଟା ପିନ୍ଧିବା ଲାଗି, କଣ ତୋତେ ବୁଝେଇବି ?'

'ମୋ ବାପା କେମିତି ଡ୍ରେସ୍ ପିନ୍ଧୁଥିଲେ ପିଲାଦିନେ ?'

ଭାନୁଙ୍କ ହସୁରା ମୁହଁ ପୁଣି ଉଦାସ ହେଇଗଲା । ମନେ ପକେଇଲେ ସେ ।

'ତୋ ବାପା କ'ଣ ଅନ୍ୟ ଦେଶୀ ପିଲାଙ୍କ ପରି ବଢ଼ିଥିଲା ରେ ମା ? ଆମ ବାପା ତ ତାକୁ ସାହେବ ପିଲା ପରି ବଢ଼ାଇଥିଲେ । ସିଏ କିନ୍ତୁ ଦୋମୁହାଁ ଥିଲା ପିଲାଟି ଦିନୁ । ସ୍କୁଲରୁ ଫେରିଲେ ଘରୁ ବାହାରି ଯାଇ କଡ଼ ଗଳି ବାଟେ ପଛ ଗଳି ପିଲାଙ୍କ ସାଙ୍ଗେ ସାଙ୍ଗ ହୁଏ । ସକାଳୁ ସଫା ଡ୍ରେସ୍

ପିନ୍ଧି ସୁନାପିଲା ପରି ସେମାନଙ୍କୁ ଚିହ୍ନେ ନାହିଁ । ବାପା କଟକରେ ଥିଲାବେଳେ ବିଧୂ ଆମର ଷ୍ଟୁଆର୍ଟ ରେ ପଢୁଥାଏ । ତା ଗୋରା ମାଷ୍ଟର ଜଣେ ଆମ ଘରକୁ ଆସନ୍ତି, ଭାରୀ ଭଲପାଆନ୍ତି ତାକୁ । ଲାଇବ୍ରେରୀ ରୁ ଏଡ଼େ ମୋଟା ବହିମାନ ଆଣି ବିଧୂ ଦିନକରେ ପଢ଼ିପକାଏ କିନା ।'

॥୧୭॥

ସାଧୁ ନାୟକଙ୍କ ପୁରୁଣା ବଗିଚା ଘର ମରାମତି ହେଇ ଭାନୁଙ୍କ ପୂଜାଘର, ଭଣ୍ଡାରଘର ଆଉ ଶୋଇଲାଘର । ସେଇଠି ଭାନୁଙ୍କ ଖଟ ପାଖରେ ଆଉ ଗୋଟିଏ ବେଲୁରି ଖଟରେ ବିଛଣା ପଡ଼ିଥିଲା ଏଲି ଲାଗି, ତାଆରି କହିବାରେ । ଗିନି ତାର ଛଅଟି ନାଇଟିରୁ ବାଛି ପିନ୍ଧିବାକୁ ଦେଇଥିଲା । ଭାନୁଙ୍କର କାହାଣୀ କୁହା ଚାଲିଚି । ଖପର ଛାତରେ ପଙ୍ଖାଟି ଘୁଁ ଘୁଁ ଶବ୍ଦ କରି ଘୁରୁଚି, ତାରି ସ୍ମୃତି ସାଙ୍ଗେ ଫେଣ୍ଟି ହେଇ ରହିଚି ଯେଉଁ ସବୁ ଛବି, ସେଇ ପୃଷ୍ଠଭୂମିରେ ଘଟି ସାରିଥିବା ଆହୁରି କେତେ ନା କେତେ ଚିତ୍ର ପୁଣି ଆଙ୍କି ହେଇଯାଉଚି ଏଲି ଆଖିଆଗରେ ।

ବାପା ଦମ୍ଭକରି ଝିଅମାନଙ୍କୁ ପାଠ ପଢ଼ାଇଥିଲେ ସତ । କିନ୍ତୁ ତାଙ୍କ କଥା ଭିନ୍ନ ଥିଲା । ଭାଇଟିର ଭବିଷ୍ୟତ ସମ୍ଭାବନାକୁ କେବେ ପ୍ରଶ୍ନ କରିନାହାନ୍ତି ଭଉଣୀମାନେ । ମନେ ମନେ ଯେତେ ହିଂସା ବାଦ ଥାଉ ପଛେ ମୁହଁରେ ଫୁଟାଇବା ଭଳି ଆତ୍ମବିଶ୍ୱାସ ସେମାନଙ୍କର ନଥିଲା । ବିଗିଡ଼ା ମୁଣ୍ଡ ଭାଇଟି ଆହା । ଏତେ ଗେହ୍ଲା ନା ହେଇଥାନ୍ତା ଭଲା । ବିଗିଡ଼ିଯାଇ ନଥାଆନ୍ତା ଏମିତି । କଣ ଭୁଲ୍ ହେଲା ତା ବଢ଼ିବାରେ, ଏତେ ନିଷ୍ଠାପର ଘରେ ରହି ଏଡ଼େ ଅନାଚାର ସବୁ କଲା । ମା ତାକୁ ନୟନ ପିତୁଳା କରି ରଖିଥାନ୍ତି । ବାପା କଥା କଥାକେ ବେତ ଛିଡ଼େଇ ଦିଅନ୍ତି । ସେମିତି ଥିଲା ସେ ଯୁଗର ଶାସନ ବାପା ମାନଙ୍କର ।

ପିଲାଟି ଦିନରୁ ଦୁଷ୍ଟ ଥିଲା ଗେହ୍ଲା ଭାଇଟି, ଯେତେ ମନାକଲେ ବି ସିଧା ଦିଶୁଥିବା ବାଟ ଛାଡ଼ି ବଣଝାଟି କୁ ପାଦେ ଚାଲିଯିବାକୁ ତାର ତର ସହେନାହିଁ । ତା ପିଲାଟି ଦିନରୁ ବାପା କହୁଥିଲେ, 'ମୁଁ ତ ଦରିଆପାରି ଯାଇ ଆଇ.ସି.ଏସ୍. ପରୀକ୍ଷା ଦେଇ ପାରିଲିନି କାହିଁକି ନା ମୋର ଯିବାକୁ ସମ୍ବଳ ନଥିଲା । ଆମ ବିଧୂ ଯିବ । ପାଠ ପଢ଼ିବ ଲଣ୍ଡନରେ, ଆଇ.ସି.ଏସ୍ ପରୀକ୍ଷା ଦେଇ ସିଧା ମାଜିଷ୍ଟ୍ରେଟ୍ ହେଇ ଫେରିବ ।' ଭଲ ପାଠ ପଢୁଥିଲା, ସ୍କୁଲରେ ହେଡମାଷ୍ଟରଙ୍କୁ କହି ଡବଲ ପ୍ରମୋଶନ ଦିଆଇଲେ ସେ ବିଧୂକୁ । ନିଜେ ବସି ପାଠ ପଢ଼ାନ୍ତି, ସକାଳ ତିନିଟାରୁ ନିଦରୁ ଉଠାନ୍ତି ତାକୁ । କହନ୍ତି ବ୍ରାହ୍ମ ମୁହୂର୍ତ୍ତର ଘଣ୍ଟାଏ ମାନେ ଅନ୍ୟ ସମୟର ତିନିଘଣ୍ଟା ପରିଶ୍ରମ ସାଙ୍ଗେ ସମାନ । ପୁଅଟି ସାଙ୍ଗରେ ନିଜେ ପରିଶ୍ରମ କରି ପୁଣି ଦିନଯାକ ଅଫିସ୍ କାମରେ ଖଟିବାକୁ ତାଙ୍କୁ ଟିକିଏ ବାଧେ ନାହିଁ । ନିଶ ଦାଢ଼ି ଉଠିନଥିବା କଅଁଳ ହାଫ୍‌ପେଣ୍ଟ ପିନ୍ଧା ପିଲାଟି ଢୁଳେଇ ଢୁଳେଇ ବାପାଙ୍କ ପାଖରେ ବସି ପାଠ ପଢ଼େ । ଯେତବେଳେ ଭଲ ମାର୍କ ପାଇ ମ୍ୟାଟ୍ରିକ୍ ପାସ୍‌କଲା, ବାପା କହିଲେ, ସେ ଆଉରି ଭଲ କରିଥାନ୍ତା, ଯଦି ତାକୁ ଠିକ୍ ପରୀକ୍ଷା ପୂର୍ବରୁ ମିଳିମିଳା ହେଇନଥାନ୍ତା ।

ଫିଜିକ୍ସ ଅନର୍ସ ରେ ଫାଷ୍ଟକ୍ଲାସ୍ ପାଇ ବି.ଏସ୍‌ସି.ପାସ୍ କଲାବେଳକୁ ବି ବିଧୂ ସେମିତି କଅଁଳିଆ ମୁହଁ ହାଫ ପେଣ୍ଟ ପିନ୍ଧା ପିଲା ହୋଇଥାଏ । ସେତେବେଳେ ହିଁ ବାପା ତାକୁ ପଠେଇଦେଇଥାନ୍ତେ ବିଦେଶକୁ, ମା ନେହୁରା ହେଲା, 'ପିଲା ହେଇଚି ନିହାତି । ଏକୁଟିଆ ପାଣି ଜାହାଜରେ ବସି ବିଦେଶ ଯିବ ? ଆଉ ଦିଇଟା ବର୍ଷ ପଢ଼ିସାରୁ ପଠେଇବ ।'

ଗୋରା ସାହେବଙ୍କ ସାହାଯ୍ୟରେ ବାପା ଲଣ୍ଡନର ଇମ୍ପେରିଆଲ୍ କଲେଜ୍‌ରୁ ଫର୍ମ ମଗାଇଥିଲେ । ବିଧୂ କୋଡ଼ିଏ ବର୍ଷର ହୋଇଥାଏ । ଯିବାକୁ କେଇଟା ଦିନ ବାକିଥାଏ, ଭାନୁର ମନେଅଛି, ବିଧୂର ଉତ୍ସାହ ସବୁ କୁଆଡ଼େ ଉଭେଇଗଲା । ଛାନିଆ ହୋଇପଡ଼ିଲା ବିଚରା । ବାପା ବିରକ୍ତ ହେଲେ, 'ଇଏ କଅଣ ? ଏ ଟୋକା ଏମିତି ବାଳୁଙ୍ଗା ପରି କାହିଁକି ହେଉଚି । ଏ ସହରରୁ ଇଏ ପ୍ରଥମ ବିଲାତ ଯାଉଚି ନା କଣ ?'

ଜଣେ ଦି'ଜଣ ଯେଉଁମାନେ ସେତେବେଳକୁ ବିଦେଶ ଯାଇ ଫେରିଥିଲେ ତାଙ୍କ ନାଁ ଗଣେଇଲେ ବାପା, 'ଏମିତି ଆଜେ ବାଜେ ଲୋକ ବିଦେଶରୁ ଫେରି ବାହସ୍ଫୋଟ୍ ମାରୁଚନ୍ତି, ତୁ ମୋ ପୁଅ ଯିବୁ ନିଜ ପ୍ରତିଭାରେ ନିଜ ବୁଦ୍ଧି ବଳରେ, କାହାକୁ ଡରିବାର କ'ଣ ଅଛି ?'

ବାପା ବୁଝାଇ କହିଲେ ମାଆକୁ, ଘରେ ସମସ୍ତଙ୍କୁ, 'ସରକାରୀ ଚାକିରୀଟେ ଲେଖାଁ କରି ଏମାନେ ସାହେବ ଠାଣୀରେ ରହୁଚନ୍ତି, ଗାଡ଼ି ଘୋଡ଼ା ଚାକର ବାକର କାହିଁରେ ଊଣା ନାହିଁ । ଭଲକରି ଇଂରେଜୀ ଦିପଦ ପଛେ କହିପାରୁନଥାନ୍ତୁ । ଆମର କ'ଣ ନାହିଁ ? ପୁଅକୁ ଏଇଠି ଯଦି ପଢାଇବି, କ'ଣ କିରାଣୀ ଟିଏ କି ମାଷ୍ଟରଟିଏ ହେବ ସେ ?'

ବିଧୂ ଏଣେ ତେଣେ ଲୁଚି ଲୁଚି କାନ୍ଦୁଥାଏ । ଠିକ୍ ଯିବା ପୂର୍ବଦିନ, ବାପା ତାକୁ ନେଇ କଲିକତା ଯିବେ, ବିଧୂ ମାଆଙ୍କ କୋଳରେ ମୁହଁ ମାଡ଼ି କାନ୍ଦି କାନ୍ଦି ଉଛନ୍ନ ହେଇଗଲା । ବାପା ଗାଳିକଲେ ମାଆକୁ, 'କାନ୍ଦ, ଆଉରି କାନ୍ଦି ବାହୁନି ନଷ୍ଟ କରିଦିଅ ପିଲାଟାକୁ । ତା ଭବିଷ୍ୟତକୁ ମାଟି କରିଦେଲେ ଯାଇ ତମର ଶାନ୍ତି । କୋଡ଼ରେ ପୁରେଇ ରଖିଥାଅ । ଯାଇ ସେ ଶେଷକୁ ସରପଙ୍କ ଗାଁରେ ଚାଷକରି ପେଟ ପୋଷୁ ।'

ବାରଣ୍ଡାର ଏମୁଣ୍ଡରୁ ସେମୁଣ୍ଡ ଚାଲି ଚାଲି ବାପା କହୁଥାନ୍ତି, 'କୋଉ ମାଟିଖିପର ଘରୁ ଉଠି, ଗରିବ ଚାଷୀଘରର ପୁଅ ହେଇ ମୁଁ ମାଜିଷ୍ଟ୍ରେଟ୍ ହେଲି, ମୁଁ ପୁଅକୁ ମୋ ଠୁ ବଡ଼ କରିବି ନା ନାହିଁ ? ମୁଁ କହୁଚି ଛାଡ଼ିଦିଅ ତାକୁ କୋଳରୁ । ମା ଯଦି ହେଇଚ, ତାର ଶୁଭ ମନାସ ଯେ ସେ ମଣିଷ ହେଉ, ବିଲାତ ଯାଇ ବଡ଼ ମଣିଷ ହେଇ ଫେରୁ ।'

ବିଚାରୀ ମାଆ । କେଡ଼େ ସ୍ନେହୀ, ଦରଦୀ, ନିଜ ସୁଖଦୁଃଖ ଭୁଲି ଘରକରଣାରେ ବୁଡ଼ିଥିବା ମଣିଷଟି ଆହା । ଠାକୁର ପୂଜା, ପୁରାଣ ପାଠରେ ଯାହାର ସମୟ ଅଣ୍ଟେ ନାହିଁ । କାହିଁକି ଏତେ ଦୁଃଖ ମିଳିଲା ତାକୁ, ଏତେ ବଡ଼ଘର ଝିଅ, ବଡ଼ଘର ବୋହୂ ହେଲା, ଧନଜନ ଗୋପଲକ୍ଷ୍ମୀ କାହିଁରେ କିଛି ଊଣା ନଥାଇ ବି ? କଅଣ ହେଲା ତା'ର ଦୋଷ, କାହିଁକି ସେ ଏତେ ବେଶୀ ବାନ୍ଧି ହେଇ ପଡ଼ିଥିଲା ତା ପୁଅଟି ସାଙ୍ଗରେ ? ତାର ଅନ୍ୟ ପିଲାମାନେ କିଏ ଯଦି ପାଖଛାଡ଼ି ଯାଇଥାନ୍ତେ, ଏମିତି ହାହୁତାଶନ

କ'ଣ ହୋଇଥାନ୍ତା ସେ ? ପାଞ୍ଚ ଝିଅରେ ପୁଅ ହେଲା ବୋଲି ଏବେ ଢ଼ଙ୍ଗ ଅଥର୍ବ କରିଦିଏ ମୋହାନ୍ଧ ମାଆ ପଣ ?

ବିଧୂ ବିଲାତ ବାହାରିଗଲା ଦିନ ତା ଯିବା ବାଟକୁ ଅନେଇ ରହି ମୂର୍ଚ୍ଛା ଯାଇଥିଲା ମା, ଦି ଘଣ୍ଟାରେ ଚେତା ଫେରିଥିଲା । ଯୋଉଠି ବସିଲା ମୁହଁ ଉଦାସ, ଲୁଚେଇ ଲୁଚେଇ ଆଖି ପୋଛୁଥାଏ ପରିବା କାଟୁ କାଟୁ, ପୂଜା କରୁ କରୁ । ମାସ କେଇଟା ଯାଇନଥିବ ମାଆର ଷ୍ଟ୍ରୋକ୍ ହେଲା, ଅଧା ଅଙ୍ଗ ପଡ଼ିଗଲା । ଦିନକେତେ ପରେ ଟିକିଏ ସାଷ୍ଟମ ହେଇ ମୁହଁରୁ ତାର କଥା ବହାରିଲା କ୍ଷଣି ବିଛଣାରେ ପଡ଼ି ପଡ଼ି ଘୋଷା ଲଗେଇଲା, 'ମୋ ବିଧୂକୁ ଡାକରେ । ମୋ ବାବୁ କୁ ଡାକିଦିଅ । କାହିଁ ଗଲା ମୋର କଳା କହ୍ନାଇ, ମୋ ନୀଳରତନ, କୋଉ କଂସ ରାଇଜକୁ ପଠେଇ ଦେଇ ତାକୁ ? ଡାକିଆଣ ରେ କିଏ ମୋ ଧନକୁ...'

ବାପା ପ୍ରଥମେ ବୁଝାସୁଝା ସାକୁଲା ସାକୁଲି କଲେ, ତାପରେ ରାଗିଲେ । 'କି ପାଲା ଲଗେଇଚ ତମେ, କଣ ଏମିତି ହେଇଚି କି ତମର ? ପୁଅ କୁ ଡାକିବି ଏତେ ବାଟରୁ ? ଦମ୍ଭଧର, ଡାକ୍ତର କହିଚି ଭଲ ହେଇଯିବ ।'

ମାଆ କହିଲା, 'କିଏ ଭଲହେଲାଣି ଏଥିରୁ ? ବିଧୂକୁ ଚିଠି ଲେଖ, ଜାହାଜ ଖର୍ଚ୍ଚ ପଠେଇଦିଅ । ଡାକ୍ତର ବଇଦରେ କାହିଁକି ଖର୍ଚ୍ଚ କରୁଚ ?'

'ଇଏ କୋଉ ତମ ଗାଁ ବଇଦ ନୁହଁ, କଟକରୁ ଡାକ୍ତର ଆସୁଚନ୍ତି ଖାସ୍ ତମପାଇଁ । ଖାଣ୍ଟି ବିଲାତୀ ଓଷଦ ଦିଆଯାଉଚି ତମକୁ, ଚେର ମୂଳି ନୁହଁ । ଇଂଲଣ୍ଡରୁ ମଗାଯାଉଚି ସବୁ ଇଂଜେକସନ, ଜାଣିଚ ?'

ପାଖରେ ବସି ବୁଝେଇଲେ ପୁଣି ବାପା, 'ବିଧୂର ପରା ପରୀକ୍ଷା ଅଛି ମୁଣ୍ଡ ଉପରେ । ଟିକିଏ ଧୈର୍ଯ୍ୟ ଧର, ପରୀକ୍ଷା ସରୁ ଆସିବ । ଏବେ ଆସିବ କେମିତି ?'

ମାଆର ଜିଭ ଘୋଷାରି ହେଉଥାଏ, କଥା ବୁଝି ହେଉନଥାଏ, 'ମୋ ବିଧୂ ଆସିବ, ତା ମା ଦେହ କଥା ଶୁଣିଲେ ଆସିବ । ମୋ ଗହଣା ବିକି ଜାହାଜ ଖର୍ଚ୍ଚ ପଠେଇଦିଅ ।'

'ଏଡ଼େ ବ୍ୟସ୍ତ ହେଲେ ତୁମ ଦେହ କେମିତି ଭଲ ହେବ ? ଗହଣା ଥାଉ, ବୋହୂକୁ ଦେବାନାଇଁ କି ?'

ତିନିମାସରେ ମା ଚାଲିଗଲା ଆରପାରିକୁ, ତା ବାବୁ ଶ୍ୟାମଘନକୁ ଝୁରି ଝୁରି ।

ମାଆର ମୃତ୍ୟୁ ଖବର ବିଧୂକୁ ଦିଆଯାଇନଥିଲା । ବାପା ମନାକଲେ ବିଧୂକୁ ଚିଠି ଦେବାକୁ । ପରୀକ୍ଷା ତା ମୁଣ୍ଡ ଉପରେ । କେହି ଜଣେଇବ ନାହିଁ ତାକୁ ଖବରଦାର । ନିଜେ ପଛକେ ହତଶ୍ରୀ ଦେଖାଗଲେ ବାପା, ଦିନ କେତେଟାରେ ଏମିତି ଝଡ଼ିଗଲେ ଯେ ତାଙ୍କୁ ଚିହ୍ନିହେଲା ନାହିଁ ।

କୁଟୁମ୍ବ ଲୋକେ ପଚାରୁଥାନ୍ତି, ପୁଅ ଶୁଦ୍ଧ ହେବନାଇଁ ମା ଲାଗି, ଏ କମିତି କଥା ? ହେଲେ ଦରକାର ପଡ଼ିଲେ ବାପା ତ ଇଂରେଜଙ୍କ ଠାରୁ ବଳୁଥିଲେ । ତାଙ୍କର କାଣିଚାଏ ହେଲେ ବିଶ୍ୱାସ ନଥିଲା ପୁରୁଣାକାଳିଆ ରୀତିନୀତି, କର୍ମକାଣ୍ଡରେ । ଅର୍ଥହୀନ କୁସଂସ୍କାର, ଅନ୍ଧବିଶ୍ୱାସ ସବୁ । ଘରେ

କିଏ କିଛି କହିଲେ କହନ୍ତି, 'ଏଡ଼େ ଚିନ୍ତା ତମର ଯଦି, ଯାଅ କିଏ ପଚାରିଲେ କହିବ, ବିଧୂ ଆମର ବିଲାତରେ ଶୁଦ୍ଧ ହେଉଚି । ଜାହାଜ ଟିକଟ ମିଳିଲେ ଆସିବ । ବାସ୍ ।'

ସେଇ ଦଶ ବାରଦିନ ଶୁଦ୍ଧିଘର ଭିତରେ ବିଧୂ ବିଚରାର ମା ନାଁରେ ଦିଇଟା ଚଠି ଆସିଥିଲା, ଅନ୍ୟମାନଙ୍କୁ ଆଉରି ବି ତିନିଟା । କିଏ ବୋଧେ ଆଗରୁ ଅସାବଧାନ ହେଇ ଲେଖିଦେଇଥିଲା ତାଙ୍କୁ, ହଜାର ବାରଣ ସତ୍ତ୍ୱେ, ଯେ ମା ଦେହ ଖରାପ । ପରେ ଅନ୍ୟମାନେ ଯେତେ ପୁଣି ଘୋଡ଼େଇବାକୁ ଚେଷ୍ଟାକଲେ ବି ସେ ପଚାରିଲାଗିଥାଏ ସମସ୍ତଙ୍କୁ ଯେ ମାର ଦେହ କେମିତି ଅଛି । ଭଉଣୀ ମାନଙ୍କୁ ଲେଖେ, ମାଆର ଯତ୍ନ ନେଉଥିବ, ସେ ତ ଇମା ନିଜର ଯତ୍ନ ନିଏ ନାହିଁ ।

ମା ମରିବାର କେତେଦିନ ଯାଏଁ ଲଫାପା ଉପରେ 'ମା' ବୋଲି ଲେଖାଯାଇ ବିଧୂର ହାତଲେଖା ଚିଠି ଆସୁଥାଏ ।

ସମସ୍ତେ ଦେଖୁଥାଆନ୍ତି । ଖୋଲିବାକୁ ହାତ ଯାଉନଥାଏ କାହାରି । ବାପାଙ୍କର ବି ନୁହେଁ । ସାନପିଲାମାନଙ୍କୁ ଏଥର ମନା ହେଇଯାଇଥିଲା ମାମୁଙ୍କୁ ଚଠି ଲେଖିବାକୁ । ଏମିତିରେ ବି ତାଙ୍କ ସାନ ଚିଠି ମାନ ତାଙ୍କ ମା ବାପାଙ୍କ ଚିଠି ସାଥିରେ ଏକା ଲଫାପାରେ ଯାଏ, ବିଦେଶ କୁ ଚିଠି ଗଲେ ଟିକିଟରେ ବହୁତ ପଇସା ପଡ଼େ । ଭଉଣୀ ଭିଣେଇ ମାନେ ଲଫାପାରେ ଜାଗା ଥିଲେ ବି ଏଣିକି ସନ୍ତର୍ପଣରେ ଛୋଟିଆ ଚିଠିମାନ ଲେଖୁଥାନ୍ତି । କେମିତି ସମ୍ଭବ ହେବ ବୋଲି ସେମାନେ ବିଶ୍ୱାସ କରୁଥିଲେ କେଜାଣି, ଏତେ ବଡ଼ ଖବର ଟିଏ ବିଧୂଠାରୁ ଲୁଚେଇରଖିବେ ବୋଲି ।

ଯେତେ ଦୂର ବିଦେଶରେ ଥାଉ ତାଙ୍କ ପୁଅ, ସାଧୁ ନାୟକ ଭାବୁଥିଲେ ସେ ତାଙ୍କ ଅକ୍ତିଆରରେ ଥାଉ ସମ୍ପୂମତେ ।

ଏଲି ଛାତର ଖପରା ଫାଙ୍କ ମନଙ୍କର ଛିଟିକାଏଁ ଲେଖାଁ ଆକାଶକୁ ଚାହିଁ ରହି ଦେଖୁଥିଲା ଦୃଶ୍ୟମାନ । ଭାନୁ ଚୁପ୍ ହୋଇଯାଇଥିଲେ, ଶୋଇପଡ଼ିଲେଣି ବୋଲି ଏଲି ଭାବିଲା । କେତେବେଳ ପରେ ଲୁଗା କାନିରେ ସୁଁ ସୁଁ ନାକ ପୋଛି ପୁଣି କଥା ଆରମ୍ଭକଲେ ସେ, ସତେବା ଏକୁଟିଆ କହୁଥିଲେ ନିଜକୁ ।

'ସୁଖ ପାଇବ ବୋଲି ମଣିଷ ଏତେ ଦୁଃଖ ଅଜାଡ଼ିଦିଏ ନିଜ ଉପରେ, ନିଜ ଲୋକଙ୍କ ଉପରେ । ବାପା ଚାହିଁଥିଲେ ସେ ବିଧୂକୁ ତାଙ୍କର ବହୁତ ଗୁଡ଼ାଏ ସୁଖ ଦେଇପକେଇବେ ।'

ଏଲି ବୁଝୁଥିଲା । ସାଧୁ ନାୟକ ଚାହିଁଥିଲେ ପୁଅକୁ ତାଙ୍କର ଏମିତି ତିଆରିଦେବେ ଯେ ଅସାଧାରଣ ହେଇ ବାହାରିବ ସିଏ, ଏଇ ଆଖପାଖର ବାଙ୍ଗରା ଆଳେ ବାଳେ ଲୋକଙ୍କ ଭଳି ନୁହେଁ, ନାହିଁ ନଥିବା ଉଚ୍ଚ ହେବ ଏମିତିକା ଯେ ଏମାନଙ୍କର ଆଖି ପାଇବନାଇଁ ତାକୁ । ସେ ନିଜେ ଯେତେ ସାଇବ ବୋଲାଉଥାନ୍ତୁ, ମଳିମୁଣ୍ଡିଆ ହେଇ ଆରମ୍ଭ ହେଲେ ଯେ ସେ ମଳି ଆଉ ତାଙ୍କ ହାବଭାବରୁ କି ରହଣୀରୁ ଛାଡ଼ିଲା ନାଇଁ ଜୀବନଯାକ । ସେମିତି ତାଙ୍କ ଭଳି ହେବନାହିଁ ବିଧୂର ଜୀବନ । ମୂଳରୁ ସାହେବ ଢାଞ୍ଚାରେ ପଡି ବଢ଼ିବ ତାଙ୍କ ପୁଅ । ନିଜ ଜୀବନର ସବୁ ଜ୍ଞାନ, ସବୁ ନିଷ୍ଠା ଦେଇ ପାରିବେ ବୋଲି ପରୀକ୍ଷାରେ ଠାକୁର ତାଙ୍କୁ ଦେଇଚନ୍ତି ଗୋଟିଏ ବୋଲି ପୁଅ ।

ହେଲେ ମା ତାର କୋଡ଼ପୋଛା ପିଲାଟିକି ପାଳିଲା ଆଖିବୁଜା ଗେହ୍ଲା ଦେଇ । ଭାନୁ ଜାଣନ୍ତି, ସବୁ ମାଆ ଉଣା ଅଧିକେ ସେଇଆ କରନ୍ତି, ହେଲେ ତାଙ୍କ ମାଆ ଯାହାକଲେ, ପାଞ୍ଚ ଝିଅଙ୍କୁ ହେଳା କରି ପୁଅଟିକି ପ୍ରାଣ ସଅଁପି ଦେଲେ, ଏଭଳି ପାତର ଅନ୍ତରକୁ ବୋଧେ ଅଦୃଷ୍ଟ ବି ସହୁନଥିବ । ସହଜେ ଭାନୁ ଉପର ଭାଇଟି ଯାଇଥିଲା ।

ନିଜେ ଆସି ବୁଢ଼ୀ ହେଲା ପରେ ବି ପିଲାଦିନ କଥା ମନେପଡ଼ିଲେ ଛାତି ଭିତର ଓଜନିଆ ହେଇଯାଏ ଭାନୁର, ବିକଳ ହତାଶ ଲାଗେ ଅନାଥ ଛୁଆଟିଏ ଭଳି । ଭାନୁ ଆଉ ତଳ ଭାଇଟି ଟାଇଫଏଡ ରେ ପଡିଥାନ୍ତି, ପାଖା ପାଖି ଖଟରେ ଗୋଟିଏ ବଖରାରେ ଦିହେଁ । ସେ ଯୁଗରେ ଟାଇଫଏଡ଼ ଲାଗି ଡାକ୍ତରୀ ଓଷଦ ନଥିଲା । ବଇଦ ଆସନ୍ତି ସକାଳ ସଞ୍ଜ । ମା ବାଟଚାହିଁ ବସିଥାଏ ବଇଦଙ୍କୁ, ଆସିଲେ ନେହୁରା ହେଇ ହାତଯୋଡ଼େ ତାଙ୍କୁ, ଗୋଡ଼ତଳେ ପଡ଼ି କାନ୍ଦେ, ମୋ ପୁଅକୁ ବଞ୍ଚେଇ ଦିଅ ବଇଦ ମହାପ୍ରଭୁ । ତମ ପୁଅଝିଅଙ୍କୁ ମୋ ଆୟୁଷ ଲାଗୁ, ଧନଜନରେ ଭରି ଯାଉ ତମ ଘର । ପିଲାଟିକି ମୋ ବଞ୍ଚେଇଦିଅ । ଭାନୁ ପାଖ ଖଟରେ ପଡିଥାଏ, ବଇଦ ତାକୁ ବି ଦେଖିଦେଇଯାନ୍ତି, ଓଷଦ ଦିଅନ୍ତି । ଭାନୁ କ୍ରମେ ଭଲ ହେଇ ଆସିଲା, ସେଇ ଭାଇଟି କିନ୍ତୁ ବଞ୍ଚିଲା ନାହିଁ । ମାଆ ଶୋକରେ ବୁଡ଼ିଗଲେ, କେତେମାସ ଧରି । ତାଙ୍କର ଦୃଷ୍ଟି ବି ଯାଇନଥିବ କେତେବେଳେ ଭାନୁ ବିଛଣାରୁ ଉଠି ଘର ଗହଳିରେ ମିଶିଗଲା ।

ଘରେ ସବୁଦିନେ ଗହଳି ଥାଏ ଭାନୁର ହେତୁ ହେଲାଦିନୁ । ଧନଜନ ଗୋପଲକ୍ଷ୍ମୀ ସବୁ ଥିଲେ ଯାଇ ଲୋକର ସଫଳ ଜୀବନ ବୋଲି ଗଣାଯାଉଥିଲା ସେବେ । ବାପା ତାଙ୍କ ପୁତୁରା ଝିଆରୀ ମାନଙ୍କୁ ଗାଁରୁ ଆଣି ପାଖରେ ରଖି ପାଠ ପଢ଼ାଉଥିଲେ । ଦୂର ସମ୍ପର୍କୀୟ ଗରୀବ ଗୁରୁବା ବି ବେଳେ ବେଳେ ଆସି ରହିଯାଆନ୍ତି, ମଝିବାରିର କାଠଘର, ଗୋଦାମ ଘରେ ରହନ୍ତି, ପାଠ ପଢ଼ନ୍ତି ନଚେତ୍ ସହରରେ କାମ ଖୋଜନ୍ତି ।

ଭାନୁ ପରେ ଆଉରି ତିନି ଝିଅ ପରେ ଯାଇ ଆସିଥିଲା ବିଧୁ, ବାପା ମାଙ୍କ ନୟନ ପିତୁଳା । ବିଧୁ ବିଦେଶ ଯିବାର ଦୁଃଖ ମା କୁ ଏମିତି ବଳେଇଯିବ ବୋଲି କିଏ ଭାବିଥିଲା ? ମା' ତାକୁ ଡାକେ ମୋ କଳା କାହ୍ନୁ, ମୋ କଳାମାଣିକ । ବିଧୁ ବିଲାତ ଯାଉଥାଏ, ଥରେ ସାନ ଭଉଣୀ ଗୀତ ବୋଲୁଥିଲା, 'ଆରେ ବାବୁ ଶ୍ୟାମଘନ, ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବି...'

ହଠାତ୍ ସମସ୍ତଙ୍କୁ ଚମକାଇ ଦେଇ ଭୋ ଭୋ କାନ୍ଦ ଶୁଭିଲା ମାଆର । ବାହୁନା ସ୍ୱରରେ କହିଲେ, 'ମୋ ଛାତି ଫାଟିଯିବରେ ମାଆ, ଗାଆନା ସେ ଗୀତ ।' ହେଲେ କେତେବେଳେ ମୁହଁ ପୋତି ବସି ବସି ନିଜେ ମା ଗୁଣୁଗୁଣାଉଥାନ୍ତି ସେଇ ଗୀତର ପଦ ମାନ, 'ଏବେ ମଥୁରାକୁ ଯିବୁ, ରାକ୍ଷସମାନ ଦେଖିବୁ...'

ବିଚରା ମାଆଙ୍କ କଳାକାହ୍ନୁ, ଶ୍ୟାମଘନ, ବିଦେଶ ଭୂଇଁରେ ନିଜ ଲୋକବାକ କେହି ପାଖରେ ନଥିଲା ବେଳେ କେମିତି ସହିଥିବ ମାଆଙ୍କ ମରିବା ଖବରଟି । ଲଣ୍ଡନରେ ଭାରତରୁ ବେଶୀ ଲୋକ ତ ନଥିବେ ସେତେବେଳେ, ଓଡ଼ିଆ ଲୋକ ଜଣ କେତେ ଯିଏ ଥିବେ, ବିଧୁର ଅନ୍ତତଃ ସାଙ୍ଗସୁଖ

ହୋଇପାରିଲା ଭଳି ନୁହଁ । ଘର ଗହଳି ଭିତରେ ସେରନ୍ତା ହୋଇ ବଢ଼ିଥିବା, ଆଗଗୋଡ଼ରେ କେବେ କଣ୍ଟା ବାଜିନଥିବା କୋଡ଼ିଏ ବର୍ଷର ପିଲାଟି, ସେ ଅଜଣା ଗ୍ରହ ଭଳି ଦେଶଟାରେ ରହି କେମିତି ସମ୍ଭାଳିଥିବ ସେ ଧକ୍କା ?

ବାପା ତାଙ୍କ ଟିକିଟିକି ମିଞ୍ଜି ମିଞ୍ଜି ଅକ୍ଷରରେ ଆଠପୃଷ୍ଠାର ଚିଠିଟିଏ ଲେଖିଲେ ତାକୁ ଏଥର, ଶୁଦ୍ଧିକ୍ରିୟା ଆଦି ସବୁ ସରିଗଲା । ବିଧୂର ପରୀକ୍ଷା ସରିଲାଣି ବୋଲି ନିଶ୍ଚିତ ହେଲାପରେ । ଚିଠିଟି ଲେଖିସାରି ସମସ୍ତଙ୍କୁ ପାଖରେ ବସାଇ ପଢ଼ି ଶୁଣାଇଥିଲେ । ବାପାଙ୍କୁ ଉପଦେଶ ଦେବାକୁ କାହାରି ସାହସ ନଥିଲା । ବାପା ନିଜ ସନ୍ତୋଷ ଲାଗି ପଢ଼ି ଶୁଣାଉଥିଲେ କେବଳ, ଦାଣ୍ଡ କଚେରୀ ଘର ତାଙ୍କ ଘୁରନ୍ତା ଚଉକୀକୁ ପୁରା ବୁଲାଇଦେଇ କୋଠରୀ ମଝିକୁ ମୁହଁକରି, ତଳେ ବସିଥାନ୍ତି ତାଙ୍କ ଝିଅ ଜୋଇଁ ଓ ଆତ୍ମୀୟ ସ୍ୱଜନ କେଇଜଣ । ବିଧୂକୁ ସେ ଆଠପୃଷ୍ଠାର ଗଭୀର ଦର୍ଶନ ଓ ଗୀତା ଭାଗବତର ଉଦ୍ଧୃତ ପଦ୍ୟାଂଶ ସମ୍ବଳିତ ଚିଠିଟି ଲେଖିଥିଲେ, ଆଉରି ଅନେକ ରଫ୍ କାଗଜ ଚିରିଲା ପରେ ନିଶ୍ଚୟ ସେ ଶୁଦ୍ଧ ସଂସ୍କରଣଟି ହୋଇଥିବ । ଅର୍ଜୁନ ପରି ନିଜ କର୍ତ୍ତବ୍ୟ କରିଯିବାକୁ ଉପଦେଶ ଦେଇଥିଲେ । ମନଦେଇ ପାଠ ପଢ଼ିଲେ ଓ ଅସାଧାରଣ ମଣିଷଟିଏ ହୋଇ କୀର୍ତ୍ତି ଯଶ ମଣ୍ଡିତ ହେଲେ ହିଁ ମାଆର ସ୍ୱପ୍ନ ସାକାର ହେବ, ତା ଆତ୍ମା ଶାନ୍ତି ପାଇବ ବୋଲି ବୁଝାଇଥିଲେ ।

॥୧୮॥

ପରଦିନ ଫେରିଲା ବାଟରେ ବସ୍ ଝରକା ଦେଇ ବାହାର କ୍ଷେତ ପଡ଼ିଆ ଆଡ଼େ ଚାହିଁ ଲୁଚେଇ ଲୁହ ପୋଛୁଥିଲା ଏଲି । କାଇଁକି ଆଜି ଏତେଦିନପରେ ମନେପଡୁଥିଲା ଈଶ୍ୱରନ୍ । ପଚାରୁଥିଲା ନିଜକୁ ସେ, କାଇଁକି ସେ ନିଜେ ଏତେ ବେଶି ଆସ୍ଥା କରିଥିଲା ଈଶ୍ୱରନର ପ୍ରେମରେ । କେତେ କଳିଗୋଳ, ଯୁକ୍ତିତର୍କ, ସଂସ୍କୃତିର ଅସାମଞ୍ଜସ୍ୟ, ତଥାପି ତା'ର ଆସ୍ଥା ଥିଲା । ବିଶ୍ୱାସ ହେଉଥିଲା ତାର ଯେ ଏଇ ହେଉଛି ସେ ମଣିଷଟି ଯାହା ଲାଗି ଅପେକ୍ଷା କରିଥିଲା ସେ ଆଜିଯାକେ । ଈଶ୍ୱରନ ଆଉ ଏଲି ପରସ୍ପର ଜୀବନର ଅଂଶ ବିଶେଷ, ପରିପୂରକ । ଏଇ ବିଶ୍ୱାସରେ ପହଞ୍ଚିଯାଇଥିଲା ସେ ଈଶ୍ୱରନକୁ ଜାଣିବାର ବର୍ଷ କେଇଟାରେ ।

ବାପାଙ୍କ ଉପରେ ଆଖିବୁଜି କେବଳ ନିର୍ଭର କରିବା ଛଡ଼ା ଆଉ କିଛି ମନେପଡ଼ୁନାହିଁ । ଯେତେ ଯାହା କରନ୍ତୁ ସେ, ଭରସା କରି ଶିଖିଥିଲେ ଏଲି ଆଉ ବବି । ମା ନିଜେ ବି । କିଏ ସେ ଭାଙ୍ଗିଲା ତାକୁ, କେଉଁ କାରଣରୁ, ଏଲି ବୁଝିବ ନାଇଁ କେବେ ।

ନିଜ ବାପାଙ୍କ ଶ୍ରାଦ୍ଧ ସାରି ବିଧୂ ନାୟକ ଯେତେବେଳେ ଫେରିଲେ, ଅନାହୁତ ନିଜ ଭାରତୀୟପଣର ବୋଝ ମୁଣ୍ଡେଇ ଫେରିଥିଲେ । ଏଲି ଦେଖିଥିଲା ପିଲାଦିନେ, ବାପ ମଲେ ପୁଅ ଶ୍ରାଦ୍ଧ କରେ, ମୁଣ୍ଡ ବାଳ ପୁରାବୁରି ଚାଞ୍ଛି ହୋଇ ଗୋଲ ମୁଣ୍ଡ ହୋଇଥିବା ମଣିଷ ସେ ଦେଖିଥିଲା ପ୍ରଥମ ସେଇ ପିଲାଦିନେ । ତେଣୁ ବାପାଙ୍କ ଫେରିବାକୁ ଅପେକ୍ଷା କରିଥିଲା । ବାପା ମୁଣ୍ଡ ଲଣ୍ଡା ହୋଇନଥିଲେ, କିନ୍ତୁ ଚେହେରା ବଦଳି ଯାଇଥିଲା ।

ସେଇଦିନ ଫେରିଥାନ୍ତି, ଗମ୍ଭୀର ଗୁମସୁମ ଦିଶୁଥାନ୍ତି । ଦିନସାରା କାହା ସାଙ୍ଗରେ ବିଶେଷ କିଛି କଥାବାର୍ତ୍ତା ନାହିଁ । ତିଆରହେଇ କାମକୁ ବାହାରି ଗଲେ । ସଞ୍ଜବେଳେ ପାଟିତୁଣ୍ଡ ଶୁଭିଲା ଡ୍ରଇଂ ରୁମରୁ । ପଢା ଟେବୁଲ ଛାଡ଼ି ଉଠି ଆସି ଏଲି ଦେଖିଲା, ବାପା ଅଗ୍ନିଶର୍ମା ହେଇ ପାଟି କରୁଛନ୍ତି, 'କିଏ ଆଣି ଥୋଇଚି ଯାକୁ ଏଠି ?'

ଗତଥର ସେମାନେ ସମସ୍ତେ ଦେଶକୁ ଯାଇଥିଲେ । ସବୁଥର ପରି ସାଙ୍ଗରେ କିଛି କଳାତ୍ମକ ଜିନିଷ, ମୂର୍ତ୍ତି ଚିତ୍ର ଆଦି ଆଣିଥାନ୍ତି । ଏଥର ଟିକିଏ ବଡ଼ ଆକାରର ଜଗନ୍ନାଥଙ୍କ କାଠର ତ୍ରିମୂର୍ତ୍ତି ଥିଲା । ଏ ଭିତରେ ମାଆ ତାକୁ ଘୋଡ଼ାଯାଇଥିବା କାଗଜ କାଢ଼ି ଡ୍ରଇଁ ରୁମ ଥାକରେ ସଜେଇ ଦେଇଚି । ବାପା ସେଇ ମୂର୍ତ୍ତି ଆଗରେ ଛିଡ଼ା ହେଇ ପଚାରୁଥିଲେ ଘର କମ୍ପେଇ, 'କିଏ ଆଣିଚି ଯାକୁ ଏଠିକି ?'

ବାପା ନିଶ୍ଚୟ ଜାଣିଥିବେ ଯେ ମାଆ ଛଡ଼ା କିଏ ବା ଘରେ ସେ ପ୍ୟାକେଟ ଖୋଲିବ, ଡ୍ରଇଂ ରୁମ ସଜାଇବ ? ମାଆ ଶାନ୍ତ ଭାବେ ପାଖକୁ ଆସି ଦେଖୁଥିଲା ବାପାଙ୍କୁ, ସେ ଜାଣୁଥିଲା ବାପାଙ୍କ ମନ ଖରାପ ଅଛି । ପୁଣି ନିଶା କରି ଫେରିଚନ୍ତି । ପିଲାଦିନ୍ହେଁ ଅନେଇ ବସିଥିଲେ କେବେ ବାପା ଘରକୁ ଫେରିବେ ବୋଲି, ଶୋକଖବରରେ ଯାଇଥିଲେ ବି ପିଲାମନ ନେଇ ଆଶା କରିଥିବେ ନିଶ୍ଚୟ, ସବୁଥର ପରି । ମା କହିଲା, କ'ଣ ହେଲା ଏଡ଼େ ବ୍ୟସ୍ତ ହେଉଚ କାହିଁକି ? ବୁଝିବା ସେ କଥା, ବସ ଟିକିଏ ତୁନିହେଇ ।'

ବାପା ଶୁଣୁନଥିଲେ ମାଆର କଥା, ପାଟିତୁଣ୍ଡ କରୁଥିଲେ । ଗାଳି ବି ଦେଉଥାନ୍ତି ମାଆକୁ ଅଯଥା । ମାଆ ଅଗତ୍ୟା ଚୁପ୍ ହେଇଯାଇଥାଏ ।

'କ'ଣ ମୁଁ ପଚାରୁଛି, ଜବାବ ଦେଉନା ? କ'ଣ ଭାବି ତମେ ମୋ ଠାକୁରଙ୍କ ମୂର୍ତ୍ତି କୁ ଏଠି ଆଣି ଥୋଇଲ ?  ଖେଳନା ସଜା ଥାକରେ ଥୋଇଲ ?'

'ଭୁଲ ହେଇଗଲା, ଜାଣିନଥିଲି ପରା କହିଲି ।'

'ସତେ, ଜାଣିନାହଁ ଆମ ଠାକୁର କିଏ ? ତମକୁ ଥଟ୍ଟା ଲାଗିଛି, ମୋ ଜୀବନକୁ ନେଇ ମନଇଛା ଖେଳିବ ? ତମ ଲାଗି ଗୋଟାଏ କାର୍ଟୁନ ମୁଁ । ମୋର ସାରା ସଂସ୍କାର, ପରମ୍ପରା ସବୁ କିଛି ମିଛମିଛିକା ଖେଳ ତମଲାଗି, ନା କ'ଣ ?'

'ଆଉ କେବେ ଠାକୁର ମୂର୍ତ୍ତିରେ ହାତ ଦେବିନାହିଁ । ରଖିଦେଉଚି ଯୋଉଠି ଥିଲା-'

'ଖବରଦାର ସେଥିରେ ହାତ ଲଗେଇବନାହିଁ-'

ଝପଟିଯାଇ ମାଆର ହାତ ଧରିପକେଇ ରୋକିଦେଲେ ବାପା, ପାଟିରେ ତାଙ୍କର ଘର କମ୍ପୁଥାଏ, 'ତମର ଅସନା ହାତରେ ଛୁଇଁବ ନାହିଁ ଏ ମୂର୍ତ୍ତିକୁ କେବେ, ଖବରଦାର । ତମେ ଜାଣିଚ, ଖାଇଥିବା ହାତକୁ ନ ଧୋଇଲେ ଆମେ ତାକୁ ଅଇଁଠା, ଅପବିତ୍ର କହୁ ? ମୋର ସଂସ୍କାର, ଶୁଚିତା ବିଷୟରେ ତମେ କେବେ ବୁଝିବାକୁ ଚେଷ୍ଟା କରିଚ ? ମୁଁ ଗୋଟାଏ ଜଙ୍ଗଲୀ, ଆଦିବାସୀ ତମ ଆଖିରେ ନାହିଁ ? ମୋତେ ବାହାହେଇ ତମେ ମୋତେ ସାର୍ଥକ କରିଦେଇଚ ?'

ଏଲି, ବବି ଥାକର ଆଉ କେତେଟା ଭାରତୀୟ ମୂର୍ତ୍ତି କଳା ମାନଙ୍କୁ ଦେଖିଲେ, ପ୍ରତିଥର ଭାରତରୁ ଏସବୁ ଆସି ଘର ସଜା ହୁଏ, ବନ୍ଧୁମାନଙ୍କୁ କ୍ରିସମାସ ଉପହାର ବି ଦିଆଯାଏ ଏସବୁ । ଜଗନ୍ନାଥଙ୍କ ଚିତ୍ର, ମୂର୍ତ୍ତି ବି ଆସିଚି ଏଥି ପୂର୍ବରୁ । ଏଥରର କାଠ ମନ୍ଦିର ଭିତରେ ତିନୋଟି ଗୋଟି ଗୋଟିକିଆ ମୂର୍ତ୍ତି, କବାଟ ବନ୍ଦ ହେଉଛି, ଖୋଲି ଯାଉଛି । ବାପାଙ୍କ ବାକ୍ସରୁ ଏଇଟି ବାହାର କରି ମା ସେମାନଙ୍କୁ ଦେଖାଇଚି । ଅନେକ ଦିନରୁ ପଡ଼ିରହିଥିଲା ବୋଲି ବାପା ନଥିଲା ବେଳେ କାଢ଼ି ଥାକରେ  ସଜାଇଦେଇଛି । ନୂଆ କଥା କ'ଣ ଘଟିଲା ଏଥିରେ ?

ସେମାନେ ସଭିଏଁ ସେଥର ପୁରୀ ଯାଇଥିଲେ । ବାପା ଆଉ ଜେଜେ ଭିତରକୁ ଗଲେ, ମାଆ ଆଉ ଏଲି ବବି ବାହାରେ ରହିଲେ । ମନ୍ଦିରକୁ ପଶିବା ପୂର୍ବରୁ ଜେଜେ କହିଥିଲେ, ତାଙ୍କ ଶାଣୁଆ ସ୍ୱରରେ ଅଧା ଦୁଃଖ ଅଧା ବ୍ୟଙ୍ଗ ମିଶେଇ, 'ତମେମାନେ ମନ୍ଦିର ଭିତରକୁ ଯାଇପାରିବ ନାହଁ । କେବଳ ସବର୍ଣ୍ଣ ହିନ୍ଦୁ ହିଁ ଯାଇପାରିବେ ।'

ବାପା ଯୁକ୍ତି କରିଥିଲେ, 'ଏଇ ଦେଶରେ ରହୁଥିବା ଅନ୍ୟ ଧର୍ମର ଲୋକେ ଯାଇପାରିବେ, ମୋ ପରିବାର କାହିଁକି ଯାଇନପାରିବେ ? ମୋ ପୁଅ ଝିଅ କ'ଣ ହିନ୍ଦୁ ନୁହନ୍ତି ?'

ଜେଜେ ସେମିତି ମୁରୁକେଇ ହସି କହିଲେ, 'ଯିବୁ ଯଦି ସାଙ୍ଗରେ ନେଇ ଚାଲ । ପୁଣି ପଣ୍ଡାମାନେ ମନା କଲେ କି କଡ଼ାକଥା ଶୁଣେଇଲେ ମନଖରାପ ହେବା ସାର ହେବ । ପଚାରିଲେ କ'ଣ ଠାକୁର ମନ୍ଦିରରେ ମିଛ କହିବା, ଯେ ତାଙ୍କ ମାଆ ଇଂରେଜ ନୁହଁ ?'

ମା ଥଣ୍ଡା ଗଳାରେ ବାପାଙ୍କୁ ବୁଝେଇଥିଲେ, 'ପିଲାଏ କେତେ ମନ୍ଦିର ତ ଦେଖିଛନ୍ତି । କାଲି ଭୁବନେଶ୍ୱରରେ ବି କେତେ ମନ୍ଦିର ଦେଖିଲେ, ଏଠିକି ନଯାଇ ପାରିଲେ ନାହିଁ । ପିଲାଏ କିଛି ଦୁଃଖ କରିବେନି । ଆମେ ଏଠି ଦୋକାନ ବଜାର ଦେଖୁଚୁ, ତମେ ବାପାଙ୍କ ସାଙ୍ଗେ ଯାଇ ମନ୍ଦିର ବୁଲିଆସ ।'

ମନ୍ଦିର ଭିତରକୁ ଯାଉ ଯାଉ ଜେଜେ ତାଙ୍କୁ ଧାରୁଆ ହସ ସଙ୍ଗେ କହିଥିଲେ, 'ମନ୍ଦିରକୁ ବୁଲିବାକୁ ଯାଆନ୍ତି ନାହିଁ । ଦର୍ଶନ କରି ଆସିବା ବୋଲି କୁହାଯାଏ ।'

ମାଆଙ୍କ ସାଙ୍ଗେ ଏଲି ବବି ବାହାରୁ ମନ୍ଦିର ଦେଖିଲେ, ଆଖପାଖ ଦୋକାନ ମାନଙ୍କରୁ ଜିନିଷ କିଣିଲେ, ସମୁଦ୍ର କୂଳକୁ ଗଲେ । ତାପରେ ଆଉ କେବେ ବାପା ତାଙ୍କ ସ୍ତ୍ରୀ କି ପିଲାଙ୍କ ଧର୍ମ ନେଇ ଚିନ୍ତା କରିବା ଏଲି ଦେଖିନଥିଲା । ଜେଜେଙ୍କ ମରିବା ପରେ ବାପା କେମିତି ବଦଳିଗଲେ । ଏଥର ନିଶା କରି ଫେରିବାପରେ ଯେଉଁ ପାଟିତୁଣ୍ଡ କଲେ, ସେଥିରେ ଆଗଭଳି କେବଳ ଧୂଆଁ ନଥିଲା, ତୋଫାନ ବର୍ଷା ବି ଥିଲା । ସେଥର ଠାକୁର ମୂର୍ତ୍ତିର ମହତ୍ତ୍ୱ ଏକାବେଳକେ ବଦଳି ଯାଇଥିଲା ବାପାଙ୍କ ଆଖିରେ ।

'ତମ ଲାଗି ମୁଁ ପର ପାଲଟି ଗଲି ନିଜ ଧର୍ମର, ସଂସ୍କୃତିର । ଛାର ଗୋଟାଏ ସ୍ତ୍ରୀ ଲାଗି ବୁଦ୍ଧି ମୋର ବାମ ହେଇଥିଲା, କାହାକୁ ଦୋଷ ଦେବି । ତମେ ବୁଝିପାରିବ ନାହିଁ କ'ଣ ମୁଁ ହରେଇଦେଇଚି । ବାପାଙ୍କ ଶ୍ରାଦ୍ଧ କ୍ରିୟା କରିପାରିଲି ନାହିଁ, ଗୋଟିଏ ବୋଲି ପୁଅ ମୁଁ । ମାଆର ବି ମୃତ୍ୟୁବେଳେ ପାଖରେ ନଥିଲି, ଶ୍ରାଦ୍ଧରେ ବି ନୁହେଁ, ମୋ ଭାଗ୍ୟ ସବୁ ।'

ମାଆ ପ୍ରଶ୍ନ ନକରି ଫିଙ୍ଗା ଫୋପଡ଼ା ହେଉଥିବା ଜିଷିଷ ସଜାଡୁ ଥିଲେ ଚୁପଚାପ ।

'ବୁଝୁଛ କାହିଁକି ମୁଁ ଏକମାତ୍ର ପୁଅ ହେଇ ବାପାଙ୍କ ଶ୍ରାଦ୍ଧ କ୍ରିୟା କରିପାରିଲିନି ? କାଇଁକି ନା ମୋ ବାପାଙ୍କ ଶେଷ ଇଚ୍ଛା ସେଇଆ ଥିଲା । ଯେ ତାଙ୍କ ବଂଶର ଆଉ କିଏ କରୁ ତାଙ୍କ କାମ । ବିଧର୍ମୀ ସାଙ୍ଗେ ଜୀବନ କାଟୁଥିବା, ଗୋମାଂସ ଖାଉଥିବା ତାଙ୍କ ପୁଅ ହାତରେ ତାଙ୍କ ଆତ୍ମାର ସଦ୍‌ଗତି ହେବନାଇଁ । ସେ ପୁଅର ତର୍ପଣକୁ ପୂର୍ବପୁରୁଷ ପାଇବେ ନାଇଁ, ବୁଝିପାରୁଛ ଯାର ଅର୍ଥ ?'

ଏଇ ସବୁ କଥାର ଉତ୍ତର ମା ସାଇତି ରଖୁଥିଲେ ନିଜ ଭିତରେ, ଶେଷକୁ କୋର୍ଟରେ ଦେଲେ ଜଜ୍‌ଙ୍କୁ ପ୍ରଶ୍ନ କରି, 'ଖାଲି ବିଧର୍ମୀ ସ୍ତ୍ରୀ ସହିତ ରହିବାରୁ ତାଙ୍କ ପୁତ୍ର ଧର୍ମରେ ସେ ଅଯୋଗ୍ୟ ହୋଇଗଲେ । ଆଉ ସବୁ ଯାହା କରୁଥିଲେ ସବୁ ତାଙ୍କ ଧର୍ମସମ୍ମତ ଥିଲା ? ସେଥିରେ ତାଙ୍କର ତିଳେହେଲେ ଲଜ୍ଜା କି ଅପରାଧବୋଧ କାଇଁ ମୁଁ ଦେଖିନି !'

ସେଦିନ ମାଆଙ୍କ କାମକରୁଥିବା ହାତ ରହିଯାଇଥିଲା । ଡ୍ରଇଂରୁମ୍ ଛାଡ଼ି ଚାଲି ଯାଉ ଯାଉ କହିଥିଲେ ସେ ପଦକ କଥା, ଯାହାର ମର୍ମ ଏଲି ବହୁତ ଡେରୀରେ, କୋର୍ଟ କେସ ଚାଲିଲା ବେଳେ ବୁଝିଥିଲା । 'ପିଲାଙ୍କ ପାଇଁ ମୁଁ ବି ରହିଚି । ବେଶୀ ଆଉ ମୋତେ କୋଣକୁ ଜେଷ୍ଟି ଦିଅନାଇଁ, ପିମ୍ପୁଡ଼ି ବି କାମୁଡ଼େ ।'

ଅନ୍ୟଥର ପରି ସେଦିନ ବି ବାପା ସୋଫାରେ ବସିପଡ଼ି ଚାହିଁ ରହିଲେ ମାଆ ଗଲା ବାଟକୁ, ତା କଥାର ମର୍ମ ସିଏ ବି ବୁଝୁଥିଲେ କି ନାହିଁ କେଜାଣି । ତାଙ୍କ ମୁଣ୍ଡ ଭିତର ଧୂଆଁଳିଆ ସ୍ରୋତଟି ବୋଧେ ଫେରିଯାଉଥିଲା ସେଇ କେଇଗୋଟି ଛାପକୁ, ଯାହା ସେ ଛାଡ଼ିଆସିଥିଲେ ବହୁଦିନ ତଳେ । ଦି ଚାରି ମିନିଟ୍ ତୁନି ହେଇ ପୁଣି ଘୁରିଲା ତାଙ୍କ କଥାର ରେକର୍ଡ, 'ପୁଅ ଲାଗି ଆମ ସମାଜରେ ସବୁ କିଛି ତ୍ୟାଗ କରିଦିଆଯାଏ କାହିଁକି ? ମୁଁ କଲି କ'ଣ ମୋ ବାପା ମା ଲାଗି ? ମୋ ଠାକୁର ତମର ଖେଳନା ନାଇଁ ? ଘର ସଜେଇବ ମୋ ମୂର୍ତ୍ତିକି ନେଇ !'

ଠାକୁର ତିନିହେଁ କିନ୍ତୁ ପଡ଼ିରହିଲେ ସେଇ ଥାକରେ ଆଉରି ଅନେକ ଦିନ । ମାଆର ଆଉ ତାକୁ ଛୁଇଁବାକୁ ବୋଧେ ସାହସ ହେଇନଥିବ । ଦିନେ ଦେଖିଲା ବେଳକୁ ବାପାଙ୍କ ଶୋଇଲା ଘରକୁ ଲାଗି ସାନ ଷଡି ରୁମ୍‌ଟି ଭିତରୁ ଇଣ୍ଡିଆନ ଅତର ବାସ୍ନା ଆସୁଚି, ହାଲୁକା ଧୂଆଁ ବି । ଏଲି ଯାଇ ଦେଖିଲା, ସାନ ଷ୍ଟୁଲଟି ଉପରେ ଠାକୁର ମୂର୍ତ୍ତି, ତା ସାମ୍ନାରେ ଭୂଇଁରେ କାର୍ପେଟ ଉପରେ ଛୋଟିଆ ଆସନଟିଏ ପକାଇ ବାପା ବସିଚନ୍ତି । ଏଲି ଜାଣେ, ବାପା ତା'ର ପୂଜା କରୁଚନ୍ତି ।

ଜେଜେ ଘରେ ଦେଖିଚି ସେ, ଧାଡ଼ି ହେଇ ଛୋଟିଆ ମୂର୍ତ୍ତିମାନ, ଦୀପ ଧୂପ ଫୁଲ ଚନ୍ଦନ ଦିଆ ପୂଜା, ସବୁ ସେ ଦେଖିଚି । ଧୋତୀ ପିନ୍ଧା ଖାଲି ଦେହ ଲୋକଟିଏ ସକାଳୁ ଆସେ, ମୁଣ୍ଡ ପଛରେ କେରାଏ ବାଳର ଚୁଟି ବନ୍ଧାହେଇଥାଏ, କପାଳରେ ଚିତା ଥାଏ, ଘଣ୍ଟି ବଜେଇ ମନ୍ତ୍ର ପଢ଼ି ପୂଜା କରେ । ଏଲି ଦୁଆର ବନ୍ଧରେ ଠିଆ ହେଇ ଭ୍ରୁରୁ କୁଞ୍ଚାଇ ଅନେଇଥାଏ, କିଛି ନକହି ଅଚାନକ ପୂଜାରୀ ଫେରି ଚାହାନ୍ତି ଏଲିକୁ, ତାଙ୍କ ନାକ ଟେକା ମୁହଁ ଆଖି ଏଲିକୁ ମୁଣ୍ଡରୁ ଗୋଡ଼ଯାଏ ଥରେ ଗାଡ଼କରି ଅନେଇଦିଏ । ଏଲି ପରିଷ୍କାର୍ ବୁଝିପାରେ ସେ ପୂଜାଘରେ ଆଲୋଡ଼ା ବୋଲି ।

ଜେଜେଙ୍କ ପୂଜାଘର ବିଷୟରେ ପଚାରିବ ଭାବି ବି ବାପା କି ମାଆଙ୍କୁ ପଚାରିନଥିଲା ଏଲି । ଜେଜେଙ୍କୁ ତ କେବେବି ନୁହେଁ, ଯେ ଜେଜେଙ୍କ ଘର ଯଦି ଆମଘର, ତେବେ ଆମ ଘର ଠାକୁରଙ୍କୁ ସେଇ ପୂଜାରୀ ଆମ ନାଁରେ ଚୁଗୁଲୀ କରୁନାହାଁନ୍ତି ତ । ଆମେ ଅଧେ ଗୋରା ଲୋକ ବୋଲି ଲୋକଟା ଆମକୁ ଭଲପାଏ ନାହିଁ । ବେଳେ ବେଳେ ଚିନ୍ତା ଲାଗେ ଏଲିକୁ ପିଲାଦିନେ । ଜେଜେଙ୍କ ଘର ଠାକୁର ମୋତେ, ବବିଙ୍କୁ ଜମାରୁ ଭଲପାଉନଥିବେ । ମାଆଙ୍କୁ ତ ଜମାରୁ ନୁହେଁ । ଗଲା ଆସିଲା ବେଳେ ଠାକୁରଘରକୁ ଅନେଇଦେଲେ ଭୟ ମାଡ଼ିପଡ଼େ ତାକୁ । କେହି ଆଖେପାଖେ ନଥିଲା ବେଳେ ଚୁପ୍‌କିନି ମନଭିତରେ ପ୍ରାର୍ଥନା କରିଦିଏ, ପାରୁପର୍ଯ୍ୟନ୍ତ ଓଡ଼ିଆରେ, କାଳେ ଏଠିକା ଠାକୁର ଇଂରାଜୀ ବୁଝିନପାରିବେ ବୋଲି । ମହାପୁରୁ ଆମେ ବି ଏଇ ଘରଲୋକ, ଆମକୁ ଭଲ ପାଇବ, ରାଗିବନି । ଅନ୍ୟ ପିଲାମାନେ ମହାପୁରୁ ଡାକନ୍ତି ସେଇ ଟିକି ମୂର୍ତ୍ତି ମାନଙ୍କୁ । ପୂଜାରୀ ପୂଜାସାରି ସମସ୍ତଙ୍କୁ ଟିକି ଚାମଚରେ ପାଣିଟିକିଏ ଲେଖାଁ ଦିଏ, ଡାହାଣ ପାପୁଲି ତଳେ ବାଁ ପାପୁଲି ରଖି ତାକୁ ନିଅନ୍ତି ଏଲି ବବି, ସମସ୍ତଙ୍କ ଦେଖାଦେଖି । ପାଟିରେ ଦେଇ ମୁଣ୍ଡରେ ମାରିଲା ପରେ ପୁଣି ଟିକିଏ ଲେଖାଁ ଚୂଡ଼ାଗୁଡ଼ ପ୍ରସଦ ମିଳେ, କେବେ କେମିତି ନଡ଼ିଆ ବି । ପାଦୁକ ପ୍ରସାଦ ଦେଲାବେଳେ ଏଲି ପୂଜାରୀ ମୁହଁକୁ ଅନାଏ ଡରି ଡରି । ପୂଜାରୀ ଅନ୍ୟ ପିଲାଙ୍କୁ ଅନେଇ ମିଠା କଥା ପଦେ ଅଧେ କହନ୍ତି, ତାଙ୍କ ଦାନ୍ତୁରା ପାନବୋଳ ମୁହଁ ହସରେ ଉଜ୍ଜ୍ୱଳି ଉଠେ ମିନୁ, ବିଲି, ବେବୀଙ୍କୁ ଦେଖିଲେ । 'କେବେ ଆସିଲ ରେ ବୁଇ ?' ବୋଲି ମୀନାର ମୁଣ୍ଡ ଆଉଁସି ଦିଅନ୍ତି, ଅଥବା 'ଆରେ ଆମ ଟୁକୁନ୍‌ର ଦାନ୍ତ ମୂଷା ନେଇଗଲା' କହି ହା ହା ହସନ୍ତି । ଏଲି ଟାଣିଟୁଣି ମୁହଁକୁ ହସ ଆଣେ, ପୂଜାରୀ ମୁହଁକୁ ଅନେଇ ହାତ ପାତେ, ହେଲେ ମୁହଁକୁ ଜମା ନ ଅନେଇ ତା ପାପୁଲିରେ ପାଦୁକ, ପ୍ରସାଦ ଦିଅନ୍ତି ପୂଜାରୀ । ଏଲି ବୁଝେ, ପୂଜାରୀ ଅଜାଙ୍କୁ ଖୁସି ଲାଗେନି ଏଲି, ବବିଙ୍କୁ ପାଦୁକ ଦେଲାବେଳେ ।

ବାପା ପ୍ରଥମେ ତାଙ୍କ ନୂଆ ଠାକୁର ଘରଟି ସଜାଡ଼ିବା ପରେ ଏକୁଟିଆ ପୂଜା କରୁଥିଲେ । ଦିନେ ଛୁଟିଦିନଟାରେ ସକାଳୁ ଗାଧୋଇପାଧୋଇ ମଠାଲୁଗା ଧୋତି ପିନ୍ଧିବା ଦେଖି ମାଆ ହସିପକେଇଥିଲେ, କହିଲେ, 'ଯାହେଉ ଏତେ ଦିନକେ ଭଲ କାମଟିଏ କରୁଚ । ପିଲାଙ୍କୁ ଡାକି ପାଖରେ ବସାଉନ, ଶିଖନ୍ତୁ ସେମାନେ କେମିତି ପୂଜା କରିବାକୁ ହୁଏ ।'

ଛୁଟିଦିନଟିରେ ଘରେ ଥିଲେ ବାପା ପିଲାଙ୍କ କୋଠରୀକୁ ଆସନ୍ତି, ହେଲେ ଆଜି ଗୀତ କି ଡ୍ରଇଂ ନହେଇ ପୂଜା ଶିଖା ହେଲା । ବାପା ଡ଼ାକିଲେ, 'ଆସ ପିଲାଏ, ମୋ ପାଖରେ ବସି ଦେଖ ଚୁପ୍‌ଚାପ୍ ।' ଚୁଡାଗୁଡ ନୁହେଁ ବଢ଼ିଆ ଭୋଗ ତିଆରି କରନ୍ତି ବାପା ନିଜ ହାତରେ । କେବେ କଟା ଫଳରେ, କେବେ ଛେନା ନଡ଼ିଆ କୋରାରେ । ଦିନାକେତେ ପରେ ମାଆ ବି ଭୋଗ ତିଆରି କରିଦିଏ, ବାପାଙ୍କ ଲାଗି ବଗିଚାରୁ ତୋଳି ଫୁଲ ସଜାଡ଼ିଦିଏ । ବାପା କିଛି କହନ୍ତି ନାହିଁ ସିନା, ଏଲି କୁ ଲାଗେ ମାଆଙ୍କ ବେଳ କୁ ବାପା ଠିକ୍ ପୂଜାରୀ ଅଜାଙ୍କ ଭଳି ହାବଭାବ ଦେଖାନ୍ତି । ଏଲି ଭାବେ, ତାଙ୍କ ଘରୁ ଆଣିଲା ଠାକୁର ମାଆକୁ ଭଲ ପାଇବେ କି ନାହିଁ କେଜାଣି ।

କେତେଟା ମାସ ଯାଇଥିବ କି ନାହିଁ ବାପାଙ୍କ ପୂଜା ଆଉ ସେତେ ନିୟମିତ ହେଇପାରିଲା ନାହିଁ । କ୍ରମେ ଷ୍ଟୁଲ୍ ଉପରେ ସଜାହେଇ ବସିଥିଲେ ବି ଠାକୁରଙ୍କ ଉପରେ ଧୂଳି ଜମିଯାଏ, ଦୀପ

କଳା ହୋଇ ରହେ, କୋଉ କାଳର ଶୁଖିଲା ଫୁଲକୁ ମାଆ ସଫା କରିବାକୁ ସାହସ କରେନାହିଁ । ଥକାଳେ ସକାଳେ ବାପାଙ୍କର ପୁଣି ମନେପଡ଼ିଯାଏ ଠାକୁର ପୂଜା ।

କେବେ କେଜାଣି ଠାକୁର ପୂଜା ପୁଣି ଏକାବେଳକେ ବନ୍ଦ ହୋଇଗଲା । ମାଆ ସାଙ୍ଗେ କ୍ରିସମାସ ଅଜାଘରେ ବିତାନ୍ତି ଏଲି, ବବି । ଆଉ ତାଙ୍କର ଖୁସିବାସିଆ ମଣିଷଟିଏ । ଅଜାଙ୍କୁ ଭୟ ଲାଗେ, ଏଲି ବେଶୀ ଯାଏନାହିଁ ତାଙ୍କ ପାଖକୁ । ମାଆର ଭଉଣୀ ଦିହେଁ ବି ଆସନ୍ତି ଅଜାଙ୍କ ଘରକୁ ସେତେବେଳେ । ଏଲି ଜାଣେ, ତା ଅଜା ଦି ମାଉସୀ ମାନଙ୍କ ପିଲାଙ୍କୁ ବେଶୀ ଭଲ ପାଆନ୍ତି, ସେମାନେ ସଫା ଗୋରା ବୋଲି । ବବି କୁ ଏଲି ଠୁ ବେଶୀ ଭଲ ପାଆନ୍ତି, ତା ବି ଏଲି ଜାଣେ, ଯେ ବବି କୁ ଦେଖିଲେ ଧରିହୁଏ ନାହିଁ ସେ ଅଧା ଭାରତୀୟ ବୋଲି । ତା ରଂଗ ସଫା ଗୋରା, ବାଳ ଆଖି ପ୍ରାୟ ଗୋରା ଲୋକଙ୍କ ଭଳି । କ୍ରିସମାସ ବେଳେ, ବର୍ଷକୁ ଥରେ ଏଲି ବବି ସମସ୍ତଙ୍କ ସାଙ୍ଗେ ଚର୍ଚ୍ଚ ଯାଆନ୍ତି । ବାପା ବି ଯାଆନ୍ତି ସାଙ୍ଗରେ ।

ଅତି ପିଲାଦିନେ, ମାଆ ଥରେ ରବିବାର ଦିନ ଚର୍ଚ୍ଚ ନେଇଯାଇଥିଲା ଏଲି ଆଉ ବବିଙ୍କୁ । ଫେରିଲାପରେ ବାପା ବିରକ୍ତ ହୋଇଥିଲେ, କହିଲେ 'ଆମର ପରା କଥା ହୋଇଥିଲା, ଆମେ ଧର୍ମନିରପେକ୍ଷ ରହିବା ।'

'ଭଲ କଥା । ଉଭୟ ଧର୍ମକୁ ସମ୍ମାନ କରନ୍ତୁ ପିଲାଏ ବୋଲି ମୁଁ ଭାବିଥିଲି ।'

ସେବେ ବାପା ନିଜେ ଠାକୁର ପୂଜା କରୁନଥିଲେ । ରବିବାରଦିନ ଯଦି କୁଆଡ଼େ ବୁଲିବାକୁ ଯାଇଥାନ୍ତି, ସୁନ୍ଦର ପୁରୁଣା ଚର୍ଚ୍ଚଟିଏ ଦେଖିଲେ ମା କହନ୍ତି, 'ତମେମାନେ ବାପାଙ୍କ ସାଙ୍ଗେ ବୁଲୁଥାଅ ପିଲେ, ମୁଁ ଯାଏଁ ପାଞ୍ଚମିନିଟ୍ ଟିକିଏ ପ୍ରାର୍ଥନା କରିଦେଇ ଆସେଁ ।' ଏଲିର ଖୁବ୍ ମନ ହୁଏ ମାଆ ସାଙ୍ଗେ ଯିବାକୁ । ଲମ୍ବ ବେଞ୍ଚରେ ବସି ଯୀଶୁଙ୍କ ମୂର୍ତ୍ତି ଆଗରେ ମୁଣ୍ଡ ନୋଇଁ ଛାତି କାନ୍ଧରେ ଛକି କାଟି ପ୍ରାର୍ଥନା କରିବାକୁ । କିନ୍ତୁ ବାପାଙ୍କ ଡରରେ ଯାଏନାହିଁ ସେ । ସ୍କୁଲରେ ତା ନାଁ ଭିନ୍ନ ଥାଏ, ଧର୍ମ ଅନ୍ୟ ମାନଙ୍କ ଠାରୁ ଅଲଗା ଥାଏ । ତା କ୍ଲାସରେ ଦି' ତିନିଜଣ ପଞ୍ଜାବୀ, ଗୁଜୁରାଟୀ ପିଲା ବି ଥାଆନ୍ତି । ହେଲେ ତା ଭଳି ମିଶା ପିଲା କେହି ନଥାନ୍ତି ।

ବାପା ଯେଉଁ ମୂର୍ତ୍ତିମାନଙ୍କୁ ଡ୍ରଇଂରୁମ୍‌ରେ ସଜା ଜିନିଷ ହେବାକୁ ଦେଉନଥିଲେ, ସିଏ ଧୂଳିଧୂସ୍ତ ତଳେ ଅପୂଜା ହୋଇ ରହିଲେ, ନାଲି ଟେବୁଲ୍‌କ୍ଲଥ ଉପରେ, ସୁନ୍ଦର ପିତଳ ଦୀପ ଧୂପଦାନୀ ସାଙ୍ଗରେ । ବାପା କ୍ରମେ ଦୂରେଇ ଯାଉଥିଲେ ପରିବାରଠୁ, ନିଜଠାରୁ । ନିଜ ଉପରେ ବିରକ୍ତ ହେଉଥିଲେ, କାଇଁକି ନା ସେ ସଚ୍ଚା ଭାରତୀୟ, ସଚ୍ଚା ହିନ୍ଦୁ ବ୍ରାହ୍ମଣ ହୋଇପାରୁନଥିଲେ । ଦାୟିତ୍ୱ ତୁଲାଇ ପାରିନଥିବା ଯୋଗୁଁ ପ୍ରାୟଶ୍ଚିତ୍ତ କରିବାକୁ ଚେଷ୍ଟା କରୁଥିଲେ ଅବା । ହେଲେ ସେଥିଲାଗି ନିଜ ପରିବାରକୁ କାଇଁକି ଦାୟୀ କରୁଥିଲେ ସେ ? କ'ଣ ଭାବୁଥିଲେ, ଯେ ଦୋଷ ଲଦିଦେଲେ ତାଙ୍କ ଦୋଷୀଭାବର ମେଘ ଘୁଞ୍ଚିଯିବ ? ନା ଘଟିଲା ଜୀବନ, ତିଆରି ହୋଇଥିବା ପରିବାର ଫେରିଯିବ ପୂର୍ବର ଅସ୍ଥିତି କୁ ?

ତାଙ୍କର ମନ ଲାଗୁନଥିଲା କାହିଁରେ । ନା ଠାକୁର ପୂଜାରେ, ନା କାମରେ । କ'ଣ ଗୋଟାଏ ଖାଲିପଣ ଘାରିରହିଥିଲା ତାଙ୍କୁ । ଏଲି ଜାଣିପାରୁଥିଲା ଆଜି ପଛକୁ ଚାହିଁ, ବାପାଙ୍କ ସେଇ ଦୁଃଖ, ନାଁ

ନଥିବା ଖାଲିପଣ । ବାପା ଯାହା ହରେଇ ଦେଇଥିଲେ, ସେ ଏବେ ଜାଣିପାରୁଚି । କଥାଟି ମନ ଗହୀରରୁ ତାଙ୍କର ହଜିଯାଉଥିଲା । ଟିକି ମୂର୍ତ୍ତି ମାନଙ୍କଠି ବିଶ୍ୱାସ ତାଙ୍କର ତ ହଜିସାରିଥିଲା କାହିଁ କେବେଠୁ । ଏବେ ଉପରୁ ରୋପିଲେ ଆସନ୍ତା କୁଆଡୁ ସେ ଚେରରେ ଜୀବନ ? ନିଜ ଦେଶର ମହାନ୍ ପଣରେ ବି ବିଶ୍ୱାସ ସେ ମାରିଦେଇଥିଲେ ନିଜ ହାତରେ, ସେଇ ପାଠପଢ଼ିବା ଦିନୁଁ । ବିଦେଶରେ ତଥାପି କିନ୍ତୁ ଚେର ଧରିଲାନାଇଁ ତାଙ୍କର । କାହାକୁ ଦୋଷ ଦିଅନ୍ତେ ବିଚରା ।

ଅଧରାତିରେ ମଦ ପିଇ ଫେରିବା, ମାଆକୁ ଗାଳି ଗୁଲଜ କରିବା, ଏମିତି କି ଦିନ ସପ୍ତାହ ମାସ ଧରି କଥାବାର୍ତ୍ତା ବନ୍ଦ କରିଦେବା,ଏଇ କ୍ରମ ଚାଲିଲା ବର୍ଷ କେତେ । ମାଆ କାହାକୁ ସବୁ ଫୋନ୍ କରେ ଟିପି ରଖେ କଣ ସବୁ କଥା ନୋଟ୍ ବୁକ୍‌ରେ । ବାପାଙ୍କ ବିରୁଦ୍ଧରେ ପ୍ରମାଣ ସେସବୁ ବୋଲି ଏଲି ପରେ ଜାଣିଲା । ଆଖି ଆଗରେ ଚାହୁଁ ଚାହୁଁ ମାଆ ଦୂରେଇ ଯାଉଥିଲା ବାପାଙ୍କ ଜୀବନରୁ । ବାପା ନିଜେ ଜାଣିପାରୁନଥିଲେ ।

ନିଜ ସ୍ତ୍ରୀ ଉପରେ ଅଦ୍ଭୁତ ଆସ୍ଥା ଥିଲା ତାଙ୍କର । ଗୋଟିଏ ମଣିଷ ଉପରେ ଏଭଳି ପୂରାପୂରି ଆସ୍ଥା କିଭଳି କରାଯାଇପାରେ, ଭାବେ ଏଲି, ତା ପୁଣି ପରିସ୍ଥିତିର ଯୁକ୍ତିଯୁକ୍ତତା ନଥାଇ ।

॥୧୯॥

ବାପାଙ୍କ କଥା ଭିନ୍ନ । ମା ଚେଷ୍ଟା ଚଳେଇଥିଲା ବାହାହେଲା ଦିନୁ, କେମିତି ଆଦର୍ଶ ଭାରତୀୟ ପତ୍ନୀଟିଏର ପାଖାପାଖି ହେଇପାରିବ । ତା ବି, ବାପାଙ୍କ କଳ୍ପନାର । ବାପା ନିଜେ ସେଇ ଗୁଣାବଳୀଯୁକ୍ତ ମାନଦଣ୍ଡ କୁ ମାଆର ହାତ ଅପହଞ୍ଚ କୁ ନେଇ ଚାଲିଥିଲେ । ମାଆ କେଉଁ ମୋହରେ ଆଖିରେ ଅନ୍ଧପୁଟୁଳି ବାନ୍ଧିଦେଇଥିଲା କେଜାଣି । ବୋଧେ ଏଲି ନିଜେ ବି ସେଇ ନ୍ୟାୟରେ ଈଶ୍ୱରନ୍‌ର ଯୋଗ୍ୟ ହେବାକୁ ଚେଷ୍ଟା କରୁଥିଲା । ବିଶ୍ୱାସ କରିଥିଲା ଈଶ୍ୱରନ୍ ତା ମନ ଗହୀରରେ ଜାଣେ ଯେ ତା ବାପା ମାଙ୍କ ଯୋଗ୍ୟତାର ମାପଦଣ୍ଡ କେତେ ଅବାନ୍ତର । ସେ ନିଜେ ତ କହେ ତା ବାପା ମା ପୁରୁଣା କାଳିଆ, କୂଅବେଙ୍ଗ ବୋଲି ।

ନିଜେ ଈଶ୍ୱରନ ତାରିଫ କରେ ସେଇ ସଂସ୍କାରକୁ, ଯେଉଁଠି ବାପ ମା ନିଜେ ବୟସ୍କ ସନ୍ତାନର ଜୀବନରୁ ଦୂରେଇ ଯାଆନ୍ତି । ସନ୍ତାନଟି ବି ଏଇ ବିଶ୍ୱାସରେ ବାପ ମାଙ୍କୁ ଆଡ଼େଇ ଦିଏ ଯେ ଏଣିକି ବସା ବାନ୍ଧିବା ତା ଲାଗି ବଡ଼, ନିଜେ ଦେଖିଥିବା ସ୍ୱପ୍ନ କୁ ରୂପ ଦେବା ଅଧିକ ସୁଖକର । ଜୀବନକୁ ସାମଗ୍ରିକ ଦୃଷ୍ଟିରେ ଦେଖିବସିଲେ ଏହାହିଁ ମହତ୍ତ୍ୱପୂର୍ଣ୍ଣ ବି । ସଙ୍ଗୀ ଖୋଜିବା, ବସା ବାନ୍ଧିବା, ଏହାହିଁ ତ ଜୀବନ କୁ ଆଉ ପାଦେ ଆଗକୁ ନିଏ । ଅପସରି ଯାଉଥିବା ପିଢ଼ୀଟିର ଭାବନାତ୍ମକ ଆବଶ୍ୟକତା କାହିଁକି ପ୍ରକୃତି ଆଖିରେ ସେତେ ବଡ଼ ହେବ ?

ସେଇ ଯୁକ୍ତିରେ ସଙ୍ଗୀ ବଦଳିବା ବି ସ୍ୱାଭାବିକ । ପ୍ରାକୃତିକ ଜୀବନଧାରା ଲାଗି ସ୍ୱାସ୍ଥ୍ୟପ୍ରଦ ବି । ତଥାପି ଈଶ୍ୱରନ୍ କାହିଁକି ତାକୁ ଧୋକା ଦେଲା, ଏଲି ଭାବିହୁଏ । ନା ଏଲି ନିଜେ ମିଛଟାରେ ଦୂରେଇ ଦେଲା ଈଶ୍ୱରନ୍‌କୁ ? ଏଲିର ବାପା ଆଉ ମା, କିଏ ଧୋକା ଦେଲା କାହାକୁ ? ସମ୍ପର୍କ ତ

ପୁରା କଟେନାହିଁ, ଯେଉଁଠି ଆଉରି ନୂଆ ଜୀବନ କେତୋଟି ସୃଷ୍ଟିହେଇ ଅବିଚ୍ଛେଦ୍ୟ ଭାବେ ବାନ୍ଧିହେଇ ସାରିଥାଏ, ରକ୍ତ ଜରିଆରେ । ହେଉ ପଛେ ସେ ସଂପର୍କ ନିତିଦିନିଆ ଜୀବନର ବାହାରେ । ସ୍ମୃତି ହୋଇ ହିଁ ଯାହା ରହିଯାଏ ସେଠି । ଦୁଃଖ ବିନା ସେଆଡ଼ିକି ଯିବା ଆଉ ସମ୍ଭବ ପଛକେ ନହେଉ ।

ଏଲି ଜମା ଅନ୍ଦାଜ କରିନଥିଲା, ଯେ ମାଆ ଦିନେ ଏ ଭିତରେ ଓକିଲ ପାଖକୁ ଯାଇଛନ୍ତି ବୋଲି । କୋର୍ଟରେ ଡାଇଭୋର୍ସ ସୁଟ୍ ଦାଖଲ କଲେଣି ବୋଲି । ଏଲି କ'ଣ, ବାପାଙ୍କର ବି ବୋଧେ ଧାରଣା ନଥିଲା ମାଆ ଏକଥା କରିପାରିବ ବୋଲି ।

ମା ସାଙ୍ଗେ କଥା କହିନାହିଁ ଏଲି କେତେଦିନୁ । ଇମେଲ ଦିଆନିଆ ହୁଏ ପ୍ରାୟ, ତା ବି ନାହିଁ ଏଠିକି ଆସିଲା ଦିନୁଁ । ମାଆ କୁ ଏଲି କହିନାହିଁ ଇଣ୍ଡିଆ ଆସିବା କଥା । ଥାଉ ତାର ବିଚାରୀ, ଭଲରେ ଥାଉ ଶାନ୍ତିରେ । ବାକି ଜୀବନ କାଟିବା ଭଳି ସେ ବାଟ ବାଛିନେଇଚି । ନିଜ କଥା ନେଇ ତାକୁ ଆଉ ବ୍ୟସ୍ତ କରିବା କି ଦରକାର । ଦେହ ବି ତାର ଆଉ ସେତେ ଭଲ ରହୁନାହିଁ । ଏଲି ତ ଜାଣେ, ମାଆ ତା'ର ସବୁଦିନେ ଠାକୁରଙ୍କୁ ଡାକୁଥିବ, ପୁଅ ଝିଅ ଦିହେଁ ତାର ସୁଖରେ ଥାଆନ୍ତୁ ବୋଲି ।

ବବି ସାଙ୍ଗେ ବି ଇମେଲରେ ଯାହା ଚିଠିପତ୍ର । ଦି ବର୍ଷ ହେଲା ତା ସାଙ୍ଗେ ଦେଖା ହେଇନାହିଁ । ଫୋନ୍ କି ଇମେଲ ରେ ଇଣ୍ଡିଆ କଥା ପଡ଼େନାହିଁ । ଇଣ୍ଡିଆ ମାନେ ବାପା । ପିଲାଦିନ । ଘର ଭାଙ୍ଗିଯିବାର ଛବି । ବବି ଖାଲି କହେ ତା ପପ୍ ସଙ୍ଗୀତ ଗୋଷ୍ଠୀ କଥା, ତାଙ୍କ ପ୍ରୋଗ୍ରାମ କୋଉ ସହରରେ ହେଲା, କେତେ ଲୋକ ଭୀଡ଼, ମାଇକ୍ ହାତରେ ଷ୍ଟେଜ୍ ଉପରଯାକ ନାଚି ଡେଇଁ ଗୀତ ଗାଏ ସେ, ସାଙ୍ଗରେ ଦର୍ଶକ ଥାଆନ୍ତି ହଜାର ହଜାର ଟୋକା ଟୋକୀ, ସେଇ ତାଳରେ ଅତଡ଼ା ପଡ଼ା ବାଜା ସାଙ୍ଗରେ ନାଚୁଥାଆନ୍ତି । ସେ କି ଅନୁଭବ, ତୁ ଜାଣିପାରିବୁ ନାହିଁ, ଏଲିକୁ କହେ ବବି । ଏଲି ବୁଝେ, ବବି ର ସ୍ୱରରେ ଥାଏ ସେ ନିଶା, ଜନପ୍ରିୟ ସାଫଲ୍ୟର । ଏଲି କଳ୍ପନାରେ ଦେଖେ, ଡେଙ୍ଗା ସୁନ୍ଦର ବବି, ମାଇକ୍ ହାତରେ କେମିତି ଦିଶୁଥିବ, ଖାଲିଦେହରେ ଦେହଯାକ କେତେରଂଗରେ କେତେବାଗରେ କୁଟାହେଇଥିବା ଚିତାସବୁ ଦିଶୁଥିବ ଝାଳରେ ଜକଜକ । ପିଲାଦିନର ଶାନ୍ତ ଶିଷ୍ଟ ଭାଇଟି ତା'ର ନୁହେଁ ଆଉ ସେ । ଭାଇ ଭଉଣୀ ଦିହେଁ ବାଟ ଭାଙ୍ଗି ବହୁତ ଦୂରେଇ ଗଲେଣି ପରସ୍ପରଠୁ । ବବିକୁ ସେ କହିନାହିଁ ପିଲାଦିନର ଜେଜେବାପାଙ୍କ ଘର ତାକୁ ପୁଣି ଟାଣିଆଣିଚି ଅକାରଣ ବୋଲି ।

ବବି କୁ ପାଖରେ ବସି ପାଠ ପଢ଼ାନ୍ତି ବାପା, ଘରକୁ ମାଷ୍ଟର ଆସେ ପିଆନୋ ଶିଖାଇବାକୁ । ସାଙ୍ଗରେ ନେଇ ଯାଆନ୍ତି ଜିମ୍‌କୁ କେବେ ତ ଷ୍ଟାଡ଼ିୟମ୍‌କୁ କେବେ । ଏଲିର ରାଗ ହୁଏ ଯେବେ ତାକୁ ନ ନେଇ ବାପା କେବଳ ବବିକୁ ସାଙ୍ଗରେ ନେଇ ଯାଆନ୍ତି । ମାଆ କହେ, 'ତୁ ମୋ ସାଙ୍ଗେ ରହି କେକ୍ ତିଆରି କରିବୁ ଆଜି ।' ଏଲି କହେ, 'ନା, ମୁଁ ଲାଇବ୍ରେରୀରୁ ବହି ଦିଇଟା ଆଣିଚି, ସାରିଦିଏ ଆଗ ।' ନିଜ ରୁମ୍‌ରେ ପଶି ବହି ପଢ଼େ ପଛକେ ମା ସାଙ୍ଗେ ଘରକାମ ରେ ପଶେ ନାହିଁ ଏଲି । କାହିଁକି ବାପାଙ୍କ ଏତେ ଆପଣାର ହେବ ବବି, ଏଲି କାହିଁକି ନୁହେଁ । ସେ ଦିନେ ଦେଖାଇଦେବ, ଏଲି ଲାଗି ବେଶୀ ଗର୍ବ କରିବେ ବାପା, ବବି ଠୁ ବେଶୀ ।

ବାପାଙ୍କ ଆଶା ମତେ ହିଁ ପାଠ ପଢ଼ିଲା ଏଲି, ଯେମିତି ବାପା ଚାହିଁଥିଲେ ଠିକ୍ ସେମିତି । ବବି ପାଠରେ ମନ ଦେଲାନାହିଁ, କଲେଜରେ ବର୍ଷେ କଟାଇ ଛାଡ଼ିଦେଲା ପାଠ । ବାପା ଜାଣିଲେ କି ନାହିଁ କେଜାଣି, କାନରେ ପଡ଼ିଥିବ ନିଶ୍ଚେ । ଭାରି ବିରକ୍ତ ହୁଅନ୍ତି ବାପା ପପ୍‌ମ୍ୟୁଜିକ୍ ଆଉ ନାଚି ଡ଼େଇଁ ପୃଥ୍ୱୀ କମ୍ପାଉଥିବା ଯୁବଗୋଷ୍ଠୀ ଙ୍କ ଉପରେ ।

'କିରେ ସଙ୍ଗୀତ ନୃତ୍ୟ କହିଲେ କଣ ଏଇଆ ?' ବୁଝାନ୍ତି ସେ, ତାଙ୍କ ଉଦାର ମୁଡ୍‌ରେ ଥିଲାବେଳେ । ପାଖରେ ମାଆ ବସିଥାନ୍ତି, ଏଲି ବବି ଥାଆନ୍ତି, ବାପା ଗୋଟିକ ପରେ ଗୋଟିଏ ଗୀତ ଗାଆନ୍ତି ତାଙ୍କ କଲେଜ ବେଳର ଗୀତ ଖାତା ଖୋଲି । ବବିକୁ ଗୀତ ଶିଖାନ୍ତି ସେଥିରୁ ବାଛି । ତାପରେ କହନ୍ତି, 'ସଙ୍ଗୀତ ତମ ଭିତରର କୋମଳ ଭାବ ସବୁକୁ ଛୁଇଁବ ନା ନଚେଇ ମାତାଲ କରିବ ପଶୁଙ୍କ ଭଳି ? ବୁଝିଲୁ ବାବା, ସଙ୍ଗୀତ ସେଇ ଯିଏ ଆତ୍ମାକୁ ଛୁଇଁବ, ଆଖିକୁ ଅକାରଣ ଲୁହ ଆଣିଦେବ, ଆଖପାଖର ଅସନା ଆଜେବାଜେ କଥା ସବୁ ଉଭେଇ ଯିବ ବଳେ ଯାହା ଶୁଣିଲେ ।' ବବି ବିଭୋର ହେଇ ତାଙ୍କ କଥା ଶୁଣେ, ପୂର୍ବରୁ କେବେ ଶିଖିଥିବା ଗୀତ ନିଜେ ରିଆଜ କରି ରଖିଥାଏ, ବାପାଙ୍କୁ ଶୁଣାଇ ସରପ୍ରାଇଜ ଦିଏ । ବାପା ତା ମୁଣ୍ଡ ଆଉଁସି ଦିଅନ୍ତି ଆଶୀର୍ବାଦରେ, କୋହରେ ସେତେବେଳେ ତାଙ୍କ ମୁହଁରୁ କଥା ବାହାରେ ନାହିଁ । ଇଣ୍ଡିଆର ବଡ଼ ବଡ଼ ସଙ୍ଗୀତଜ୍ଞଙ୍କ କ୍ୟାସେଟ୍ କିଣିଆଣି ଦିଅନ୍ତି ସେ ବବି ଲାଗି ।

ହେଲେ ବବି ଟିକିଏ ବଡ଼ ହେଇ ଆସିଲା ବେଳକୁ ସାଙ୍ଗ ମେଳରେ ନାଚି ଡେଇଁ ଫେରିଥିବା ଜାଣି ପାଟିଗୋଳ ହେଉଥିଲା ବାପାଙ୍କ ସାଙ୍ଗରେ । କୋର୍ଟରେ ସେ କଥା ବି ଉଲ୍ଲେଖ କରିଥିଲା ବବି, ବାପାଙ୍କ ନିଷ୍ଠୁରତାର, ଅବିବେକୀ ପଣିଆର ଦୃଷ୍ଟାନ୍ତ ଦେବାପାଇଁ । ଥରେ ଘରେ ଗୀଟାରରେ ଓ୍ୱେଷ୍ଟର୍ନ ମ୍ୟୁଜିକ ବଜାଇ ନିଜେ ନାଚ ସାଙ୍ଗରେ ଗୀତ ଗାଇ ପ୍ରାକ୍ଟିସ କରୁଥିଲା ବେଳେ ବାପା ଭୀଷଣ ପାଟିତୁଣ୍ଡ କରିଥିଲେ, ବବି ଯୁକ୍ତି କରିବାରୁ ରାଗିଯାଇ ତା ଗୀଟାର ଭାଙ୍ଗିଦେଇଥିଲେ । ଗୀଟାରଟା କେତେ ଦୋକାନରୁ ବାଛି ନିଜ ପକେଟ ମନିରୁ କିଣିଥିଲା ବବି । କହୁ କହୁ କୋର୍ଟରେ ବବି ଆଖିକୁ ଲୁହ ଆସିଯାଇଥିଲା ।

ବାପାଙ୍କଠୁ ଅଲଗା ହେଲା ପରେ କିଛିଦିନ ତୁନିତାନି ହେଇ ରହିଲା ବବି । ତାପରେ ସ୍କୁଲ ସାରି କଲେଜ ଯେତେବେଳେ ଗଲା, ତା ମନଲାଖି ସାଙ୍ଗ ସାଥି ଜୁଟିଗଲେ । ଝିଅମାନଙ୍କ ଭିତରେ ଖୁବ୍ ମିଶିପାରେ ବବି । ଦିନେ ହଠାତ୍ ଘରକୁ ଫେରି କହିଲା ମାଆଙ୍କୁ, ଯେ କଲେଜ ପାଠ ତାର ଦରକାର ନାହିଁ । ତାକୁ ଗୋଟିଏ ଜଣାଶୁଣା ପପ୍ ମ୍ୟୁଜିକ୍ ଗ୍ରୁପ୍ ରେ କାମ ମିଳିଯାଇଚି । ସେ ନିଜେ ଚଳିଲା ଭଳି ଉପାର୍ଜନ କରିନେବ ସେଥିରୁ, ଅବା ବଳକା ସମୟରେ ଶିଖିବ ମ୍ୟୁଜିକ୍ ଯାହା ତାର ସବୁଦିନେ ସ୍ୱପ୍ନ ଥିଲା । ମାଆଙ୍କୁ ଟିକିଏ ନିରାଶା ହେଇଥିଲା ହୁଏତ, କିନ୍ତୁ ବବିକୁ ସେ ବାଧା ଦେଇନଥିଲା ।

ହେଲେ କାହିଁକି ବଡ଼ ଉଦାସ ହେଇପଡ଼ିଥିଲା ଏଲି । ବବି ପାଖରେ ବସି ବୁଝାଇ କହିଥିଲା, 'ତୁ ମ୍ୟୁଜିକ୍ ବି ଶିଖ୍ ବବି, ପିଲାଦିନୁ ଏତେ ରୁଚି ତୋର । ମନଦେଇ ଶିଖିଲେ ନିଶ୍ଚୟ ଦିନେ ତୋ ପ୍ରତିଭାକୁ ରୂପ ଦେବୁ, ମୁଁ ଜାଣେ । ହେଲେ କଲେଜ ପାଠ ସାରିଦେ ବବି । ଗ୍ରାଜୁଏସନ୍ ଟା ସାରିଦେ

ଅନ୍ତତଃ । ବାପା କେତେ ମହତ୍ତ୍ୱ ଦିଅନ୍ତି ପାଠକୁ, କେତେ ଆଶା ତାଙ୍କର ତୋ ଉପରେ ସବୁଦିନେ, ମନେନାହିଁ ?'

ବବି ମୁହଁ ବିଚିକିଟେଇ ଅନେଇଲା ତାକୁ, ଚିଡ଼ିଆଖାନାର ବିଚିତ୍ର ଜନ୍ତୁଟାଏ ଦେଖିଲା ଭଳି । କହିଲା, 'କ'ଣ କହିଲୁ ? ତୋ ବିଚାରରେ ମୁଁ ମୋ ଭବିଷ୍ୟତ ତିଆରିବି ସେଇମତେ ଯେମିତି ମୋ ବାପର ଇଚ୍ଛା ଥିଲା ? ହଉ, ଧରି ନେଏ ଆଉ କିଛି ସମୟ ଓ ପଇସା ଖର୍ଚ୍ଚ କଲି ବା, କି ଠିକଣା ଅଛି ମୁଁ ସଫଳ ହେବିବୋଲି ? କାରଣ ମୁଁ ଜାଣେ ଆଉ ପାଠରେ ମୋର ମନ ନାହିଁ । ଆଉ ମୁଁ ଜାଣେ ଯାହା ମୁଁ କହିବାକୁ ଯାଉଚି ସେଥିରେ ସଫଳ ହୁଏ ନହୁଏ, କାମ କରିବାକୁ ମୋତେ ଖୁସି ଲାଗିବ, ସାର୍ଥକ ଲାଗିବ ।'

॥୨୦॥

ବାପା ପରିବାରରୁ ଦୂରେଇ ଗଲାପରେ ସେମାନଙ୍କ ଭାରତୀୟ ସାଙ୍ଗସାଥୀ ମାନେ ବି ଦୂରେଇ ଯାଇଥିଲେ । ପିଲାଦିନର କଦବା କେବେ ଜୁଟୁଥିବା ଗୁଜୁରାଟୀ କି ପଞ୍ଜାବୀ ସାଙ୍ଗ ମାନଙ୍କ ସାଙ୍ଗେ ଭୋଜିଭାତ, ପର୍ବପର୍ବାଣୀ, ସବୁ ଏକାବେଳକେ ହଜିଗଲା । ମନେଅଛି ଏଲିର, ଦିନେ ବଜାରରେ ଦେଖାହୋଇଥିଲା ମିସେସ୍ ନବାନୀଙ୍କ ସହିତ । ପିଲାଦିନେ ଏଲି, ବବିଙ୍କ ଘରେ କାମ କରୁଥିଲେ ସେ । ଦେଖାଚାହାଁ କରୁଥିଲେ, ପାଠ ପଢ଼ାଉଥିଲେ ବି କିଛି କିଛି । ବୁଢ଼ୀ ହେଇଗଲେଣି । ଏଲି ନିଜେ ଯାଇ ଚିହ୍ନା ଦେଲା, 'ଚିହ୍ନି ପାରୁନ ମୋତେ ଆଣ୍ଟି ?'

ଖୁସି ହେଲେ ସେ । ପଚାରିଲେ, 'ବାପା, ମା କେମିତି ଅଛନ୍ତି ?'

'ବାପା ତ ଆଉ ନାହାନ୍ତି ମିସେସ୍ ନବାନୀ, ମା ଭଲ ଅଛି ।'

ଏଇ ପ୍ରଥମ ଏତେଦିନ ପରେ ଜଣେ ପଚାରିଥିଲା ତାଙ୍କ ପରିବାର ବିଷୟରେ କୁଶଳ ସମାଚାର । କାହିଁ କେତେଦିନୁ ଆଉକେହି ବା ବାପା ମାଙ୍କର ବିଷୟରେ ଏମିତି ପଚାରୁନଥିଲେ ଆଉ । କେବେ କେମିତି ଯଦି କିଏ ପଚାରେ, ଅଲଗା ଅଲଗା କରି ବାପା କିମ୍ବା ମାଆଙ୍କ ବିଷୟରେ । ଯେମିତି ବାପାଙ୍କ ସହକର୍ମୀ ପ୍ରଫେସର ଜୋସେଫ୍ ଦେଖାହେଲେ ପଚାରନ୍ତି, 'ଆଉ ବାପାଙ୍କ ବିଷୟରେ କ'ଣ ଖବର ? କେମିତି ଅଛନ୍ତି ସେ ?'

ବର୍ଷ କେତେଟା ପରେ ସେଇଭଳି ଶିଷ୍ଟାଚାରରୁ ବି ଉଭେଇଗଲେ ବାପା, ଏଲି ବବି ଆଉ ମାଆଙ୍କ ଜୀବନରୁ ବି ତାଙ୍କ ଛବି ବଦଳି ବଦଳି ଯାଉଥାଏ ।

ଆମେରିକାରେ ପାଞ୍ଚବର୍ଷ ରହିଥାଏ ଏଲି, ମଝିରେ କ୍ରିସମାସ ଛୁଟିରେ ଯାହା ଆସୁଥିଲା ସେ ମାଆଙ୍କ ପାଖକୁ । ଏଥର ପାଠ ସାରି ଫେରିଥିଲା ସେ, ମନ ମାଫିକେ ଚାକିରୀ ଟିଏ ମିଳିଥିଲା, ମାଆ ପାଖରେ ଏକା ସହରରେ ରହିବା ଲାଗି ବି ମନଥିଲା ତାର ।

ଏ ଭିତରେ ଲଣ୍ଡନ ବାହାର ଛୋଟିଆ ସହରଟିଏରେ ମାଆ ନୂଆ ଘରଟିଏ କିଣିଥିଲେ । ପୁରୁଣା ଘର ବିକାହୋଇ ଯାଇଥିଲା । ତାଙ୍କର ନିଜର କେତେଜଣ ବନ୍ଧୁବାନ୍ଧବଙ୍କ ପାଖାପାଖି ରହିବାକୁ ମାଆ ଠିକ୍ କରିଥିଲେ, ଏକୁଟିଆ ରହିବାଲାଗି ଏଥିରେ ତାଙ୍କର ସୁବିଧା ହେଉଥିଲା ।

ଲଣ୍ଡନକୁ ଫେରିଲା ପରେ ଏଲି ସାଙ୍ଗେ ସାଙ୍ଗ ମାଆଙ୍କୁ ଭେଟିବାକୁ ଯାଇପାରିନଥିଲା । ଦୋଷୀ ଲାଗିଲା ଟିକିଏ, ଅପେକ୍ଷା କରି ରହିଥିବ ବିଚାରୀ । ଏଲିର ମନ ଲାଗୁନଥାଏ କାମରେ, ଫୋନ୍ କରି ଶେଷକୁ ନେହୁରା ହୋଇ କହିଲା ମାଆଙ୍କୁ, ମନଦୁଃଖ ନକରିବାକୁ ।

'ମୁଁ ୱିକେଣ୍ଡ ରେ ହିଁ ଯାଇ ତମକୁ ଦେଖା କରିପାରିବି ମା । ଏବେ ମୋତେ ଚାକିରୀରେ ଜଏନ କରିବାକୁ ହେବ, ନିଜ ଲାଗି ନୂଆ ଫ୍ଲାଟଟିରେ ଜିନିଷପତ୍ର ବି ରଖିବାକୁ ହେବ । ତମ ଘରଟା ଏଇଠୁ ଦୂର କିନା ।'

ମାଆ ବୁଝିଲେ ତା ଅସୁବିଧା କଥା, ସବୁଦିନେ ତ ସେ ଅପରର ସୁବିଧା ଅସୁବିଧା କଥା ଆଗ ବିଚାର କରନ୍ତି । କହିଲେ, 'ହଉ ମା, ତୋତେ ଯେମିତି ଭଲ ସୁହେଇବ ସେଇଆ କର । ମୁଁ ତ ତୋତେ ଏଇନା କିଛି ସାହାଯ୍ୟ ବି କରିପାରୁନି ।'

ତା ପରବର୍ତ୍ତୀ ଶିନିବାର ରବିବାର ରେ ଏଲି ଯାଇ ମାଆର ନୂଆ ଘରେ ବି'ଦିନ ବିତାଇ ଥିଲା ।

ପ୍ରଥମ ଥର ଟ୍ରେନରେ ଘଣ୍ଟାଏ ବାଟ ଗଲାବେଳେ ଏଲିକୁ ଜମାରୁ ନିଜ ଘରକୁ ଯାଉଥିବା ଭଳି ଲାଗୁନଥିଲା । କେବଳ ମାଆଙ୍କୁ ଭେଟିବାର ଉତ୍କଣ୍ଠା ଥିଲା ଯାହା । ନିଜ ପିଲାଦିନର ଉଷୁମ୍ ଘରଟି ତ କେଉଁଦିନୁ ଆଉ ନାହିଁ ଏ ସହରରେ । ସେ କଥା ଆଉ ମନକୁ ନ ଆଣିବାକୁ ଚେଷ୍ଟା କରୁଥିଲା ।

ମାଆଙ୍କ ନୂଆ ଘରଟି ପୁରୁଣା କଟେଜ ଢାଞ୍ଚାର । ଆଗରେ ଛୋଟିଆ ସୁନ୍ଦର ବଗିଚାଟିଏ । ଛବି ଭଳି ସୁନ୍ଦର ଘରଟି । ଏଲିକୁ ଲାଗିଲା, ଛବି ଭଳି ସୁଦୂର ବି ।

ନୂଆ ଘରକୁ ପ୍ରଥମ କରି ଆସୁଚି ତାଙ୍କ ନିଜ ଝିଅଟି, ବବି ତ ଏଯାଏଁ ଆସିନାହିଁ । ଏଲିକୁ ପୁଣି ଥରେ ଦୋଷୀ ଭାବ ଆସୁଥିଲା ମାଆଙ୍କୁ ଏତେଦିନୁ ଭେଟିନଥିବା ଲାଗି । ଅସରାଏ କଥାବାର୍ତ୍ତା ସାରି ଚା' ପିଇଲା ପରେ ଏଲିକୁ ସେ ଡାକିନେଇଗଲେ ଉପର ମହଲାକୁ । ଉପରେ ଶୋଇଲା ଘରେ ଏଲି ବବିଙ୍କ ପିଲା ଦିନର ଆଲମାରୀ, ଥାକର ଖେଳନା ସବୁ ବି ସେମିତି ସଜା ହୋଇ ରହିଥିଲା । କାନ୍ଥରେ ଏଲିର ହାତ ଅଙ୍କା ଛବି । ବବିର ଛୋଟିଆ ପିଆନୋ । ବିଛଣାରେ ପିଲାଦିନର ଟେଡି ବିଅର । ମାଆ କେତେ ଯତ୍ନରେ କୋଠରୀଟିକୁ ସଜାଡ଼ିଚନ୍ତି ଏଲି ଆସିବ ବୋଲି । ତାଙ୍କୁ କୁଣ୍ଢାଇ କାନ୍ଦି ପକାଇଥିଲା ଏଲି, ସକେଇ ସକେଇ । ପିଠି ଥାପୁଡ଼ାଇ ମା କହିଲେ, ଯେତେବେଳେ ମନ ହେବ ସମୟ ପାଇବୁ, ଏଠିକି ଚାଲିଆସିବୁ ଝିଅ । ତୋ ନିଜ କୋଠରୀରେ ରହିବୁ ।'

ତେବେ ସେଥର ମାଆ ସାଙ୍ଗରେ ବହୁତ ଦିନ ପରେ ଦେଖା ହେବାର ସୁଖ ସାଙ୍ଗରେ ଯେଉଁ ମର୍ମାନ୍ତିକ ଦୁଃଖଟି ମିଳିଥିଲା, ଆଜୀବନ ଭୁଲିପାରିବ ନାହିଁ ଏଲି । ବାପାଙ୍କ ମୃତ୍ୟୁ ଖବର ବି

ସେ ପାଇଥିଲା ସେଇଥର । ମାଆଠାରୁ । ବାପାଙ୍କ ମୃତ୍ୟୁର ଦୀର୍ଘ ଦୁଇବର୍ଷ ପରେ । ମା ଜାଣିଶୁଣି ତାକୁ କହିନଥିଲେ ଏତେଦିନ ଧରି । ଏଲି ପ୍ରଥମ ପ୍ରତିକ୍ରିୟାରେ ପଚାରିଥିଲା, 'ଏତେ ଦିନୁ କହିନାହଁ, ମୋ ବାପା ଆଉ ନାହାନ୍ତି ବୋଲି । ମୋତେ କହିନଥିଲ କାହିଁକି ମା ?'

'ତୁ ତ ଏମିତିରେ ଦୁଃଖରେ ଥିଲୁ ଝିଅ । ପାଠ ପଢ଼ା ସରିନଥିଲା, ଚାକିରୀ ବାକିରୀ ବି ଠିକଣା ହେଇନଥିଲା, ଏଣେ ଇଶ୍ୱରନ ସାଙ୍ଗେ ତୋର ଏତେ ଦିନର ସମ୍ପର୍କଟି ଭାଙ୍ଗିଗଲା । ଏକୁଟିଆ ଏତେ ବୋଝ ନେଇ ବିଦେଶ ଭୂଇଁରେ କେମିତି ଦିନ କାଟୁଥିଲୁ ତୁ କେଜାଣି । ତୋତେ ଆଉରି ଦୁଃଖ ଦେବାକୁ ଚାହିଁଲିନି ମୁଁ । କି ଲାଭ ବା ହେଇଥାନ୍ତା ସେଇକ୍ଷଣି ଜାଣିଥିଲେ ?'

ଅନାହୂତ ଶୋକରେ ଭାଙ୍ଗି ପଡୁଥିବା ବେଳେ ମାଆଙ୍କ ହାବଭାବକୁ ଦେଖି ଏଲିକୁ ଧକ୍କା ଲାଗିଥିଲା । ହେଲେ ସେ ବୁଝିଲା ଯେ ଖବରଟା ମା ପାଖରେ ପଡ଼ି ପଡ଼ି ଏତେ ବେଶୀ ପୁରୁଣା ହେଇସାରିଥିଲା ଯେ ତାଙ୍କ ଦୁଃଖ ବି ପୁରୁଣା ହେଇସାରିଥିଲା, ଯାହା ବା ତାଙ୍କ ଲାଗି ଦୁଃଖ ଥିଲା ସେ ଘଟଣାଟିରେ ।

ଏଲିକୁ ଏକୁଟିଆ କାନ୍ଦିବାକୁ ଛାଡ଼ିଦେଇ ମା ତା'ର ରନ୍ଧାରନ୍ଧି କାମ ବିଟା ସାରିଦେଇ ଆସିଲେ । ଏଲିର ମୁଣ୍ଡ ଆଉଁସି ଦେଇ କହିଲେ, 'ବାପାଙ୍କୁ ତ ଆମେ ଅନେକ ଆଗରୁ ହରେଇ ସାରିଥିଲେ ଏଲି । ଆଉ କାହିଁକି ଏତେ ଦୁଃଖ ପୁଣି ? ଆ, ଘେରାଏ ବୁଲି ଆସିବା ମା'ଟି ମୋର, ମନ ଭଲ ଲାଗିବ ।'

ମାଆଙ୍କ ଗାଡ଼ି ଟି ବି ନୂଆ, ପୁରୁଣା ଗାଡ଼ି ବିକିଦେଇଚନ୍ତି ମାଆ ଏ ଭିତରେ । ସୁନ୍ଦର ବଣ ପାହାଡ ଅଞ୍ଚଳଟିଏ ଭିତର ଦେଇ ଯାଇ ଯାଇ ସେ କହିଲେ, 'କେଡ଼େ ଖୋଲା ଜାଗା ଏ, ଆମେ ଏଠିକି ଆସୁଥିଲୁ ବେଳେବେଳେ, ତୋର ମନେନଥିବ ବୋଧେ ?'

ଆଖିପୋଛି ବାହାରକୁ ଦୃଷ୍ଟି ଦେବାକୁ ଚେଷ୍ଟା କରୁଥିଲା ଏଲି । ମାଆଙ୍କୁ ପଚାରିଲା, 'କେମିତି ଘଟିଲା ଏକଥା ମା ? କ'ଣ ହୋଇଥିଲା ବାପାଙ୍କର ?'

ହେଲେ ମାଆଙ୍କୁ ବି ବିଶେଷ କିଛି ଜଣାନଥିଲା । ଘଟଣାର ଖବର ସିଏବି ପାଇଥିଲେ ପ୍ରାୟ ଚାରିମାସ ପରେ, ବାପା କାମ କରୁଥିବା ଲଣ୍ଡନର କଲେଜରୁ ଜଣେ ସହକର୍ମୀ ଫୋନ୍ କରିଥିଲେ । ବେଶୀ କିଛି ଜାଣିନଥିଲେ ସେମାନେ ବି, କେବଳ ଏତିକି ଯେ ରାସ୍ତା ଦୁର୍ଘଟଣାରେ ପ୍ରାଣ ହରାଇଛନ୍ତି ପ୍ରଫେସର ବିଧୂ ଭୂଷଣ ନାୟକ, ପୂର୍ବତନ କୁଳପତି ।

ଏଲି ପଚାରିଲା ତଥାପି, 'କେମିତି ଥିଲେ ସେ ମା ? କେମିତି କଟିଲା ତାଙ୍କର ଶେଷ ଜୀବନ, କିଛି ତ ଆମେ ଖବର ରଖିଲୁ ନାହିଁ ।'

ମା ତୁନୀ ରହିଲେ । ପାହାଡ଼ିଆ ଅଞ୍ଚଳଟିରେ ରାସ୍ତା ସେତେ ଓସାର ନୁହେଁ ଏଠି, ଗାଡ଼ି ଚଲେଇବାରେ ମନ ଦେଉଥିଲେ ସେ ।

'ତମ ସାଙ୍ଗେ ତାଙ୍କର ଚିଠି ଦିଆନିଆ ତ ଥିଲା ନା ମା ?'

'ହଁ । ଥିଲା ପ୍ରଥମେ । ତାପରେ ତ ବନ୍ଦ ହୋଇଗଲା । ତୋତେ ତ ପଢ଼େଇଚି ତାଙ୍କ ଚିଠି ।'

'ତିଇଟା ଚିଠି ପଢ଼େଇଥିଲ । କ୍ରିସମାସ ଗ୍ରାଟିଂ ଆଉ ଜନ୍ମଦିନର ଗ୍ରାଟିଂ ଥିଲା ମାତ୍ର ।'

'ଆଉ କ'ଣ ବା ଥିଲା ତାଙ୍କ ଚିଠି ସବୁରେ ? ତମ ଦିହିଁଙ୍କ ଜାଣିବା ଭଳି କିଛି ଥିଲେ ମୁଁ କଣ ଲୁଚାଇ ଥାନ୍ତି ମା ?'

ଟିକିଏ ରହି ପୁଣି ସେ କହିଲେ, 'ଲେଖୁଥିଲେ ସେ କେବେ କେମିତି, ତାଙ୍କର ବନ୍ଧୁ ବାନ୍ଧବଙ୍କ ସାଙ୍ଗେ କେମିତି ରହିଚନ୍ତି ଭଲରେ । ମୁଁ ଭାବେ, ଥାଆନ୍ତୁ ଭଲରେ । ଆମକୁ ସେ ସବୁ ଟିକିନିଖି ଜାଣି କ'ଣ ମିଳିବ ?'

'କିନ୍ତୁ ବାପାଙ୍କ ବିଷୟରେ ଜାଣିବାକୁ ତ ମୋ ମନରେ ଜାଣିବାକୁ ଇଚ୍ଛା ଥାଏ, ତମେ ଜାଣିଚ । ବବି ସିନା ତାର ବ୍ୟସ୍ତ ଥାଏ । ମୁଁ ତ ଭାବିଥିଲି ଚିଠିପତ୍ର ସେ ଜମାରୁ ଦେଇନାହାନ୍ତି ଆଉ ବୋଲି ।'

ମା ଚୁପ୍ ଥିଲେ । ଏଲିର ଅଷ୍ଟେ କରି ରାଗ ଚଢ଼ୁଥିଲା ମାଆ ଉପରେ । ପଚାରିଲା, 'ବାପାଙ୍କୁ କଣ ଗୋଟାଏ ସମ୍ମାନଜନକ ଚାକିରୀ ବି ମିଳିଥିଲା ସେଠି, ପୁଣି ଜମିଜମା କେସ୍ କରିଥିଲେ ନା କ'ଣ । ଏମିତି ବିଶେଷ ଖବର ସବୁ ତ ଆମେ ଜାଣିବା କଥା ନା ନାଇଁ ?'

ମା ସେମିତି ଶାନ୍ତଗଳାରେ ଏଥର କହିଲେ, 'ତୋ ବାପା ଏ ଭିତରେ ବାହା ବି ହେଇଥିଲେ ।'

'କିଏ ? ବାପା ବାହା ହେଇଥିଲେ ପୁଣି ?'

ଏଲି କୁ ଆଶ୍ଚର୍ଯ୍ୟ ଲାଗିଥିଲା ନିଶ୍ଚୟ, କିନ୍ତୁ ଖୁବ୍ ଗୋଟାଏ ଧକ୍କା ଲାଗିଥିଲା ତା ନୁହେଁ । ଏଥିରେ ସେମିତି ବିଚିତ୍ର କଥା ତ କିଛି ନାହିଁ । ସତକଥା କହିବାକୁ ଗଲେ ମାଆ ନିଜେ ବି ତ ଭାବୁଥିଲା ଡାଇଭୋର୍ସ ମିଳିଯାଉଣୁ ବାପା ନିଶ୍ଚେ ବାହା ହେଇ ପଡ଼ିବେ ତାଙ୍କର ସେଇ ପ୍ରେମିକା କେତୋଟିରୁ ଗୋଟିକୁ । ତା ନହୋଇ ବାପା ଯେତେବେଳେ ନିଜ ଦେଶକୁ ଫେରିଗଲେ ମାଆ ଆଶ୍ଚର୍ଯ୍ୟ ହୋଇଥିବ ନିଶ୍ଚେ, ଲଜ୍ଜିତ ବୋଧ କରିଥିବ କି ନାଇଁ ତା ଭିନ୍ନ କଥା । ଟିକିଏ ରହି ପଚାରିଲା, 'କିଏ ତାଙ୍କର ଏଇ ନୂଆ ସ୍ତ୍ରୀ ଟି, କିଛି ଜାଣିଚ ?'

'ସେଠିକାର ଝିଅଟିଏ କିଏ । ବିଶେଷ କିଛି ଜାଣିନି ତା ବିଷୟରେ । ପଚାରିନି ବି । ଯେତିକି ସିଏ ନିଜେ ଲେଖିଥିଲେ, ଆଉ ଅଧିକ ଜାଣିବାର ମୋର ଆଗ୍ରହ ନଥିଲା ।'

ଏଲି ଗୁମ୍ ହେଇ ବସିରହିଲା । ଏ ସବୁ ଖବର ମା ଜାଣିଚନ୍ତି, ଅଥଚ କହିନାହାନ୍ତି ତାକୁ । ତା ମନ ପଢିଲା ପରି ମା କହିଲେ, 'ତମ ଦୁହିଁଙ୍କର ବି ଆଜିଯାକେ ତମ ବାପାଙ୍କ ବିଷୟରେ ଏତେ ଟିକିନିଖି ସବୁ ଜାଣିବାର ଆଗ୍ରହ ଥିବ ବୋଲି କେବେ ମୁଁ ଭାବିନାହିଁ ।'

ଫେରିଲା ପରେ ମା ରୋଷେଇକୁ ଯାଇ ଟେବୁଲରେ ଖାଇବା ଥୋଇଲେ । ସୋଫାରେ ବସି ଏଲି କାନ୍ଦୁଥିଲା ଦୁଇହାତ ଆଞ୍ଜୁଳିରେ ମୁହଁ ମାଡ଼ି । କେତେବେଳକେ ପାଖକୁ ଆସି କାନ୍ଧରେ ହାତ ରଖି ମା କହିଲା, 'ଆ ଖାଇବା ଏଲି । ଏତେ ମନ କଷ୍ଟ କରନା । ତୋ ଭାଗର ଦୁଃଖ ତୁ ବହୁତ ଭୋଗିଲୁଣି । ଥର ଥର କରି ପିତୃବିୟୋଗ ଭୋଗିବା କି ଦରକାର ?'

କଷ୍ଟରେ ମୁହଁ ଟେକି ଏଲି କହିଲା, 'ଜମା ଭୋକ ନାଇଁ ମା ।'

ପାଖରେ ବସି ପିଠି ଆଉଁସୁ ଆଉଁସୁ ମା କହିଲେ, 'ଚାଲ୍ ଖାଇବା ଏକାଠି, ମୋ ସୁନାଟି ପରା । ଏତେ ଦିନ ପରେ ତୋ ପସନ୍ଦର ଖାଇବା ଆଜି ତିଆରି କରିଚି, ଖାଇବୁନି ମା ?'

ଏଲି ଉଠିଲା, କହିଲା, 'ଟିକିଏ ଲୁଗା ବଦଳିଦେଇ ଆସେ ।'

ଏକୁଟିଆ ଟିକିଏ ବେଳ ରହିବାକୁ ଚାହୁଁଥିଲା ଏଲି, ଭୋକ ନଥିଲା ଜମାରୁ । ହେଲେ ମା ମନ ଦୁଃଖ କରିବେ, ବୁଝିବେନି । ଯେ ମାଆ ଲାଗି ସିନା ତାଙ୍କ ଛାଡ଼ପତ୍ର ବାପାଙ୍କର ବିୟୋଗ ସାଙ୍ଗେ ସମାନ ଥିଲା । ଏଲି ଲାଗି ତ ସେ ପିତୃବିୟୋଗ ନଥିଲା କେବେବି । ଏଲି ହୁଏତ କଷ୍ଟ ପାଇଥିଲା ଏଇଆ ଭାବି ଯେ ବାପାଙ୍କ ସାଙ୍ଗେ ଗୋଟିଏ ପରିବାର ହେଇ ଆଉ ରହିବା ହେବନାହିଁ ଏ ଜୀବନରେ । କିନ୍ତୁ ବାପା ତ ଅଛନ୍ତି ତା ବାପା ହେଇ । ଏଇ ସହରରେ ନହେଲା ନାହିଁ, ଯେଉଁଠି ଥାଆନ୍ତୁ ପଛକେ, ଏଇ ସଂସାରରେ ଅଛନ୍ତି ତ । ଏଲି ତାଙ୍କ ଝିଅ ହେଇ ରହିବ ସବୁଦିନେ, ଆଉ ସିଏ ଏଲିର ବାପା ହେଇ । ଏଲି ତ ବଞ୍ଚି ରହିଥିବ ନିଶ୍ଚେ ତାଙ୍କ ଛାତି ଭିତରେ । ତାଙ୍କ ଜିଦଖୋର୍ ଅବାଧ୍ୟ ଝିଅ ଅଞ୍ଜୁ, ତାଙ୍କରି ଛୋଟିଆ ସଂସ୍କରଣ ସାବନା ଇଣ୍ଡିଆନ ଅଞ୍ଜଳି, ଗେହ୍ଲା ମୁଣ୍ଡଚଢ଼ା ଏଲି, କୃତଘ୍ନ ନିର୍ଲଜ୍ଜ ଝିଅ ଏଞ୍ଜେଲ୍ ବାପାଙ୍କର କଣ ମନେପଡୁନଥିବ ସବୁବେଳେ । ସିଏ ବି ବର୍ତ୍ତମାନ ହେଇ ଏଯାଏଁ ତ ରହିଥିଲେ ଏଲି ଲାଗି, ମରିସାରିଥାନ୍ତୁ ପଛେ କେଉଁଦିନୁ । ସେ ଭଳି କେହି ହେଲେ ଆଉ ନାହିଁ ଯାହା ଭିତରେ ତା ନିଜର ଦାମ୍ଭିଲା ସତ୍ତ୍ୱଟିଏ ଥାପିହେଇ ରହିଛି ବୋଲି ଏଲି ବିଶ୍ୱାସ କରିବ । ସେ ଲୋକଟି ଚାଲିଯାଇଛି ଏଇ ଦିଘଣ୍ଟା ତଳେ, ଏଲିକୁ ଛାଡ଼ିଦେଇ ସବୁଦିନ ଲାଗି ।

ବାପା ବାହାହେଇ ଯାଇଥିଲେ ଏ ଭିତରେ । ମା ଲାଗି ଶେଷ ଡୋରଟି କଟିଯାଇଥିବ ନିଶ୍ଚେ ସେ ଖବରରେ । ହେଲେ ଏଲି ଲାଗି ତ ନୁହେଁ । ଇଏ ଈଶ୍ୱରନ୍ ର ବାହାଘର ନୁହେଁ । ପ୍ରେମିକର ଅନ୍ୟ ଝିଅକୁ ବାହାହେବା ନୁହଁ ଯେ ଛାତି ଭିତରୁ ପୂର୍ବ ଛବିକୁ ଲିଭାଇ ଦେବାକୁ ନିଜକୁ ବାଧ୍ୟ କରାଯିବ ।

ଖାଇବା ଟେବୁଲ ରେ ବସି ମାଆ ଗାଳି ଦେଉଥିଲେ ବାପାଙ୍କ କୁଟୁମ୍ବ ସଂପର୍କୀୟ ଲୋକଙ୍କୁ ।

'ଯେଉଁ ଲୋକଙ୍କ ପାଇଁ ମୁଁ ଏତେ ଦୁଃଖ ଭୋଗିଲି, ଯାହା ଲାଗି ନିଜ ପିଲାଙ୍କୁ ସୁଦ୍ଧା ସେ ପର କରିଦେଲେ, ସେଇ ଭଉଣୀ ମାନେ କେହି ଥିଲେ ତାଙ୍କ ପାଖରେ ? ତାଙ୍କ ଦେଖା ଚାହାଁ କିଏ ହେଲେ କଲେ ଭାବିକୁ ସେ ଏକୁଟିଆ ଦୁଃଖରେ ଥିଲାବେଳେ ? ସେଇ ଭଉଣୀମାନଙ୍କ ସାରା ପରିବାର ମାନଙ୍କ ଲାଗି ମୁଁ ଗୋଟି ଗୋଟି କରି ଉପହାର କିଣି ପ୍ୟାକେଟ ତିଆରି କରୁଥିଲି । ତାଙ୍କର ସେ ଅନ୍ଧାରିଆ ଗୁମ୍ଫା ପରି ଘର ସନ୍ତସନ୍ତିଆ ଚଟାଣରେ ଲଙ୍ଗଳା ପାଦରେ ଚାଲୁଥିଲି, ଅସିଆଁ ଚାଦର ଭଳି ଶାଢ଼ୀ ପିନ୍ଧି । କ'ଣ ନା ସେମାନେ ଖୁସି ହେଲେ ମୋ ସ୍ୱାମୀ ଖୁସି ହେବେ । ସେମାନେ କେହି ଖବର ଟିକିଏ ଦେଇପାରିଲେନି ତାଙ୍କ ମୃତ୍ୟୁ ବିଷୟରେ, ତାଙ୍କରି ସେଇ ଭାଇର ପିଲାମାନଙ୍କୁ ?'

ମାଆଙ୍କ ରାଗ ଥଣ୍ଡା ହେଉନଥାଏ । କହିଲେ, 'ମୁଁ ଜାଣିଲା ବେଳକୁ ଚାରିମାସ ପୁରୁଣା ହେଇସାରିଥାଏ ଘଟଣା । ମୋର ତ ମନେ ହେଉଚି, ଆମକୁ ଖବର ନଦେବା ପଛରେ କିଛି ସେମିତି କାରଣ ଥାଇପାରେ ଝିଅ । ସମ୍ପତ୍ତି ବିଷୟରେ ହୋଇଥାଇପାରେ ।'

ଟିକିଏ ରହି ପୁଣି ସେ କହିଲେ, 'କିମ୍ବା ମନାକରିଥିବେ ତୋ ବାପା ନିଜେ, ଆମ ସାଙ୍ଗେ କେହି ସମ୍ପର୍କ ନ ରଖନ୍ତୁ ବୋଲି ସେ କହିଥିବେ ତାଙ୍କ ଲୋକଙ୍କୁ । ଖାଲି ମୋତେ ନୁହେଁ, ତମ ତିନିହିଁକୁବି ତ ସେ ପର କରିଦେଇଥିଲେ ।'

॥୨୧॥

ମାଆଙ୍କ ନୂଆ ଘରକୁ ଏଲି ଯିବା ମାସେ ଉପରେ ହେଇଗଲାଣି ସେତେବେଳକୁ, ମା ତାକୁ ଡାକନ୍ତି ଫୋନ୍‌ରେ, ଓ୍ୱିକେଣ୍ଡ ମାନ ତାଙ୍କ ପାଖେ ବିତାଇବା ଲାଗି । ଏଲି ର ସମୟ ହେଉନି । ମନ ହେଉନି ଏକପ୍ରକାର ।

ସେଦିନ ଫୋନ୍‌ରେ ମାଆର ମେସେଜ ଥିଲା । ଅନ୍ୟ ଅନେକ ଦିନ ଭଳି । ମାଆକୁ ଫୋନ୍ କରି ଖୁସି ଗଳାରେ କଥାବାର୍ତ୍ତା କରିବାକୁ ଚେଷ୍ଟା କରିଥିଲା ଏଲି, ହେଲେ ମାଆର ସ୍ୱର ଉଦାସ ଥିଲା । କେବଳ କହିଲା ଯେ, 'ଆଜି ଚାଲିଆ ଏଠିକି, ଶନିବାର ଅଛି, ରହିଯିବୁ ରାତିକ । ଏକାଠି ଖାଇବା, ଗପସପ କରିନେ ଅନେକ ଦିନ ହେଲା ।'

'ଆଜି ବହୁତ ଥକି ଯାଇଚି ମା, ଘରକୁ କାମ ଗୁଡ଼ାଏ ବି ଆଣିଚି ପୁରା କରିବାକୁ ଅଛି । ଆଉ ଦିନେ ଆସିଲେ ଚଳିବନି ? ଆର ସପ୍ତାହ ହେଲେ ?'

'ନାଇଁ ମୋ ଏଞ୍ଜେଲ୍ । ସୁନାଟି ପରା । ଆଜି ଚାଲିଆ ପ୍ଲିଜ୍ ।'

ଖିଆପିଆ ସରିଲା ପରେ ଦିହେଁ ବସିଥିଲେ । ନୂଆ ଷ୍ଟାଇଲ୍‌ର ନିଆପୋଇଁବା ଲାଗି ଜାଗାଟିଏ ଅଛି ଏ ଶୋଇଲା ଘରେ । ହାଲୁକା ମ୍ୟୁଜିକ୍ ବାଜୁଚି । ପିଲାଦିନର ଚିହ୍ନା ଗୀତ ଏ ନୁହେଁ । ଶାନ୍ତ, ସୁନ୍ଦର ଭିନ୍ନ କିଛି ।

'କି ମ୍ୟୁଜିକ୍ ଇଏ ମା ? କି ସୁନ୍ଦର ଲାଗୁଚି ।'

'ସ୍ପେନ୍‌ର ଆଧ୍ୟାତ୍ମିକ ସଙ୍ଗୀତ ।'

ଏଲି ର ମନକୁ ସେତେବେଳେ ପ୍ରଶ୍ନ ଆସିନଥିଲା, ମା ପାଖକୁ କେଉଁଠୁ ଆସିଲା ଏ ସଙ୍ଗୀତ ? କ'ଣ ଗୋଟାଏ ତାର ମନେ ପଡୁଥିଲା, ଠିକ୍ ଠାବ କରିପାରୁନଥିଲା କୋଉଠି ଯା ପାଖାପାଖି କିଛି ଶୁଣିଚି ସେ । ପରେ ମନେ ପଡ଼ିଲା, ପିକ୍‌ନିକ୍‌ରେ, କ୍ୟାମ୍ପରେ ଗଲାବେଳେ ବାପାଙ୍କ ଜଣେ ସାଙ୍ଗ ବଜାନ୍ତି ଏଇ ସବୁ ରେକର୍ଡ ।

ଗୁଣୁଗୁଣେଇ ଗୀତ ଗାଉଥିଲା ମା ଅନେକ ଦିନ ପରେ । କାନ୍ଥ ଥାକରେ ଅଧକରା ସିଲେଇ ରଖାଥିଲା । ମା ଛୁଞ୍ଚିକାମ କରୁଚି କାନ୍ଥରେ ଲଗାଯିବା ଲାଗି, ସୁନ୍ଦର ଡାଳପତ୍ର ଚଢ଼େଇ ତିଆରି କରୁଚି ସେ, ଏଲିର ପିଲାଦିନେ ଯାହା କରିବାକୁ ଭଲପାଉଥିଲା । ଏଲି ବୁଝୁଥିଲା, ଏତେଦିନକେ ମା ଫେରିଯିବାକୁ ବେଳପାଇଚି ତା ପିଲାଦିନର ଦେଖିଥିବା ଜାଣିଥିବା ସଂସାରକୁ । ନିଶ୍ୱାସଟିଏ ଛାଡ଼ି ଏଲି ନିଜକୁ କହିଲା, ଡେରିରେ ହେଉ ପଛେ, ମା ବିଚାରୀ ଫେରିଯାଉଚି ତା ନିଜ ଚିହ୍ନା ଦୁନିଆଁକୁ । ନୂଆ ପୋଷାକ, ଭିନ୍ନ ସଂସ୍କାରରେ ଖାପି ହେବାଲାଗି ଜୀବନଟା ସୁଦ୍ଧା ତ କାଟିଦେଲା ବିଚାରୀ ।

ଏଥର ଅନେକ ଦିନ ପରେ ଆସିଥିଲା ଏଲି । ସୁଟକେଶ ନେଇ ସିଧା ଉପରକୁ ଚାଲି ଯାଉ ଯାଉ କହିଲା, 'ମୁଁ ଟିକେ ଫ୍ରେଶ୍ ହେଇପଡ଼େ ମୋ ରୁମ୍‌ରେ ।'

ମା ତଳୁ ପାଟିକରି କହିଲେ, 'ଆଗ ଚା ପିଇବୁ, ନା ସୁପ୍ ପିଇବା ଏକାଠି ?'

ଫେରିପଡ଼ି ଏଲି କହିଲା, 'ଚା ପିଇବା ମା ପ୍ଲିଜ୍ । ଇଣ୍ଡିଆନ୍ ମିଠା କଡ଼ା ଚା, ଟିକିଏ ତିଆରି କରିଦେବ ମୋ ଲାଗି ?'

ମା କୁ ପୁଣି ପଛରୁ ଡାକି କହିଲା ଏଲି, 'ଆଉ ଶୁଣ ମା', ଏଥର ମୁଁ ବି ସେଟ୍ ଜାମା ଆଣିଚି ଏଠି ଛାଡ଼ିଦେଇଯିବି । ଦାନ୍ତଘଷା ବ୍ରଶ୍ ଆଉ ସାବୁନ୍ ପାନିଆ ବି । ଉ୍ଵିକେଣ୍ଡରେ ଏଣିକି ଆସିଲେ ଆଉ ସାଙ୍ଗରେ ବୋହି ଆଣିବାକୁ ପଡ଼ିବନି ।'

ମାଆଙ୍କ ଉତ୍ତରକୁ ଅପେକ୍ଷା ନକରି ଏଲି ଚାଲିଗଲା ନିଜ ରୁମ୍‌କୁ । କେଉଁକ୍ଷଣ ଲାଗି ଫେରିଆସିଲା ସତେ କି ପିଲାଦିନ । ବବି ଫେରିବ ଏଇ, ଖେଳିବାକୁ ଯାଇଚି । ମା ତଳେ ରୋଷେଇ ଘରେ ବାପାଙ୍କୁ ଅପେକ୍ଷା କରିଚି । ଏଲି ବାପାଙ୍କ ଆସିବାକୁ ଅପେକ୍ଷା ବି କରୁଚି, ଆଶଙ୍କା ବି । ଏଇ ଭଳି, ଶାନ୍ତ ସନ୍ଧ୍ୟା । ବାପା ଯୋଉଠି ଥାଆନ୍ତୁ, ଫେରିବେ ପୁଣି ।

ବିଛଣାରେ ପୁରୁଣା ଚାଦର ପଡିଚି, ତକିଆରେ ମୁହଁମାଡ଼ି ବାସ୍ନା ନେଉନେଉ କେତେବେଳେ ନିଦ ଲାଗିଯାଇଥିଲା ଏଲିର । ପିଠିରେ ମାଆର ହାତ ବାରିଲା, 'ଶୋଇପଡ଼ିଲୁ କି ମା ଏଞ୍ଜେଲ୍ ?'

ଉଠି ବସିଲା ଏଲି । କେଡ଼େ ସ୍ନେହୀ, କୋମଳ ଦିଶୁଚି ମାଆର ମୁହଁ । ପରିଶ୍ରାନ୍ତ, ଉଦ୍‌ବିଗ୍ନ ନୁହେଁ ଆଉ । ସ୍ମୃତିରେ କେବେ ଥିବ ବୋଧେ ଏଇ ଛବିଟି, କ'ଣ ସବୁ ଅଜଣା କଥା ମନେପଡିଯାଉଚି, ଆପଣାର ଲାଗୁଚି ଏବର ଚାରିଆଡ଼ ।

'ତୁ ତ ଲୁଗା ବି ବଦଳିନୁ ଝିଅ । ଧୂଆଧୋଇ ହେଇପଡ଼ିଥିଲେ ଭଲ ହେଇଥାନ୍ତା ।'

ଝରକା ବାହାରେ ସଞ୍ଜ ନଇଁଲାଣି । ଏଲି କହିଲା, ମାଆର ଗଳାରେ ଦୁଇ ହାତ ଛନ୍ଦିଦେଇ, 'ସରି ମା । ରାଗିଲୁ କି ?'

ପିଲାଦିନ ଫେରିଆସିଚି ସତେକି । ମା କହିଲେ, 'ହଉ ରାତିରେ ଗାଧୋଇ ପଡ଼ି ଶୋଇବୁ, ଏବେ ଚାଲ୍ ତଳକୁ । ଗରମ ପାଣିରେ ଟବ୍ ଭରିଦେଇ କଲୋନ ଦିଟୋପ ପକେଇଦେବୁ ଯେ ଥକା ଛାଡ଼ିଯିବ । ଭଲ ନିଦ ହେବ ।'

ମା ଏଲି ମୁହଁକୁ ଫେରି ଚାହିଁଲେ, ହସିଲେ ଅଳ୍ପ ଟିକିଏନାକୁ । ଏଲି ଭାବିଲା, କେଡ଼େ ସୁନ୍ଦର ମୋ ମା, ଏବେ ବି । କାହିଁକି କେବେ ଲକ୍ଷ୍ୟ କରିନାହିଁ ତାକୁ, ତା ସ୍ୱାସ୍ଥ୍ୟ କି ସୁଖ ପାଇଁ କେତେ ବା ଜାଗା ଥାଏ ମୋ ମନରେ ।

ମାଆକୁ ରୋଷେଇ ଘରେ ସାହାଯ୍ୟ କରୁକରୁ ଏଲି ଦେଖିଲା, ମା ନୂଆ ଧରଣର ପୋଷାକ କିଣିଚି, ମାନୁଚି ତାକୁ । ପଚାରିଲା, 'ଇସ୍, କେତେ ମାନୁଚି ତମକୁ ଏ ଡ୍ରେସ୍‌ଟା । ଆଉ କି ପରଫ୍ୟୁମ୍ ଲଗେଇଚ ମା, ଖୁବ୍ ହାଲକା ଆଉ କେଡ଼େ ମିଠା ବାସ୍ନା ।'

ଏଲିର ପିଲାଦିନର ପସନ୍ଦ ମୁତାବକ ଖାଇବା ରାନ୍ଧିଥିଲେ ମା । ଖାଉ ଖାଉ ଏଲି କହିଲା, 'ମୋତେ ଟିକିଏ ଡାକିଦେଇ ନଥାନ୍ତ ? ଏକୁଟିଆ ସବୁ ରୋଷେଇ କଲ ।'

'ଥାଉ ରେ ଝିଅ, ଆଜିକାଲି ଆଉ କେତେଥର ତୋ ପାଇଁ ରାନ୍ଧୁଚି ଯେ ?'

ଖାଇସାରି ଉଷୁମ୍ ନିଆଁଜାଗା ପାଖେ ବସିଥାଏ, ମା ହାତକୁ ବଢ଼େଇଦେଲେ ରାଇସ ପୁଡିଂ । ପାଟିକୁ ନେଇ ଆଉ ତଣ୍ଟି ତଳକୁ ଢୋକି ପାରୁନଥିଲା ଏଲି । ବାପା ଭାରି ଭଲ ପାଆନ୍ତି, ଥଳେଇଚ ଆଉ କିସ୍‌ମସ୍ ଦିଆ ଏମିତି ଖିରୀ । ତହିଁରେ ଚିମୁଟାଏ ଲୁଣ ପକେଇବାକୁ ବି ବାପା କହନ୍ତି ।

ବାପାଙ୍କ ଶେଷ ଦିନ ମାନ କେମିତି ଥିଲା କେଜାଣି । ଭାବିବାକୁ ଏଲିର ମନ ବିଶେଷ ଯାଏ ନାହିଁ । ଟାଣିଆଣେ ସିଆଡୁ ମନକୁ । ନିଜ ଦେଶ, ନିଜ ପରିବେଶକୁ ଫେରିଯାଇଥିଲେ ବାପା, ବହୁଦିନୁ ତାଙ୍କର ସ୍ୱପ୍ନ ଥିଲା । ଏକୁଟିଆ ହେଉ ପଛେ, ଗଲେ ତ ନିଜ ଦେଶକୁ । ସମ୍ମାନ, ପ୍ରତିଷ୍ଠା ସବୁ ତାଙ୍କୁ ମିଳିଲା ବି । ନିଜ ପସନ୍ଦର ଝିଅ ବି ବାହାହେଇଥିଲେ । ହେଲେ ତାଙ୍କ ଜୀବନ ଏତେ ଶୀଘ୍ର ଶେଷ ହେଇଯିବାର ନଥିଲା, କେତେ ବା ବୟସ ହେଇଥିଲା । ତଥାପି ନିଶ୍ଚେ ସୁଖରେ କଟିଥିବ ତାଙ୍କ ଶେଷଦିନ ମାନ । କାହିଁକି ଭାବି ମନ ଖରାପ କରିବ ସିଏ ।

ମା ପଚାରିଲେ, 'ଆଉ ଟିକିଏ ଖିରୀ ଦିଏଁ ?'

ଏଲି ହାତରେ ଖିରୀ ଗିନାଟି ସେମିତି ପୁରିଥିଲା । ମା କହିଲେ, 'କଣ ଏମିତି ସିରିୟସ ହେଇଗଲୁ ଝିଅ ? ଖିରୀ ଖାଇଲାବେଳେ ବାପା ମନେ ପଡ଼ିଥିବେ, ନୁହେଁ ?'

ତାଙ୍କ ମୁହଁକୁ ଚାହିଁଥିବା ଏଲିର ଆଖିରୁ ଲୁହ ଧାର ପୋଛିଦେଲେ ମାଆ । ଏଲି ପଚାରି ପାରିଲା ନାହିଁ, ତମର ମନେପଡ଼ନ୍ତି କି ମା ? ତା ପ୍ରଶ୍ନ ଶୁଣିପାରିଥିବା ପରି ମାଆ କହିଲେ, 'ମୋର ବି ମନେପଡ଼ନ୍ତି ରେ ଝିଅ । ଏତେଦିନ ଜୀବନ ସାଙ୍ଗରେ କାଟିଥିଲି ପରା । ସେଇଲାଗି ତ ରାଇସ ପୁଡିଂ ତିଆରି କଲି ଆଜି । ଅନେକ ବର୍ଷ ପରେ । ନହେଲେ ଏକୁଟିଆ ମୋ ଲାଗି ତ ଯାଇତାଇ କ'ଣ ଟିକିଏ ରାନ୍ଧିଦେଲେ ଯାଏ ।'

ମା ପୁଣି କହିଲେ, 'ପୁରୁଣା ଦିନ କଥା ମୁଁ ଏବର ଦିନ ଭିତରକୁ ଆସିବାକୁ ଦିଏନାହିଁ । କଷ୍ଟ ହୁଏ । ମନେ ପକାଇ ଲାଭ କ'ଣ ?'

ଏଲି ଚୁପ୍‌ଚାପ୍ ଥିଲା । ମା ପଚାରିଲେ, 'ନିଦ ଲାଗିଲାଣି କି ଝିଅ ?'

'ନାହିଁ ତ । ଜମା ନିଦ ନାହିଁ ମୋତେ । ଭାରି ଭଲ ଲାଗୁଚି ତମ ଘରଟି ।'

ଏଲିର ମୁହଁରୁ ବାହାରିଥିଲା ତମ ଘର ବୋଲି । ମା ବୋଧେ ଖିଆଲ କରିନାହାନ୍ତି, ବା ତାଙ୍କ କାନରେ ପଡ଼ିଲା ନାହିଁ କଥାଟା । ସେ ଉଠିଯାଇ ବଡ଼ ଲାଇଟ୍ ଦି'ଟା ଲିଭାଇଦେଲେ । ନିହାତି ଧିମା ଲାଇଟ୍ ଟା ସାଙ୍ଗେ ଫାୟର ପ୍ଲେସ୍ ରେ ନିଆଁ ଆଉ ଟିକିଏ ଉଜ୍ଜ୍ୱଳ, ଆଉରି ଟିକିଏ ଉଷୁମ ଲାଗିଲା । ଯଦିଓ ଏଠି ଆଉ ପିଲାଦିନର ଗୋଟିଏ ହେଲେ ଚିହ୍ନା ଜିନିଷ ନାହିଁ ଆଉ । ଏଲି ଜାଣେ, ଉପର ଘରର ସେଇ ଅତିଥି କୋଠରୀଟିକୁ ଛାଡ଼ିଦେଲେ ଘରାସାରା କୋଉଠି ଆଉ କିଛି ବୋଲି ନାହିଁ ସେମାନଙ୍କ ପୁରୁଣା ଘରକଥା ମନେପକାଇ ଦେବାଭଳି । ଗତଥର ବି ଯାହା ଦେଖିଥିଲା ଗୋଟେ ଅଧେ, ପଥରର ନର୍ତ୍ତକୀଟିଏ କି ରୂପା ତାରକସୀ କୋଣାର୍କ ଚକଟି, ଆଜି କାହିଁ ଦିଶୁନି । ଘରର ବାସ୍ନା ଟି ବି ଭିନ୍ନ, କ'ଣ ଗୋଟିଏ ନୂଆ ରୁମ୍ ଫ୍ରେଶ୍ନର ବ୍ୟବହାର ହେଉଚି ।

ମାଆ ସାମ୍ନା ସୋଫାରେ ବସି ତା ମୁହଁକୁ ଅନେଇଚି, ସାମ୍ନାକୁ ଝୁଙ୍କି ପଡ଼ିଚି ଟକିଏ । କ'ଣ କହିବ କହିବ ହେଉଚି ନା କ'ଣ ? ନିଜ ଖିଆଲ୍‌ରେ ବହିଯାଇ ମାଆଙ୍କୁ ଧ୍ୟାନ ଦେଉନାହିଁ ଏଲି । ଦୋଷୀ ଲାଗିଲା ପୁଣିଥରେ, ନିଜ ସ୍ୱାର୍ଥକେନ୍ଦ୍ରିକ ଭାବ ଲାଗି ।

ଏଲିର ସାମ୍ନା ଟେବୁଲଟି ଉପରୁ ଖିରୀ ଗିନା ବାସନ ଉଠେଇ ନେଇଚନ୍ତି ମା କେତେବେଳେ । ଟେବୁଲ ଉପରେ ରଖାହେଇଚି ଛୋଟ ଆକାରର କାଠ ହାତ ବାକ୍ସଟିଏ । ଏଇଟି ବୋଧେ ପିଲାଦିନେ

ଥିଲା ଘରେ କୋଉଠି, ଚିହ୍ନା ଚିହ୍ନା ଲାଗୁଚି । ମା ଆଣି ଥୋଇଚନ୍ତି ଏଲି ଲାଗି ଉପହାରଟିଏ କିଛି ବୋଧେ ଅଛି ନା କ'ଣ ତହିଁରେ ।

ସେଇ ବାକ୍ସଟିକି ଦେଖାଇ ମା କହିଲେ, 'ମୁଁ ଭାବୁଚି ଏଇଟି ତୋ ପାଖେ ଥାଉ ଏଣିକି । ଛୋଟିଆ ବାକ୍ସଟିଏ ତ !'

ମାଆଙ୍କ ମୁହଁ ଭିନ୍ନ ଦିଶୁଚି, ପୁରୁଣା ବିଷର୍ଣ୍ଣ ଭାବ ଟିକିଏ ଫେରିଆସିଚି । ତଥାପି ଆଗଭଳି ଅସହାୟତା ଆଉ ତାଙ୍କ ମୁହଁରେ ନାହିଁ, ସମର୍ପଣ ଭଳି କିଛି ଗୋଟିଏ ଦିଶୁଚି ତାଙ୍କଠି ଏବେ । ମନେପଡ଼ିଲା ଏଲିର ।

'ଆରେ, ହଁ ତ ! ଏଇଟି ବାପା ଆଣିଥିଲେ କାଶ୍ମୀରରୁ, ନାଇଁ ? ତମେ ଦିହେଁ ଯାଇଥିଲ, ଆମକୁ ନନେଇ, ଜେଜେଙ୍କ ପାଖରେ ମୋତେ ଆଉ ବବିକୁ ଛାଡ଼ିଦେଇ ବୁଲିବାକୁ ଚାଲିଯାଇଥିଲ ସେଥର, ନାଇଁ ?'

ଶୋଇଲା ଘର କାଠ ଆଲମାରୀ ଥାକରେ ରହିଥାଏ ବାକ୍ସଟି । କ'ଣ ଗୁଡ଼ିଏ ରହୁଥିଲା ତା ଭିତରେ, ମାଆର ଛୋଟିଆ ମୋଟିଆ ଜିନିଷ ସବୁ ।

ତା କଥାମାନ ମାଆଙ୍କ କାନ ଭିତରକୁ ଭେଦିଲା ନାଇଁ ବୋଧେ, ସେମିତି ବାକ୍ସଟିରେ ଦୃଷ୍ଟି ରଖି ସେ କହିଲେ, 'ଏଥିରେ ତୋ ବାପାଙ୍କର କିଛି ଚିଠିପତ୍ର ଅଛି ଏଲି, ପୁରୁଣା ଫଟୋ କିଛି ବି ଅଛି । ମୁଁ ଭାବୁଚି ଏଣିକି ଏସବୁ ତୋ ପାଖେ ଥାଉ ।'

କଥାଟା କୁ ବୁଝି 'କାଇଁକି' ବୋଲି ପଚାରିବା ପୂର୍ବରୁ ମା ସିଧା ଏଲି ମୁହଁକୁ ଅନେଇ କହିଲେ, 'ଟମ୍ କୁ ତୋର ମନେ ଥିବ । ଆମେ ଦିହେଁ ବାହାହେବାକୁ ଯାଉଚୁ, ଟମ୍ ଆଉ ମୁଁ । ଆସନ୍ତା ରବିବାର ।'

କଥାଟା ପୂରା ବୁଝି ପାରିବା ପୂର୍ବରୁ ଏଲି ନିଜ ସ୍ୱର ଶୁଣିଲା, 'ଓ !'

ମାଙ୍କ ମୁହଁରେ ଟିକିଏ ବିନୀତ ହସ, ପଚାରିଲା ଭାବ ତଥାପି ଅନେଇଚନ୍ତି ଏଲି ମୁହଁକୁ, ସମର୍ଥନ ଭଳି କିଛି ଗୋଟାଏ ଦରକାର ତାଙ୍କର ବୋଧେ । ଏଲି ଅଣ୍ଡାଳି ହେଲା ଧୂଆଁଳିଆ ମୁଣ୍ଡ ଭିତରଯାକ, ବିପଦ ଯାହା ହାବୁଡ଼ିଲା ହାତ ପାହାନ୍ତାରେ, କହିପକେଇଲା, 'ଓ ! ସତରେ ମା, ରିଏଲି ମା । ହାଉ ନାଇସ୍ ! କେତେ ଖୁସିର କଥା । କଂଗ୍ରାଚ୍ୟୁଲେସନ୍‌ସ ।'

ମା ନଇଁପଡ଼ି ଏଲିର କୋଳରେ ନିଷ୍କଳ ରହିଥିବା ହାତ ଦୁଇଟିକୁ ଧରିନେଲେ, କହିଲେ, 'ଥ୍ୟାଙ୍କ୍ ୟୁ, ମୋ ସୁନା ଝିଅଟି । କେଡ଼େ ଦରଦ ତୋ ଛାତିରେ । ତତେ ଏଯାଏଁ କିଛି କହିପାରି ନଥିଲି ମା, ସୁଯୋଗ ପାଇନଥିଲି । କିଛି ମନେ କରୁନୁ ତ ?'

ସେଇମିତି ମୂର୍ତ୍ତି ପରି ସୋଫା ଦେହରେ ବସିରହି ଏଲି କହିଲା ଆଉରି କେତେପଦ ଘୋଷରା କଥା, 'କେଡ଼େ ଖୁସୀର କଥା ମମି ! ଗ୍ରେଟ୍ ରିଅଲି ! ମୋତେ ତମ ଲାଗି କେତେ ଖୁସୀ ଲାଗୁଛି । ..ମାନେ ଆମ ଅଙ୍କଲ୍ ଟମ୍ ତ ?'

ମା ଏଥର ଜୋର୍‌ରେ ହସିପକେଇଲେ । 'ହଁ, ହଁ, ତମ ପିଲାଦିନର ଅଙ୍କଲ ଟମ୍, ମନେ ଅଛି ନା ତାଙ୍କ କଥା ? ତୋତେ ଆଉ ବବିକୁ ଖୁବ୍ ଭଲ ପାଉଥିଲେ ସେ, ନୁହେଁ ?'

ମନେଅଛି ଏଲିର, ବାପାଙ୍କ ସାଙ୍ଗ ଟମ୍‌ଙ୍କୁ । ତାଙ୍କ ପିଲାମାନେ ଏଲି ବବିଙ୍କ ସାଙ୍ଗେ ପଢୁଥିଲେ, ହେଲେ ଟମ୍‌ଙ୍କର ବି ବିବାହ ବିଚ୍ଛେଦ ହେଇଯାଇଥିଲା । ତା'ପରେ ଦି'ପୁଅ ତାଙ୍କର ସ୍ତ୍ରୀଙ୍କ ସାଙ୍ଗେ ଯାଇ ରହୁଥାନ୍ତି । ପ୍ରାୟ ଏଲି ଘରକୁ ଆସନ୍ତି ଟମ୍ ତାଙ୍କର ସେ ଏକାକୀ ଦିନ ମାନଙ୍କରେ । ମନେଅଛି, ବଣ ଭିତରେ ତାଙ୍କର ଗୋଟିଏ ଛୋଟିଆ ସୁନ୍ଦର କାଠର କଟେଜ୍ ଘର ଥିଲା । କେତେଥର ସେଇଠି କ୍ୟାମ୍ପ କରିଚନ୍ତି ସେମାନେ ସମସ୍ତେ, ରାତିରେ ନିଆଁ ଜାଳି, ଖୋଲା ଆକାଶ ତଳେ ରୋଷେଇ କରି । ଏଲି ବବି କହନ୍ତି, 'ଟମ୍ କକାଙ୍କ କୁଟୀର ଭଏ, ଆମ ଗୋରା ଅଙ୍କଲ ଟମ୍‌ଙ୍କର ସ୍ପେଶାଲ ପିକନିକ୍ କ୍ୟାବିନ୍, କ୍ୟାମ୍ପ କରିବା ଲାଗି ଇଆଠୁ ବଳି ଜାଗା ଆଉ ନାହିଁ ।'

ଏଲି ବି ଏଥର ହସିଲା ମାଆ ସାଙ୍ଗେ, ସହଜ ହେଇ ଆସୁଥିବା ଗଳାରେ କହିଲା, 'ବାଃ । କୋଉଠି ରହିବ ମମି ଏଥର, ଅଙ୍କଲ୍ ଟମ୍‌ଙ୍କ କ୍ୟାବିନ୍‌ରେ ?'

ମା ଏଥର ଖୋଲା ହସ ହସିଲେ । ତାଙ୍କ ଅପ୍ରତିଭ ଭାବ, ମନର ଦ୍ୱନ୍ଦ୍ୱ କଟିଯାଇଥିଲା । ତାପରେ ବସିଲା ଜାଗାରୁ ଉଠି ଆସିଲେ ସେ, ସୋଫା ଆଗରେ ଲୁହଁ ଦେହରେ ଆଣ୍ଠେଇ ପଡ଼ି ଏଲିକୁ କୁଣ୍ଢେଇ ଧରିଲେ । କାନ୍ଦିଲେ ଝିଅ କାନ୍ଧରେ ମୁହଁ ରଖି । ଏଲି କାନ୍ଦ ମିଶା ହସ ମଝିରୁ କହିଲା, 'ସତରେ ମା, ଅଙ୍କଲ୍ ଟମ୍ ? ମୋର ବିଶ୍ୱାସ ହେଉନି । କେତେ ଭାଗ୍ୟ ତମର, ହାଉ ଲକି ୟୁ ଆର୍ । କେତେ ଭଲ ଲୋକଟିଏ ସେ । ଆଇ ଆମ୍ ସୋ ହାପି ଫର ୟୁ ମମି । ତମଲାଗି ମୋତେ କେଡ଼େ ଖୁସି ଲାଗୁଚି ।'

ଏଲି ଆଖିରୁ ଲୁହ ଝରି ମାଆଙ୍କ ସୁନ୍ଦର ଲେସ୍ ଲଗା ସାର୍ଟ ପିଠିରେ ପଡୁଥିଲା ।

ସେଦିନ କେତେ ରାତିଯାଏଁ ପୁଣି ଏକାଠି ବସି କେତେଆଡୁ କେତେ କଥା ଗପିଥିଲେ ମାଆ ଆଉ ଏଲି । ଏଲି ବବିଙ୍କ ପିଲାଦିନର ଦୁଷ୍ଟାମୀ କଥା ସବୁ, ଥରେ ବବି ତା'ର କୋଉ ସାଙ୍ଗର ବାର୍ଥ ଡେ କୁ ଯାଇ କେମିତି ରାତିଯାଏଁ ଫେରିନଥିଲା, ଖୋଜି ଖୋଜି ନୟାନ୍ତ ହେଇଥିଲେ ସେମାନେ । ଏଲିର ସେଇ ଫ୍ରିଲ୍ ଦିଆ ହଳଦିଆ ଫ୍ରକ୍ କଥା, କେତେ ଜିଦି କରି ଯାହା ସେ କିଣାଇଥିଲା । ଆଉ ବଗିଚାର ନାଲି ଫୁଲ ଗଛଟାର କଥା, ଯାହାର କେବଳ ଗୋଟିଏ ଡାଳରେ ଗୋଲାପି ଫୁଲ ଫୁଟେ । ପୁଣି ମାଆର ଗୋଡ଼ ଫ୍ରାକ୍‌ଚର ହେଲାର କଥା, ଓଃ କି ହଇରାଣ ସେ ଦିନାକେତେ । ଆଉ ରାସ୍ତାରେ ଯେଉଁ ଶହେବର୍ଷ ପୁରୁଣା କେକ୍ ପେଷ୍ଟ୍ରୀ ଦୋକାନଟା ଥିଲା, କେତେ ପ୍ରକାର ମିଠା ମିଳୁଥିଲା ମନେଅଛି ନା ? ତାଙ୍କ ଘରେ କେହି ଆଉ ରହିଲେନି ତାକୁ ଚଳେଇବାକୁ, ବନ୍ଦ ହେଇଗଲା ଦୋକାନଟା ଆହା ।

ଅଧରାତି ପରେ ଉପର ମହଲାର ଶୋଇଲା କୋଠରୀକି ଫେରିଗଲା ଏଲି, ହାତରେ କାଶ୍ମିରୀ କାଠ ବାକ୍ସଟିକି ନେଇ । କବାଟ ବନ୍ଦ କରି ବାକ୍ସଟିକି ଖୋଲିଲା । ପୁରୁଣା ହଳଦିଆ ପଡ଼ିଥିବା ଚିଠିମାନ ଥାକ କରି ବନ୍ଧା ହେଇଚି, କେତୋଟି ବିଡ଼ା ସେତେ ପୁରୁଣା ଦିଶୁନାହିଁ । ଛୋଟିଆ ଫଟୋ ଆଲବମ୍ କେଇଟି । ବାକ୍ସଟିକୁ ଏଲି ପୁଣି ବନ୍ଦ କରିଦେଲା । ଏବେ ନୁହେଁ, ଥାଉ । ସେଇ କୋଠରୀଟି, ପିଲାଦିନର ପୁରୁଣା ବ୍ୟବହାର ଜିନିଷରେ ଖୁନ୍ଦି ହେଇଥିଲା ଯାହା, ଆଉ ସେତେ ବେଶୀ ଆପଣାର ଲାଗୁନାହିଁ । ଥାକରେ ପୁରୁଣା କଣ୍ଢେଇଟି, ଆଖି ମିଟି ମିଟି କରି ପେଟରେ

ରେକର୍ଡ ଥିବା କେଇପଦ କଥା କହୁଥିଲା ଯିଏ, ଏବେ ତାର ଗୋଟିଏ ଆଖି ଭାଙ୍ଗି ବୁଜିହୋଇଯାଇଚି । ବବିର ଟେନିସ ରାକେଟ୍, ଦି ଚାରିଟା ତାର ଛିଡ଼ିଯାଇ ଝୁଲୁଚି । ଏଲି ମନ ଭିତରେ ସାଉଁଟି ସାଇତି ନେଉଥିଲା ସବୁଯାକ ।

॥୨୨॥

ପଶ୍ଚିମ ଓଡ଼ିଶାର ସଫଳତମ କୁଷ୍ଠ-ପୁନର୍ବାସ ଗ୍ରାମରୁ ଗୋଟିଏ । ସାରା ଦିନଟିର ରହଣୀ ପରେ ଗାଁ ଟିରୁ ବାହାରୁଥାନ୍ତି ସେମାନେ, ଗାଡ଼ିଟିରେ ଯେତେଲୋକ ପଶିପାରିବେ ପଶି କୌଣସିମତେ କବାଟ ଦେଇଦେଲାପରେ ବାକି ସ୍ୱେଚ୍ଛାସେବୀମାନେ ଗାଁ ଲୋକଙ୍କ ସାଙ୍ଗେ ମିଶି ହାତ ହଲାଇ ବିଦାୟ ଦେଉଥାନ୍ତି । ସମାଜସେବୀ ଦଳଟି ଭିତରେ ସୁମନ୍ତର ଦଳ ଆଉ ବିଶୁ ଡାକ୍ତରଙ୍କ ଦଳର ଲୋକଙ୍କ ଭିତରେ ଫାଟ ଅଛି ବୋଲି ଏଲି ବାରିପାରୁଥାଏ । ସଭାରେ ହୋଇଥିବା ବକ୍ତୃତା ଛଳରେ ହୋଇଥିବା ତାଙ୍କ ବାକ୍‌ବିତଣ୍ଡାରେ ପୂର୍ଣ୍ଣଚ୍ଛେଦ ପକାଇବା ଲାଗି ଗାଡ଼ି ମୁଖ୍ୟ ରାସ୍ତା ଧରିବା ପରେ ଏଲି କହିଲା, 'କୁଷ୍ଠ ରୋଗ ମୂଳପୋଛ ହେବାକୁ ଆଉରି ଯେତେଦିନ ଥାଉ ନା କାହିଁକି, ଏଇ ଗାଆଁଟି ଦେଖିଲେ ଜାଣିହେଉଚି ସେମାନେ ସୁସ୍ଥ ହୋଇସାରିଲା ପରେ ଆଗଭଳି ଏତେ ହଇରାଣ ଆଉ ହେଉନାହାନ୍ତି ।'

ବିଶୁ ଡାକ୍ତର କହିଲେ, 'ବାହାରୁ ଏତିକି ଦେଖି ଆପଣ କ'ଣ ବୁଝିବେ, କେତିକି ବୁଝିବେ ? ହଁ, ଆଗଭଳି ଆଉ ସେମାନେ ଭିକ ଭାଗି ଏଠି ସେଠି ଭୋକରେ ଘାଆରେ ପଚି ସଢ଼ି ମରିବାକୁ ବାଧ୍ୟ ହେଉନାହାନ୍ତି । କିନ୍ତୁ ଭିତରେ ତାଙ୍କର ଯେଉଁ ହାହାକାର, ନିଛାଟିଆ ପଣ ରହିଛି, ତାକୁ କ'ଣ ବାହାରୁ ଦେଖିହେବ ?'

ବିଶୁ ଡାକ୍ତର ବୋଲି ଏ ଅଞ୍ଚଳରେ ବିଖ୍ୟାତ ଭଦ୍ରଲୋକ ଅନେକ ଦିନୁ ଚାକିରୀ ରୁ ଅବ୍ୟାହତି ନେଇଛନ୍ତି, ଏକଦା ପ୍ରଚୁର ପାଇଭେଟ ପ୍ରାକ୍ଟିସ କୁ ବି ଛାଡ଼ିଦେଇଛନ୍ତି କେବେଠୁ । ବିଧୂ ନାୟକଙ୍କର ଅନେକ ସ୍କୁଲ ବେଳ ସ୍ନାତକ ମାନଙ୍କ ଭିତରୁ ସିଏ ବି ଜଣେ । ଏଲି ସାଙ୍ଗେ ପରିଚୟ ହେଲା ଦିନୁଁ କାମରେ ନାନା ମତେ ତାଙ୍କ ଠୁ ସାହାଯ୍ୟ ପାଇଛି ।

ପ୍ରଥମ ଥରେ ଦିଥର ଆସି ଏଲିର ମନେହେଉଥିଲା, ଅନେକ ସାଧାରଣ ଗାଁ ଠାରୁ ଏ ଲୋକେ ତ ବେଶୀ ଭଲରେ ଅଛନ୍ତି । ସଭିଙ୍କ ଦେହରୁ ରୋଗର ପ୍ରକୋପ ଦିନେ କିଭଳି ହୋଇଥିଲା ଜାଣିହେଉଚି, ଅବା ଭିନ୍ନ ଭିନ୍ନ ମାତ୍ରାରେ ପଙ୍ଗୁ ବି ହୋଇଚନ୍ତି ଅନେକେ । ତେବେ ଚାଷବାସ ଚାଲିଚି, ଗାଈ ଛେଳି ରଖିଚନ୍ତି ସମସ୍ତେ । ସଭିଙ୍କ ଘରଦ୍ୱାର ସଫା ସୁତୁରା, ଗାଁ ଦାଣ୍ଡ ବି ପରିଚ୍ଛନ୍ନ । ଏଲି ପଚାରିଲା, 'ଆଜିକାଲି ତ ଓଷଦ କଥା ଜାଣିଲେଣି ସଭିଏଁ, ସ୍ୱେଚ୍ଛାସେବୀ ସଂସ୍ଥା ଆଉ ସରକାରୀ ପ୍ରଚାର ବି ରହିଚି, ସେତେ ଦୁରାରୋଗ୍ୟ ବୋଲି ଭାବି ଲୋକେ ଆଉ ଲୁଚାଉନାହାନ୍ତି ନିଶ୍ଚେ । ତେବେ ଅସୁବିଧା ଟା କ'ଣ ପୁରୁଣା ରୋଗୀଙ୍କୁ ଥଇଥାନ କରାଇବାରେ ?'

ସୁମନ୍ତ କହିଲା, 'ଥଇଥାନ ନୁହେଁ ଏଲି, ସମାଜ ଭିତରେ ତାଙ୍କୁ ସ୍ୱୀକୃତ କରାଇବା । ତାଙ୍କ ନିଜ କୁଟୁମ୍ବ ପରିଜନଙ୍କ ଲାଗି ସେମାନେ ମୃତ, ଜାଣିଚ ତ ? ପୁରା ସମାଜର ଚେତନା ଯେଯାଏଁ ନ ବଦଳିଚି, ତାଙ୍କୁ ଅଭିଶପ୍ତ ବୋଲି ଭାବି ବହିଷ୍କାର ଦଣ୍ଡ ସେ ଯାଏଁ ଦିଆ ଚାଲିଚି...'

ବିଶ୍ବୁ ଡାକ୍ତର କହିଲେ, 'ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଏମାନେ କ'ଣ ଥିବେ, ବାବୁ ସୁମନ୍ତ ? ସମାଜର ଚେତନାକୁ ବଦଳାଇବାକୁ ତୁମ ଭଳି ଯୁବକମାନଙ୍କ ତ ଚେଷ୍ଟା କରିବାକୁ ହେବ, ତା ସାଙ୍ଗରେ ଏଇ ଲୋକମାନଙ୍କ ଅନ୍ତର୍ଜଗତରୁ ଅନ୍ଧକାର ଦୂର କରିବାଲାଗି ଏକ ଆଧ୍ୟାତ୍ମିକ ପଥ ତାଙ୍କୁ ଦେଖାଇବାର ଦାୟିତ୍ୱ ଆମକୁ ନେବାକୁ ହେବ ।'

ଅଧୈର୍ଯ୍ୟ ହେଇ ସୁମନ୍ତ କହିଲା, 'ସେ ବିଷୟରେ ଏତେ ଲମ୍ବା ଭାଷଣ ଦେଲେ ପରା ଆପଣ ଏଇ ଅଧଘଣ୍ଟା ତଳେ !'

ବିଶ୍ବୁ ଡାକ୍ତର ହସି ହସି କହିଲେ, 'ଦେଲେ କ'ଣ ହେବ । ତମେ ତ ତାକୁ ଖାଲି ଲମ୍ବା ଭାଷଣ ବୋଲି କହି ଟାଳିଦେଲ, ବିଶ୍ୱାସକଲ କୋଉଠୁ...'

ଏଲି ହସିଲା ଯୁକ୍ତି ତର୍କକୁ ଟାଳିଦେବାଲାଗି । କହିଲା, 'କାହିଁକି, ଦିହେଁ ଯାକ ତ ଠିକ୍ କଥା କହୁଚନ୍ତି । ଉଭୟ କଥା ଲାଗି ଚେଷ୍ଟା କଲେ ହୁଅନ୍ତା ନାହିଁ ?'

ସୁମନ୍ତ ହସର ଉତ୍ତର ଆଦୌ ନଦେଇ କହିଲା, 'କେଜାଣି ! ଲୋକେ ଜୀବନ ସାଙ୍ଗେ ଯୁଝିଲା ବେଳେ ଆଧ୍ୟାତ୍ମିକ କଥା କହିଲେ କି ଲାଭ ହେବ ତାଙ୍କର ? ତାଙ୍କ ଦୁଃଖ ଦୁର୍ଦ୍ଦଶା କଥା ନବୁଝି ଆତ୍ମା ପରମାତ୍ମା କଥା ବୁଝାଇବସିଲେ ମୋତେ ତ ଭଣ୍ଡାମୀ ଭଳି ଲାଗିବ ।'

ବିଶ୍ବୁ ଡାକ୍ତର ଅସୀମ ଧୈର୍ଯ୍ୟର ସହ ସୁମନ୍ତକୁ ଚାହିଁ ମନ୍ଦ ହସିଲେ, ପୁଣି ଶୂନ୍ୟକୁ ଚାହିଁ ହାତ ଯୋଡ଼ିଲେ, ଆଖିବୁଜି କ'ଣ ପ୍ରାର୍ଥନା କଲେ । ତାପରେ କହିଲେ 'ଦିନେ ବୁଝିବ ତମେ, ଜୀବନ ସାଙ୍ଗେ ଯୁଝିବା ବେଳେ ହିଁ ଆଧ୍ୟାତ୍ମିକ ସାହା ସବୁଠୁ ବଳି ସହାୟ ହୁଏ । ହଉ, ମୋ ଓହ୍ଲେଇବା ଜାଗା ଆସିଲା ।'

ଗାଡ଼ି ଅଟକାଇ ଉଦ୍ଦିଷ୍ଟ ଜାଗାଠି ଡାକ୍ତରଙ୍କ ସାଙ୍ଗେ ତାଙ୍କ ଦଳର ଆଉ ଦିଜଣ ବି ଓହ୍ଲେଇଗଲେ । ଏଲି ଏଥର କହିଲା, 'ଡାକ୍ତରଙ୍କ ସେବା ବିଷୟରେ ମୋର ତ ଆଦୌ ସନ୍ଦେହ ନାହିଁ । ହେଲେ ତମେ ସୁମନ୍ତ କାହିଁ ଏତେ କ୍ରିଟିକାଲ ଟିକେ ମୋତେ ବୁଝାଇଲ । ଡାକ୍ତର ବିଚରା ଯାହା କହିଲେ ତୁମେ ପସନ୍ଦ କରୁନା, ଭୁରୁ କୁଞ୍ଚେଇ ମୁହଁ ତମତମ କରିଦେଉଚ ।'

ସୁମନ୍ତ ଗାଡ଼ି ଚଲାଉ ଚାଲାଉ ସାନ ସହରଟିର ଭୀଡ଼ ରାସ୍ତାରୁ ମୁହୂର୍ତ୍ତକ ଲାଗି ଆଖି ଉଠାଇ ଏଲି ଆଖିକୁ ଆଣିଲା । କେତେବେଳୁ ଗୁମ୍‌ସୁମ୍ ଥିବା ତା ମୁହଁଟି ହସିଟିଏରେ ଉଜଳି ଉଠିଲା । କହିଲା, 'ହେଇ ଦେଖ, ମୁହଁ ଠିକ୍ କରିନେଲି, ତୁମେ ଆଉ ନିଜ ମୁଡ୍ ଖରାପ କରନା ଏଲି ।'

ସୁମନ୍ତର ବାଁ ହାତଟି ଗିଅର ମୁଠା ଛାଡ଼ିଦେଇ ଏଲିର କୋଳ ଉପରେ ଥିବା ହାତ ଉପରକୁ ଚାଲି ଆସିଥିଲା । ଏଲି ନିଜ ପାପୁଲିକୁ ଛନ୍ଦିଦେଉଣୁ ସୁମନ୍ତ ହାତକୁ ପୁଣି ଛାଡ଼ିଦେଇ କହିଲା, 'ହଉ, ରାସ୍ତା ଉପରକୁ ଧ୍ୟାନ ଦିଅ ଏଥର ।'

ବଜାର ରାସ୍ତା ମଝିରେ ଏଣୁ ଆସୁଥିବା ସାଇକେଲ ତେଣୁ ଧାଉଁଥିବା କୁକୁରକୁ ବଞ୍ଚାଇ ଷ୍ଟିଅରିଂ ମୋଡୁ ମୋଡୁ ସୁମନ୍ତ କହିଲା, 'କଥା ହେଲା ଏଇ ଡାକ୍ତର ବିଚରାଟି ତା ଡାକ୍ତରୀ ବିଦ୍ୟାରେ ଲୋକଙ୍କ ସେବା ନକରି ସାଧୁ ମହାତ୍ମାଙ୍କ ଭଳି ପ୍ରବଚନ ଦେବାଲାଗି ବେଶୀ ତତ୍ପର ।'

ସାନ ସହରଟି ଦେଖୁ ଦେଖୁ ପାରି ହେଇ କ୍ଷେତ ପଡ଼ିଆ ଭିତର ଦେଇ ପୁଣି ଗାଡ଼ି ଚାଲିଲା । ସଞ୍ଜ ହେବାକୁ ଆଉରି ଡେରି ଅଛି, ଆକାଶରେ ଫେରନ୍ତା ଚଢ଼େଇ ଦଳଙ୍କୁ ଦେଖି ଏଲିର ମନକୁ ଆସିଲା, ତାର ବି ଏଠୁ ଫେରିବାର ବେଳ ଆସିଗଲା । ସୁମନ୍ତ ହଠାତ୍ ଗାଡ଼ି ଧିମେଇ ଆଣି କହିଲା, 'ଆସ ଆଜି ଗୋଟିଏ ବଢ଼ିଆ ଜାଗାରେ ଚା ପିଇବା, ଗରମ ବରା ବି ଖିଆଯିବ । ଆଜି ତେଣେ ପହଞ୍ଚୁ ପହଞ୍ଚୁ ରାତି ହେବ, ତମ ରୋଷେୟା ଘରକୁ ଯାଇ ସାରିଥିବ ।'

ଗାଁ ଗଣ୍ଡା ଛାଡ଼ି ଯେଉଁଠୁ ବଣ ଆରମ୍ଭ, ସେଇଠି ଗୋଟିଏ ଢାବାରେ ଦିହେଁ ବସିଲେ । ଖରା ନଇଁ ଆସୁଥାଏ । ଟ୍ରକ୍ ଭୀଡ଼ ଏଇଠି ଏଯାଏଁ ହେଇନି । ବରା ଆଉ ଚା' ର ବରାଦ ଦେଇ ସୁମନ୍ତ ପଚାରିଲା, 'ତମେତ ବହୁତ ଦେଶ ବିଦେଶ ବୁଲିଚ, ହେଲେ ଏମିତି ଗୋଟିଏ ପରିବେଶ ତମ ଲାଗି ବି ନୂଆ ନା ନାଇଁ ଏଲି ? ମାନେ, ଯାହାର ବିଶେଷ କିଛି ଅର୍ଥ ଥିଲାପରି ମନେହୁଏ ?'

ଏଲି ଅଳ୍ପ ହସି ଚୁପ୍ ରହିଲା । ତା ଲାଗି ରୋମାଣ୍ଟିକ୍ ସ୍ମୃତି ବୋଲି ଆଉ କିଛି ନଥିଲା କାହିଁ କେତେଦିନୁ । ଚା' ପଇବା, ଏମିତି ସଞ୍ଜରେ, ଏକୁଟିଆ ବଣ ପାଖରେ, ଏତିକି ହିଁ ଯଥେଷ୍ଟ ତା ଲାଗି ଏବେ । ଆଉ କିଛି ଅର୍ଥ ଲୋଡ଼ାନାଇଁ ।

ଚା' ପିଉ ପିଉ ଏଲି କହିଲା, 'ମୋତେ ଏଥର ଫେରିବାର ବନ୍ଦୋବସ୍ତ କରିବାକୁ ହେବ ସୁମନ୍ତ । ମୋ ରିପୋର୍ଟ ଟା ତିଆରି ହେଇଗଲାଣି ପ୍ରାୟ । ହେଲେ ତମ ସାଙ୍ଗେ ଚର୍ଚ୍ଚା ନକରି ପୁରା କରିପାରିବିନି ।'

କଥାଟା କହିଦେଇ ଜାଣିଶୁଣି ସୁମନ୍ତ ମୁହଁକୁ ଅନେଇଲା ନାଇଁ ଏଲି । ଉତ୍ତର ଦେବାକୁ କିଛି ସମୟ ନେଲା ସୁମନ୍ତ । କହିଲା, 'ଫେରିଯିବ କୋଉଠିକି ଏଲି ? ମୁଁ ତ ଭାବିଥିଲି ତମେ ନିଜ ଦେଶକୁ ଫେରି ଆସିଚ, ନିଜ ଘରକୁ ।'

ଏଲି କ'ଣ କହିବ ବୋଲି ମୁହଁ ଖୋଲି ପୁଣି ଚୁପ୍ ରହିଲା । କ'ଣ ବା ଜାଣେ ସୁମନ୍ତ ତା ବିଷୟରେ । ନିଜ ଘର ବୋଲି ଆପଣେଇ ନେବା ଲାଗି କିଏ ଅଛି ଏଠି ଏଲି ଲାଗି ?

ସୁମନ୍ତ ପୁଣି କହିଲା ତାକୁ ଆଶ୍ଚର୍ଯ୍ୟରେ, 'ମୁଁ ତ ଭାବିଥିଲି ତମେ କେତେ କାମ ଏ ଦେଶରେ କରିବ ବୋଲି ଆସିଚ । କୁଷ୍ଠ ରୋଗର ଗବେଷଣା ଓ ରୋଗୀଙ୍କ ପୁନର୍ବାସ ତ ଅନେକ ସମସ୍ୟାରୁ ଗୋଟିଏ । ଭାବିଥିଲି ତମେ ଏଇଟିକୁ ବାଛିଚ କେବଳ ତୁମଲାଗି ଏବେ ସୁବିଧା ହେବ ବୋଲି । କ'ଣ ତମେ ସତରେ ଖାଲି ରିପୋର୍ଟଟାଏ ଲେଖିଦେଇ ଫେରିଯିବ ?'

ସୁମନ୍ତ ମୁହଁକୁ ଅନେଇ କ'ଣ ସଫେଇ ଦେବ ବୋଲି ଭାବୁ ଭାବୁ ଏଲି ରହିଗଲା, ଧୀମା ଗଳାରେ କହିଲା, 'ତମ ପରି ଲୋକ ତ ଏତେ କାମ କରୁଚନ୍ତି । ମୁଁ କୋଉ ବିଦେଶରୁ ଉଡ଼ିଆସିଲା ଚଢ଼େଇଟାଏ, କ'ଣ ବା ଅଧିକ ହେବ ଏଠି ମୋ ଦେଇ ?'

ସୁମନ୍ତ କହିଲା, 'ବିଦେଶର ହୋଇଥିଲେ ପିଲାଦିନର ଚେର ଖୋଜି ତମେ ଏଠିକି ଆସିନଥାନ୍ତ ଏଲି । ଆମେ ବି ତମଠି ଯେଉଁ ମଣିଷଟିକି ଦେଖିଲୁ, ସିଏ ବିଦେଶୀ କି ସ୍ୱଦେଶୀ ନଥିଲା । ଆମ ସଂସ୍ଥାରେ କାମ କରୁଥିବା ଲୋକେ ଯେଉଁଭଳି ସ୍ୱେଚ୍ଛାସେବୀ ଲାଗି ଅପେକ୍ଷା କରି, ଆଶା କରି ଅନେଇବସିଥାଉ, ସହଜରେ କ'ଣ ମିଳନ୍ତି ସେଭଳି ଲୋକ ? ତମେ ସେଇଜଣକ ଆସିଚ ଏତେଦିନେକେ । ଏକଥା ତମେ ବି ଜାଣିଚ ।'

ଟିକିଏ ଚୁପ୍ ରହି ସୁମନ୍ତ ଆହୁରି କହିଲା, 'ସଂସ୍ଥାଟିଏର ମୂଳଦୁଆ ପକାଇବା ଲାଗି ଲୋକଟିଏ ଦରକାର, ଯାହା କଲି ମୁଁ । ପୁଣି ହାତରେ ହାତ ମିଳାଇ ଆଗେଇ ନେବାଲାଗି ଲୋଡ଼ାହୁଏ ଆଉଜଣେ । ଏକଥା ଜାଣି ବି ତମେ ବିଦେଶୀପଣକୁ ଜାବୁଡ଼ି ଧରିଚ ଯେ ?'

ଖରା ଚାଲିଯାଇଥିଲା । ରାସ୍ତା ଉପରଦେଇ ହର୍ଣ୍ଣ ବଜାଇ କାଁ ଭାଁ ଗାଡ଼ି ଯାଉଥିଲେ, ପୁଣି ଶାନ୍ତ ହେଉ ଥିଲା ଚାରିଆଡ଼ । ଏଲି ସହଜ ଗଳାରେ କହିଲା, 'ବରା ଥଣ୍ଡା ହେଇଯାଉଚି । ଖାଇଦେଇ ଶୀଘ୍ର ଉଠିବା । ମୋତେ ଏ ଦେଶ ଛାଡ଼ି ଏବେ ତ ଯିବାକୁ ହେବ, ନିର୍ଦ୍ଦିଷ୍ଟ ସମୟ ଲାଗି କାମଟିଏ ହାତକୁ ନେଇଚି ପରା । ତା ବୋଲି ସବୁଦିନ ପାଇଁ ଚାଲିଯାଉଚି ବୋଲି କିଏ କହିଲା ? ମୋ କାମ, ମୋର ଏଠି ରହିବା ସତରେ କାହାଲାଗି ଜରୁରୀ ବୋଲି ଜାଣିଲେ ପୁଣି ଥରେ ଆସିବି । ହୁଏତ ଆସି ରହିଯିବି, ଆଉ ଫେରିବି ନାହିଁ । ଏବେ ଖାଇଲ ।'

ଫେରନ୍ତା ରାସ୍ତାରେ ସୁମନ୍ତ ଏଥର କ୍ୟାସେଟ୍ ଲଗାଇଲା । ଏଲିର ପିଲାଦିନର ପ୍ରିୟ କ୍ୟାସେଟ୍‌ମାନ ପଚାରି ବୁଝି ସେ କିଣି ରଖିଥିଲା । ଚାରିପାଖର ଅନ୍ଧାର ତାଙ୍କ ଗାଡ଼ି ଆଲୁଅରେ, ଗୀତରେ ଖୋଲି ଖୋଲି ଯାଉଥାଏ । ଆଉ ଗାଆଁର ବେକାର ଟୁଆଦଳ ଗୋଡ଼ାଇଲା ଭଳି ସାଙ୍ଗେ ସାଙ୍ଗେ ଚାଲିଥାନ୍ତି ଆକାଶର ତାରା ଯେତକ ।

ଏଲି ଗେଷ୍ଟ ହାଉସ ପାଖରେ ଗାଡ଼ି ରଖି ସୁମନ୍ତ କେତେବେଳକେ କହିଲା ପୁଣି, 'ତୁମକୁ କେଉଁ ସାହସରେ ରହବୋଲି କହିବି ଏଲି ! ମୋର ନିଜ ଠିଆ ହେବାଲାଗି ତ ଟିପେ ବୋଲି ମାଟି ନାହିଁ । କେଉଁ ମୁହଁରେ ବା କହିବି, ଯେ ତୁମକୁ ଭେଟିଲା ଦିନଠୁଁ ଅକାରଣ ଆଶା ଆସିଯାଏ ବେଳ ଅବେଳରେ । ଯେ ଜଣେ ଅଛି ମୋ ପାଖେ ପାଖେ, ମୁଁ ଏକୁଟିଆ ନୁହେଁ ଆଉ !'

ଘର ଭିତରକୁ ଚାଲିଯିବା ପୂର୍ବରୁ ନିଜ ଦୁଇହାତରେ ସୁମନ୍ତର ପାପୁଲିକୁ ନେଇ ଏଲି କହିଲା, 'ତୁମେ ଜମା ଏକୁଟିଆ ନୁହଁ । ବୋଧେ ମୁଁ ବି ନୁହେଁ । କେଜାଣି । ତେବେ ଆଜି ଲାଗି ଖାଲି ବନ୍ଧୁତା ଥାଉ, ନହେଲେ ମୁହଁର କଥା କେଉଁପଦ ଆସନ୍ତା କାଲି ଲାଗି ବୋଝ ହେଇଯାଇ ପାରେ ।'

॥୨୩॥

ଛୁଟିଦିନ ଖିଆପିଆ ସରିଗଲା ପରେ ଉପରଓଳିଟି କଟେନାହିଁ ଏଲିର । ସକାଳୁ ମେଘ ଘୋଡ଼େଇ ଦି ଅସରା ଭଲ ବର୍ଷା ବି କୁଟିଦେଇଚି, ବାହାରୁ ଘେରାଏ ବୁଲିଆସିବାକୁ ମନ ଥିଲେ ବି

ସାହସ କୁଳାଉନାହିଁ । ଆରାମ ଚଉକୀଟିରେ ବସି ପବନରେ ଝାଙ୍କିଦେଉଥିବା କୃଷ୍ଣଚୂଡ଼ା ଡାଳକୁ ଅନେଇଛି, ପଛପାଖେ ମଗନ ଆସି ଠିଆହେଲା । ଆରମ୍ଭ କଲା ତାର ଅଯାଚିତ ଗପ, 'ଭଲ କରିଚନ୍ତି ମାଡାମ୍, କୁଆଡ଼େ ବାହାରିନାହାନ୍ତି ଏ ପାଗରେ । ଆପଣଙ୍କ ଲାଗି ଏ ଜାଗା ଯେତେହେଲେ ବିଦେଶ, ଦେହପା ଖରାପ ହେଲେ କିଏ ଦେଖିବ ? ନାୟକ ସାହାବ ସେମିତି ଥରେ ମିଛଟାରେ ଝଡ଼ବର୍ଷାରେ ତିନ୍ତି ଜରରେ ପଡ଼ିଥିଲେ ।'

ଏଲି କହିଲା, 'ସତରେ ? ବର୍ଷାରେ ବି ତିନ୍ତୁଥିଲେ ସେ ?'

ମଗନ ହସିଲା, ତା ହସ ହିଁ କହିଦେଉଥିଲା ତା ସ୍ମୃତିରେ ଥିବା ନାୟକ ସାହାବଙ୍କ ଛବି କଥା । କହିଲା, 'ତାଙ୍କ କଥା ଆଜ୍ଞା ଛାଡ଼ନ୍ତୁ । କେତେ ବଡ଼ ବିପଦ ଜାଣୁ ଜାଣୁ ନିଜ ଉପରକୁ ଡାକି ଆଣିବା ଲୋକ ସେ ।'

ଏଲି ପଚାରିଲା, 'କି ବିପଦରେ ପଡ଼ିଥିଲେ ସେ ମଗନ ? କେତେଥର ତମ ମୁହଁରୁ ଶୁଣିଲିଣି ତାଙ୍କ ବିପଦ କଥା ।'

କଥା ବାଁରେଇ ମଗନ କହିଲା, 'ନାଇଁ ଏମିତି କହୁଥିଲି । ଟିକିଏ ଜାଗତିଆର ହେଇ ରହିଥାନ୍ତେ ଯଦି ତାଙ୍କ ଭଳି ଲୋକେ ଆଜି ଏଇଠି ରାଜୁତି କରୁଥାଆନ୍ତେ, ସେଭଳି ଲୋକ କେତେଜଣ ଅଛନ୍ତି ଏ ବାମନଙ୍କ ରାଜ୍ୟରେ ?'

'ନାଇଁ, ସେ କଥା ମୁଁ ପଚାରୁନାଇଁ । ତମେ ପୁଣି ବାଁରେଇ ଦଉଚ ମଗନ । ଯେଉଁ ବିପଦରେ ପଡ଼ିଥିଲେ ବୋଲି ତାଙ୍କୁ ଚାକିରୀ ଛାଡ଼ିବାକୁ ହେଲା, ସେଇ କଥା କହ ଆଜି ।'

ମଗନ ଏଣେ ତେଣେ ଅନେଇଲା ସଙ୍କୋଚରେ, ବୁଝା ଓଠ ତା'ର କହୁଥିଲା ବେଶିକିଛି କହିବା ସହଜ ନୁହେଁ ତା ଲାଗି । ହଠାତ୍ କ'ଣ ମନେ ପଡ଼ିଗଲା ପରି କହିଲା, 'ଯାଏଁ ଟେବୁଲଟା ପୋଛିଦେଇ ଆସେଁ ।'

ଏଲି କିଛି କହିଲା ନାହିଁ । ପବନ ଝାଙ୍କରେ ବ୍ୟତିବ୍ୟସ୍ତ ଗଛ ଡାଳଙ୍କଠି ତା'ର ଦୃଷ୍ଟି ଫେରିଗଲା । ଟିକିଏବେଳେ ପରେ କିଏ ଆସିବା ବାରି ଫେରିଚାହିଁ ଦେଖିଲା ମଗନ ମଇଳା ତଉଲିଆ ଖଣ୍ଡକରେ ହାତ ପୋଛି ପୋଛି ଆସି ଠିଆ ହେଇଚି । ଏଲି କିଛି କହିବା ପୂର୍ବରୁ ସେ ଭୂଇଁରେ ଚକାମାଡ଼ି ବସିପଡ଼ିଲା, ଏଲି ବସିଲା ଚଉକୀରୁ ଖଣ୍ଡେ ଦୂରରେ । ବିନା ଉପକ୍ରମଣିକାରେ କଥା ଆରମ୍ଭ କଲା, 'ନାୟକ ସାହାବଙ୍କୁ ନେଇ ମସ୍ତବଡ଼ ଯୋଉ ଗଣ୍ଡଗୋଳ ହେଇଥିଲା, ସେଇ ଦିଦିଙ୍କି ନେଇ, ସବୁ କଥା କହୁଚି ଶୁଣନ୍ତୁ । ସେଦିନ ସେ ଦିହେଁ ଯାକ ଥାଆନ୍ତି, ମୋତେ ମାଲୁମ ପଡ଼ିଗଲା ପିଲା ଆସି ଆଜି ଘେରଉ କରିବେ ସାର୍‌କୁ । ମୁଁ କବାଟ ପାଖରୁ ଡାକିଲି, ସାର୍, ଆଜି ଦିଦି ଚାଲିଯାଆନ୍ତୁ ଶିଘ୍ର । ଗୋଳମାଳ ହେବାର ଅଛି । ସାର୍ ଓଲଟି ମୋତେ ବିଗିଡ଼ିଲେ । ଇଂରାଜୀ ଗାଳି ବକି ପାଟିକଲେ, ଯାଉଚୁ ନା ଦେଖିବୁ ?'

ଏଲି ପ୍ରଶ୍ନ ପଚାରିଲା ନାଇଁ, ମଗନର କଥାରୁ ଅନ୍ଦାଜ କରିବାକୁ ଚେଷ୍ଟାକଲା ବାକି କଥା ମାନ । ହେଲେ ମଗନର କଥା ଅନ୍ୟ ମୋଡ଼ ଧରିଲା, 'ମୋତେ ତ ସାର୍ ତାଙ୍କର ସବୁ କାମ କରିବାକୁ ଦିଅନ୍ତି, ଖେଳଲାଘର ଚାବି ସୁଦ୍ଧା ଦିଅନ୍ତି । ଦିଦି ଥିଲାବେଳେ ବି ମୋତେ ଏଣୁ ତେଣୁ

କାମରେ ଘର ଭିତରକୁ ଡାକନ୍ତି । କେତେଥର ତ ମୁଁ ତାଙ୍କ କୋଟ ଜୋତା ଖୋଲିଦେଇଛି, ନହେଲେ ସେମିତି ଶୋଇପଡ଼ିବେ । ମୋ ଉପରକୁ ହାତ ଉଠେଇ ଦେଇଥିଲେ ଥରେ । ପରଦିନ ସକାଳୁ ମୁଁ କହିଲି ମୁଁ ଯାଉଛି ଗାଁକୁ, ଚାକିରୀ ଛାଡ଼ି । ସାର୍ ପଚାରିଲେ, କ'ଣ ହେଲାକି । ତାଙ୍କର କ'ଣ କିଛି ମନେ ଥାଏ ?'

ମଗନ କହୁଥିବା ଦିଦି ଟି ବିଷୟରେ ପଚାରିବା କଥା ଏଲି ଭାବୁଚି, ସେ ଆପେ କହିଲା, 'ଦିଦି ବିଚାରୀ ଖରାପ ମଣିଷ ନଥିଲା । ସେ ଆସିଲା ଦିନୁ ସାର୍‌ଙ୍କର ମିଜାଜ ଭଲ ରହୁଥିଲା । ସିଏ ବି ସାର୍ ଯାହା କହିଲେ ମାନୁଥିଲା, ତା ଦୋଷ କ'ଣ ?'

ହାତର ମଇଳା ଓଦା ତଉଲିଆ ମିଶା ହାତରେ ମୁଣ୍ଡ କୁଣ୍ଡେଇ ହେଲା ମଗନ । କହିଲା, 'ସେଦିନ ଯୋଉ ଘେରାଉ ହେଲା, ମୋତେ ବହୁତ ଆଗରୁ ଜଣା ଥିଲା କିଛି ଗୋଟିଏ ଅଘଟଣ ଘଟାଇବେ ଏ ଲୋକେ । କେତେ ଦିନୁଁ ଚାପା ହଇଚଇ ପଡ଼ିଥାଏ, କ୍ୟାମ୍ପସ ବାହାରେ ବି କଥାଟା ପ୍ରଘଟ ହେଇସାରିଥାଏ ।'

'କୋଉ କଥା ?'

'ଦିଦି ରହୁଥାନ୍ତି ହଷ୍ଟେଲରେ, ସାର୍ ଅଫିସରୁ ଫେରି ଗାଡ଼ି ପଠେଇଦିଅନ୍ତି ତାଙ୍କୁ ଆଣିବାଲାଗି । ପୁଣି ଦିନେ ଦିନେ ଯାଆନ୍ତି ତାଙ୍କୁ ଛାଡ଼ିବାଲାଗି, ହଷ୍ଟେଲକୁ ।'

'ଦିଦି କ'ଣ ପଢୁଥିଲେ ୟୁନିଭର୍ସିଟୀ ରେ ?

'ନାଇଁ ନାଇଁ । କେମିଷ୍ଟ୍ରି ଡିପାର୍ଟମେଣ୍ଟ ରେ କାମ କରୁଥିଲା ସିଏ, ଟେକ୍‌ନିସିଆନ ନା କଣ କହନ୍ତି । ପ୍ରଥମେ ପ୍ରଥମେ ତ ଆପେ ଚାଲିଆସୁଥିଲା ଏଠିକି । ବାପ ନଥିବା ଗରିବ ଘର ଝିଅ, ଆକଟ କରିବାକୁ ବି ଘରେ କେହି ନଥିଲେ । ଚାକିରୀ ଖଣ୍ଡକ ପକ୍କା କରିବାକୁ ପହିଲେ ସାହେବଙ୍କ ଅଫିସକି ଦଉଡ଼ିଥିଲା ଦିନାକେତେ । ସେଇଠୁ ଚାକିରୀ ହେଲାପରେ ଦିନେ ମିଠା ପିଠା କ'ଣ ନେଇ ଏଠି ଘରକୁ ଆସିଲା । ସେଦିନ ତାକୁ ଦେଖିଦେଇ ସାହେବ ଯୋଉ ମୂର୍ତ୍ତି ଧରିଲେ, ଆରେ ବାବା । ରାଗରେ ଅଗ୍ନିଶର୍ମା ହେଇ ପାଟିକଲେ, କିଏ କହିଲା ତମକୁ ଏଠିକି ଆସିବାକୁ । ସିଏ ଡରି ମରି କାନ୍ଦି କାନ୍ଦି ପଳେଇଚି । ହେଲେ ସତରେ ଏମିତି ଡରିଯିବା ଝିଅ ନଥିଲା ତ ସିଏ, ପୁଣି ସାହାବଙ୍କ ଅଫିସକି ଯାଇଥିଲା ବୋଲି ତାଙ୍କ ଡ୍ରାଇଭର କହୁଥିଲା । ଦିନ ଚାରିଟା ଯାଇଚି କି ନାଇଁ ସାହେବ ନିଜ ତାକୁ ଗାଡ଼ିରେ ଆଣିଲେ, ଅଫିସରୁ ଫେରିଲା ବାଟରେ । ସିଏ ମୁଣ୍ଡପୋତି କାକୁସ୍ବରେ କହୁଥାଏ, ଥାଉ ସାର ମୁଁ ଚାଲିଯିବି । କ'ଣ ତା ଗାଁ କୁ ଯିବ ବୋଲି ବସ୍ ଧରିବାକୁ ଯାଇଥିଲା କ୍ୟାମ୍ପସ ବାହାର ଫାଟକ ପାଖକୁ । ବସ୍ ଫେଲ୍ ହେଲା ନା କ'ଣ, ଏକୁଟିଆ ଠିଆ ହେଇଥିଲା ସଞ୍ଜବେଳଟାରେ । ସାହେବ କହିଲେ, ଆ ଗାଡ଼ିରେ ବସ୍ ମୁଁ ତୋତେ ଛାଡ଼ିଦେବି । ସେଠୁ କ'ଣ କଥାବାର୍ତ୍ତା ହେଲା କେଜାଣି, ଦିଦି ଆସିଲା ଏଠିକି । ସାହେବ ପିଇନଥିଲେ ସେଦିନ । କି ଗୋଟାଏ ଛୁଟି ଲାଗି ହଷ୍ଟେଲ ବନ୍ଦ ହେଇଯାଇଥାଏ, ଦିଦି ବୋଧେ ସେଥିଲାଗି ବ୍ୟସ୍ତ ହେଉଥାଏ କୋଉଠି ରହିବ ବୋଲି ।'

'ସେଇଠୁ ?'

ମଗନ ଚୁପ୍ ରହିଲା କିଛିବେଳ । କହିଲା, 'ପରଦିନ ଦିଦି ତା ଗାଁ କୁ ଫେରିଗଲା । ଏଇଠି ସେ କୋଣ କୋଠରୀ ଟା ଖୋଲିଦେଇଥିଲି, ଗାଧୋଇ ପାଧେଇ ଖାଇପିଇ ବସ୍ ଧରିଲା । ପୁଣି କିଛିଦିନ ପରେ ଗାଁରୁ ଫେରି ଆପେ ଆସିଲା ଏଠିକି । ଦିନାକେତେ ପରେ ସାହେବ ଗାଡ଼ି ପଠେଇଲେ ତା ହଷ୍ଟେଲକୁ । କେଡ଼େ ନିନ୍ଦା କଥା । ଚାରିଆଡ଼େ ସେ କଥା ପଡ଼ିଲା । ହଷ୍ଟେଲରୁ ଗୋଟିଏ ଝିଅ କୁଳପତିଙ୍କ ବଙ୍ଗଳାକୁ ଯିବ ରାତିରେ, ପୁଣି ଫେରିବ ହଷ୍ଟେଲକୁ ରାତି ବାରଟାରେ ?'

ଏଲି ଭାବୁଥିଲା, ଏମିତି ଥିଲେ ସେ ସବୁଦିନେ । ଯେଉଁଠି ଖୋଲାଖୋଲି ରିସ୍କ ନନେଲେ ବି ଚଳନ୍ତା, ସେଇଠି ସେ ଚାରିଦଉଡ଼ି କାଟିଦେଇ ନିଜ ମନହେଲା କାମ କରନ୍ତି । ନିଜ ଇଚ୍ଛାଟି ହିଁ ତାଙ୍କୁ ଦେଖାଯାଏ, ଆଉ କେହି ନଥାନ୍ତି ତାଙ୍କ ବିଶ୍ୱରେ ।

ମଗନ କହୁଥିଲା, 'ମୂଳରୁ ସଫା ଯଦି କହିଦେଇଥାନ୍ତେ ତାକୁ ବାହା ହେବେ ବୋଲି, କିଛି କଥା ନଥିଲା । ଏମିତି କିଛିଦିନ ଯାଇଥିବ, ମାସେ ଦେଢମାସ ହେବ ମୋଟରେ, ଦିନେ ସଞ୍ଜବେଳେ ତ ଛାତ୍ର ପିଅନ କିରାଣୀ ଆଦି ମିଶି, ମାଷ୍ଟର ବି ନ ମିଶିଥିବେ ତା ନୁହଁ, ଲୋକ ତ ପାଟିକରି କମ୍ପେଇ ଦେଲେ, ଭ୍ରଷ୍ଟ କୁଳପତିଙ୍କ ବହିଷ୍କାର ହେଉ । ସ୍ଲୋଗାନ ହେଲେ ଇସ୍ତଫା ଦିଅ ବୋଲି । ରାତି ଅଧ ଯାଏଁ ଘେରାଉ କରି ରଖିଲେ ଏ ବଙ୍ଗଳାକୁ ।'

ଏଲିର ଦେହ କାଠ ହେଇଯାଇଥିଲା । ଏତେ ଅପମାନ, ସେ ଅନୁମାନ କରିପାରିଲେ ନାହିଁ ଏଭଳି ପ୍ରତିକ୍ରିୟା ହେଇପାରେ ବୋଲି ? ମଗନ କହିଚାଲିଲା, 'ଲୋକ ଚଢ଼ିଆସିଲେ ବାରଣ୍ଡା ଉପରକୁ । କହିଲେ, କାଢ ସେ ଝିଅକୁ । ବାପ ବୟସର ହେଇ ହଷ୍ଟେଲରୁ ଝିଅ ଉଠେଇଆଣି ଘରେ ପୁରେଇଚି ? ପାଟିକଲେ ତ, ତୋତେ ଛାଡ଼ିବୁ ନାହିଁ ଆଜି । ଏମିତି ସବୁ କହିଲେ, ତୁ ତା ଶଳା ଶଶୁର କରି । ମୁଁ ସେଠି କବାଟ କଡ଼କୁ ଠିଆହେଇ ଠକ୍ ଠକ୍ ଥରୁଥାଏ ।'

ଏଲି ମନେ ମନେ ଅଙ୍କୁଥାଏ ସେ ଦୃଶ୍ୟଟି । ମଗନ କହୁଥିଲା, 'ଶେଷକୁ ସାହେବ ଉଠିଲେ, ଭିତରକୁ ଯାଇ ଦିଦିର ହାତ ଟାଣି ଟାଣି ବାହାର ବାରଣ୍ଡାକୁ ଆସିଲେ । ସିଏ ବି ପାଟିକରି କମ୍ପାଉଥାନ୍ତି, କିଏ ତମେ ସବୁ ମୋ ଘରୋଇ ଜୀବନରେ ହାତ ଦେବାକୁ ? ଇଏ ନିଜ ଇଚ୍ଛାରେ ମୋ ପାଖକୁ ଆସିଚି, ପ୍ରାପ୍ତ ବୟସ୍କା ଝିଅ ସେ, ସ୍ୱଇଚ୍ଛାରେ ମୋତେ ବାହା ହେବାକୁ ଚାହେଁ । ମୋ ସ୍ତ୍ରୀ ଇଏ । ଲୋକ ଟିକିଏ ଚୁପ ପଡ଼ିଗଲେ, ଗୋଟିଏ ଗୋଟିଏ ହେଇ ସେଇଠୁ ପଚାରିଲେ, ବାହାହେଇଚ ଯାକୁ ? କେବେ ବାହାହେଲ ? ସାହେବ ଜବାବ ଦେଲେ, ହଁ, ବାହାହେଇଚି, ଗଲା ରଇବାର ଦିନ ସମଲେଇ ମନ୍ଦିରରେ । କିଏ ମୋର କ'ଣ କରିବ କଇ ଦେଖି । ମୋ ସ୍ତ୍ରୀ ଇଏ, ମୋ ପାଖେ ରହିଚି ଆସି ।'

ସେଇଠୁ ଜଣେ ଅଧେ ଏଣୁ ତେଣୁ ଯୁକ୍ତି କଲେ, କିଛି ଆଉ କାଟୁ କଲାନାହିଁ । ସାହେବ କହିଲେ, କୋର୍ଟରେ ବାହାହେବୁ ଆମେ । ବେଦୀରେ ନୁହଁ । ମୋର ବିଶ୍ୱାସ ନାହିଁ ବେଦୀରେ । ହେଲେ ତାଆରି ପରେପରେ ତ ତାଙ୍କୁ ଇସ୍ତଫା ଦେବାକୁ ହେଲା । ଖବରକାଗଜରେ କଥାଟା ଛାଇଗଲା, ଫଟୋ ବାହାରିଲା ଦିହିଙ୍କର । କେମିତି ଆଉ ସମ୍ଭାଳିଥାଆନ୍ତେ ? ତାଙ୍କ ବିପକ୍ଷ ଦଳ

ଲୋକେ ସୁବର୍ଣ୍ଣ ସୁଯୋଗ ପାଇଗଲେ । ହେଲେ କଥା କଣକି, ସାହେବ ମୂଳରୁ ତାକୁ ବାହାହେବେ ବୋଲି ଭାବିନଥିଲେ । ଯେତେହେଲେ ଦିଦି କ'ଣ ସାହେବଙ୍କ ଯୋଗ୍ୟ ଥିଲା ?'

ଏଲି ପଚାରିଲା, 'ଯୋଗ୍ୟ ନଥିଲା ଯଦି ପୁଣି ବାହା କେମିତି ହେଲେ ଦିହେଁ ?'

ମଗନ କୋଉ ପୁରୁଣା ଦିନକୁ କି ତା ଭାବିଲା କଥାକୁ ଆଖିରେ ଦେଖିଲା ଭଳି କହିଲା, 'ଦିହିଙ୍କ ଭିତରେ ଭାବ ହୋଇ ଯାଇଥିଲା, ସେକଥା ସତ । ସାହାବ ଯେମିତି ଥିଲେ, ସ୍ନେହ ରେ ତାଙ୍କର ଖାଦ ନଥିଲା କେବେ । ଦିଦି ଯଦି ତାଙ୍କ ଯୋଗ୍ୟ ହୋଇଥାଆନ୍ତା, ତାଙ୍କ ସ୍ନେହର ମର୍ଯ୍ୟାଦା ଦେଇଥାଆନ୍ତା । ଯାହା ଲାଗି ସାହାବ ଆମର ମାନ ସମ୍ମାନ କୁଳ କୁଟୁମ୍ବ ସବୁ ପୁରୁଛି ଦେଲେ, ସେଇ ଶେଷରେ ତାଙ୍କୁ କଦାଭ ମାରିନଥାନ୍ତା ।'

॥୨୪॥

ସେଦିନ ସକାଳୁ ସକାଳୁ ଏଲି ତା ଜିନିଷ ପତ୍ର ସବୁ ଏଠିକି କରି ସଜାଡ଼ି ବସିଲା । ଦେଖିଲା ଏ ଭିତରେ କେତେଗୁଡ଼ାଏ ନୂଆ ଜିନିଷ ସେ ଏକାଠି କଲାଣି । ଏବେ ଫେରିବା ବେଳ ହେଲାଣି ଆସି । ଚାହୁଁ ଚାହୁଁ ମାସ ଦିଇଟା କଟିଗଲା । ଦିଇଟା ସୁଟକେଶ ରେ ସବୁ ଜିନିଷ ପୁରେଇ ନେବାକୁ ହେବ ତାକୁ, ବେଶୀ ହେଲେ ଉଡ଼ାଜାହାଜରେ ନେବାକୁ ଅନୁମତି ମିଳିବନି । ତନ୍ତଲୁଗା ଚାଦର ଠୁ ଆରମ୍ଭ କରି ହାଟରେ କିଣା ରୂପା ଗହଣା, କଂସା ବାସନ ଯାଏ ଯେତେବେଳେ ଯାହା ମନହେଲା କିଣିପକେଇଚି ସେ । ହସ ଲାଗୁଚି ଭାବିଲେ, ଯେ ନିଜ ଘରଟିଏ ବୋଲି ମନରେ ଆଶ୍ୱାସର ଛବିଟିଏ ଉଇଁଲା ଭଳି ସେଠି କିଛି ତା ଲାଗି ଅଛି, ନା ଏଠି । ତଥାପି ଦିମାସ ତଳର ଫାଙ୍କା ଖାଁ ଖାଁ ପଣ କାଇଁକି ଆଉ ନାଇଁ । ଭାବୁ ଭାବୁ ସେ କିଣିଥିବା ଜିନିଷ ସବୁ ଗୋଟି ଗୋଟି ସଜାଡ଼ି ରଖୁଥିଲା ସୁଟ୍‌କେଶରେ । ଏ ଦେଶ ଛାଡ଼ିଯିବା ସମୟ ଆସିଗଲା ବୋଲି ମନ ମାନୁନାଇଁ, ତଥାପି ନିଜ ପିଲାଦିନୁ ବଢ଼ିଆସିଥିବା ପାଣିପବନ ଭିତରକୁ ଫେରିଯିବା କଥା ଭାବିଲେ ଟିକିଏ ଥକା ମେଣ୍ଟାଇବା ଭଳି ଭଲ ଲାଗୁଚି । ଘର ବୋଲି ଧାରଣା ସେ ମନକୁ କିଛି ନ ଆଣିବାକୁ ଚେଷ୍ଟା କରୁଚି । କାଇଁକିନା ସମ୍ଭାବନାର ମେଘ ବୋଲି ଥରେ ଅଧେ ମନେହୋଇଚି ଯାହା, ସିଏ ପୁଣି କେବେ ଏତେ ଦୂରନ୍ତ ଦିଶେ ଯେ ବର୍ଷା ନେଇ ଆସିବ ସେ ଅଥବା ଶୁଖିଲା ଧୂଳିଝଡ଼, କିଛି ଜାଣିହୁଏନାଇଁ ।

ମଗନ କବାଟ ପାଖକୁ ଆସି ଠିଆହେଲା, କହିଲା, 'ମାଡାମ୍ । ସୁମନ୍ତ ପୂଜାରୀ ଆଜ୍ଞା ଆସିଚନ୍ତି ।'

ବସିଲା ଜାଗାରୁ ଚଟପଟ୍ ଉଠିପଡ଼ିଲା ଏଲି । ଛୁଟିଦିନଟାରେ ତା'ର ଅନ୍ତତଃ ସକାଳୁ ପ୍ରସ୍ତୁତ ହୋଇ ରହିବାର ଥିଲା, କେହି ଆସିପାରନ୍ତି ବୋଲି । ତେବେ ଅନେକ ଦିନରୁ ସୁମନ୍ତର କିଛି ଖବର ନଥିଲା । ତେବେ ଏଲି ବି ଚୁପ୍ ରହିଥିଲା । ଏଭଳି ପରିସ୍ଥିତିକୁ ବିନା ଆପତ୍ତିରେ ଆଦରିନେବା ନିଜ ଜୀବନରୁ ସେ ବେଶ୍ ଶିଖିସାରିଥିଲା ।

ବାହାରେ ଗୁମ୍‌ସୁମ୍ ହୋଇ ଠିଆହୋଇଥିଲା ସୁମନ୍ତ, ଆଉ କେଉଁଠି ତା ମନ ଥିଲାପରି ।

'ବସ ସୁମନ୍ତ । କିଛି ଖବର ନାହିଁ ଯେ ତୁମର । କୁଆଡ଼େ ଥିଲ ଏତେଦିନ ?'

ବସିପଡ଼ି ତା ମୁହଁକୁ ନ ଅନେଇ ସୁମନ୍ତ କହିଲା, 'ବାହାରକୁ ଚାଲିଯାଇଥିଲି କିଛି ଦିନ ଲାଗି । ତମକୁ ଆଉ ଖବର ଦେଇ ପାରିନି ।'

ଏଲି ବୁଝିଲା, ସୁମନ୍ତ ଆଜି ଖୁବ୍ ଆତ୍ମୀୟତାର ମୁଡ୍‌ରେ ନାହିଁ । ପଚାରିଲା, 'ଚା' ପିଇବ ସୁମନ୍ତ ! କ'ଣ ଭାରି ସିରିୟସ୍ ଦିଶୁଚ ଯେ, କିଛି କଥା ଥିଲା କି ?'

ସେମିତି ଗମ୍ଭୀର ମୁହଁରେ କ'ଣ ଭାବିଲା ଭଳି ସୁମନ୍ତ କହିଲା, 'କଥା ଥିଲା, ଗୋଟିଏ ନୁହେଁ ଏକାଧିକ । ତମଲାଗି କୋଉଟା ବେଶୀ ମହତ୍ତ୍ୱପୂର୍ଣ୍ଣ ହେବ ସେଇକଥା ଭାବୁଚି ।'

ଚଉକିରୁ ଉଠୁ ଉଠୁ ଏଲି କହିଲା, 'ହଉ, ଆରାମରେ ବସି ଶୁଣିବି ସବୁଯାକ କଥା । ଆଗ ମଗନକୁ ଚା' ଲାଗି କହିଦିଏ ।'

ପାପୁଲି ଉଠାଇ ତାକୁ ରୋକି ସୁମନ୍ତ କହିଲା, 'ନାହିଁ ଚା' ଥାଉ ।'

'ଆରେ, ତମେ ଚା' ମନା କରୁଚ ମାନେ କିଛି ସାନ କଥା ହୋଇନଥିବ । ମୋର ବାକି ଥିବା ରିପୋର୍ଟ କାମ କଥା ବୁଝିଆସିଚ ତ ? ମୋ ଲାଗି ଅନ୍ତତଃ ସେଇଟା ସବୁଠୁ ମହତ୍ତ୍ୱପୂର୍ଣ୍ଣ ଏବେ ।'

ମୁହଁରେ ଆଦୌ ହସ ନଥିଲା ସୁମନ୍ତର । କହିଲା, 'ରଘୁ ଓକିଲ ମରିଗଲେ ଗତକାଲି ।'

ଆଶ୍ଚର୍ଯ୍ୟ ଭାବ କଟିବାକୁ କେଇକ୍ଷଣ ଲାଗିଲା ଏଲିକୁ । ପଚାରିଲା, 'କେମିତି ? କ'ଣ ହୋଇଥିଲା ତାଙ୍କର ?'

'ଦୁର୍ଭାଗା ଲୋକଟାଏ । ଯାଇଥିଲା ସାଧୁ ନାୟକଙ୍କ ଜମି ଦଖଲ କରିବା ଲାଗି । କେତେ ଦିନୁ ତାଙ୍କର କେତେକ ପୁରୁଣା ମୂଲିଆ ଭାଗଚାଷ କରି ଆସୁଥିଲେ ସେଥିରେ, ଅନେକ ବର୍ଷରୁ । କ୍ରମେ ଆପଣାର ଜମି ବୋଲି ମଣିନେଇଥିଲେ ନିଶ୍ଚୟ । ଏ ଓକିଲଟି କୋର୍ଟ କେସ୍‌ଟିଏ କରି ଜିତିଗଲା, ତାପରେ ଯାଇଥିଲା ଜମି ଦଖଲ କରି ଚାଷ କରିବାକୁ । ସାଙ୍ଗରେ ନେଇଥିଲା କେବଳ ଚାକର ଟୋକାଟିଏ । ଠେଙ୍ଗା ମାଡ଼ ଦୁହିଁଙ୍କୁ ବାଜିଲା, ଚାକର ଟୋକାଟି ଅଳ୍ପ ମାଡ଼ ଖାଇ ଧାଇଁ ପଳାଇ ଯାଇ ବଞ୍ଚିଗଲା । ରଘୁ ଓକିଲ ସେମିତି ଲହୁଲୁହାଣ ହୋଇ ହିଡ଼ ମୁଣ୍ଡରେ ପଡ଼ିରହିଲେ, ଚାକରଟି ଯାଇ ଦି କିଲୋମିଟର ଦୂର ପୋଲିସ ଥାନାରେ ଖବର ଦେଇ ତାଙ୍କୁ ଡାକ୍ତରଖାନାକୁ ନେଲା । ଡାକ୍ତର ଦେଖିଲା ବେଳକୁ ଓକିଲ ମରି ସାରିଥିଲେ, ଆଜି ସକାଳୁ ପୋଷ୍ଟମର୍ଟମ ପରେ ତାଙ୍କ ଶରୀର ଯାଇ ପହଞ୍ଚିଚି କମଳା ନିଳୟରେ ।'

ଏଲି ଏ ଭିତରେ କମଳା ନିଳୟ ବା ରଘୁ ଓକିଲଙ୍କ କଥା ଭାବିବା ଏକାବେଳକେ ଛାଡ଼ିଦେଇଥିଲା, ମନକୁ ଆସିଲେ ବି ଜୋର କରି ତଡ଼ିଦେଉଥିଲା । ମାନିନେଇଥିଲା ଯେ କମଳା ନିଳୟରେ ତା ଲାଗି ପ୍ରବେଶ ନିଷେଧ, ବାଲ୍ୟକାଳର ଛବିଟିଏ ଥରେ ଦେଖାଯିବା ଲାଗି ବି ସେ ପାଦ ପକେଇ ପାରିବନି ଆଉ ସେ ଘରେ । କେତେବେଳ ପରେ ପଚାରିଲା ସେ ସୁମନ୍ତକୁ 'ରଘୁ ଓକିଲ କାହିଁକି ବା ସେ ଚାଷ ଜମି ଦଖଲ କରିବାକୁ ଯାଇଥିଲେ, ତା ବି ଏତେଦିନ ପରେ ?'

'ଲୋକଟା ସେତେ ଧୂର୍ତ୍ତ ନଥିଲା ଏଲି, ଯେମିତି ତମର ଧାରଣା ହେଇଥିବ । ତା ବିଚାରରେ ସିଏ ସତରେ ସାଧୁ ନାୟକଙ୍କ ଲାଗି ଲଢୁଥିଲା, କାଇଁକିନା ତାଙ୍କରି ସାହାଯ୍ୟରେ ସେ ନିଜେ ପାଠ ପଢ଼ିଥିଲା, ମଣିଷ ହେଇଥିଲା । ଅତଏବ ତା ନିଜ ବୁଦ୍ଧିମତେ ସେ ତାଙ୍କ ସମ୍ପତ୍ତି ଲାଗି, ସ୍ୱତିରକ୍ଷା ଲାଗି ଚେଷ୍ଟାରେ ଲାଗିଥିଲା । ସାଧୁ ନାୟକ ଆଉ ବିଧୁ ନାୟକଙ୍କ ଯାହା କାଗଜ ପତ୍ର ଉଇଲ୍ ଆଦି ଥିବ, ସବୁ ଥିଲା ଏଇ ଓକିଲଙ୍କ ପାଖେ ।'

ଏଲି ଯେତେ ମନା କଲେବି ତା ମନକୁ କୁତୂହଳ ଚାଲିଆସେ ଏବେ ବି, ରଘୁ ଓକିଲର ଘର ଅଭ୍ୟନ୍ତରଟି କେମିତି ଦିଶେ । ସେ ଅଗଣାର ଖପରଢଙ୍କା ବେଦୀଟି, ମଝି ଅଗଣାର ଗୁହାଳ, ପଛ ବାରିର କୂଅ ଚାରିପାଖ ଆମ୍ବ ଆଉ ବରକୋଳି ଗଛ, ସବୁ କେଉଁଭଳି ରହିଚି ଏବେ । ମଝି ଉପର ଘର ଷ୍ଟେଜ ପଲଙ୍କ, ତଳ ମହଲା କୋଣ ଘର ଡ୍ରେସିଂ ଟେବୁଲ, ଟିପି ଉପରର କାଠ ବଖରା, ମେଲା ଘର । ଖରାଦିନେ ଛାତରେ ଶୁଅନ୍ତି କି ରଘୁ ଓକିଲଙ୍କ ପିଲାମାନେ । ଅଚାନକ ମନେପଡ଼ିଗଲା ତାର, ଖରାଦିନେ ମା କେତେ ବ୍ୟତିବ୍ୟସ୍ତ ହେଉଥାଏ, ଖରା ସହିପାରୁନଥାଏ ଜମା । ଦିନସାରା ବେଣାଚେର ପରଦାର ବାସ୍ନାମିଶା ପଙ୍ଖା ପବନରେ କୋଠରୀ ଭିତରେ କଟେ । ସଞ୍ଜ ହେଲେ ଆରମ୍ଭ ହୁଏ ମଉଛବ । ଛାତଧୁଆ, ବିଛଣା ପକା, ଶୋଇ ଶୋଇ ଗପକୁହା । କେବଳ ତାଙ୍କରି ଲାଗି ମଶାରୀ ପଡ଼େ ।

ସୁମନ୍ତ କହିଲା, 'ମୁଁ ଯାଉଚି ଏବେ ତାଙ୍କ ଘରକୁ, କମଳା ନିଳୟ । ରଘୁ ଓକିଲଙ୍କ ସ୍ତ୍ରୀ ମୋର ସମ୍ପର୍କୀୟା । ତମେ ଯିବାକୁ ଚାହିଁବ କି ?'

ଏଲି କହିଲା, 'ହଁ ସୁମନ୍ତ, ମୁଁ ତମସାଙ୍ଗେ ଯିବି ।'

ଟାକ୍ସିଟାଏ ମିଳିଗଲା ଯୋଗକୁ । ଦି ପାଖର କ୍ଷେତ ପଡ଼ିଆ ଦେଖି ଯାଉ ଯାଉ ଦୁହେଁ ପ୍ରାୟ ଚୁପ୍‌ଚାପ ଥିଲେ । ସାଙ୍ଗରେ ଅନ୍ୟ କିଛି ଲୋକବି ଥିଲେ ଟାକ୍ସିରେ । ଏଲି କେତେବେଳେ କହିଲା, 'ଆହୁରି କଣ ମହତ୍ତ୍ୱପୂର୍ଣ୍ଣ କଥା ଥିଲା ବୋଲି କହୁଥିଲ ଯେ ସୁମନ୍ତ ?'

ସୁମନ୍ତ ଟିକିଏ ଇତସ୍ତତଃ ହେଲାଭଳି ଦେଖାଗଲା । କହିଲା, 'ପରେ କହିବି କେତେବେଳେ ।'

ଏଲି ଚୁପ୍ ରହିଲା । ସୁମନ୍ତ କେତେବେଳକେ କହିଲା, 'ମୋ କହିଥିବା କଥା ରେ ତୁମର କୌଣସି ନିର୍ଣ୍ଣୟ କାଳେ ବଦଳିଯିବ, ଏକଥା ଭାବି ମୋର କାଇଁକି ଟିକେ ଭୟ ହେଉଥିଲା ।'

କିଛି ବୁଝି ନପାରି ଏଲି କହିଲା, 'ମୁଁ ତ ଫେରିଯିବା ଲାଗି ପ୍ରସ୍ତୁତ ହେଲିଣି ପ୍ରାୟ । ଆଉ କିଛି ତ ଠିକ୍ କରିନି କାଇଁ ।'

ହେଲେ କିଛି ବୁଝି ନପାରି ବି କିଛି କିଛି ବୁଝିହେଇଯାଉଥିଲା, ଯେ ସୁମନ୍ତ ନିଜେ ବୋଧେ କିଛି ନିର୍ଣ୍ଣୟ ନେଇସାରିଛି ଏ ଭିତରେ, ଯାହା ବିଷୟରେ ସେ ଏଲିକୁ କହିବାକୁ ଚାହୁଁଚି, କିନ୍ତୁ ହଠାତ୍ କରି କହିପାରୁନାଇଁ ।

ବାକି ରାସ୍ତାତକ କଟିଗଲା ଦିହିଁଙ୍କର ଚୁପ୍‌ଚାପ । ସହରର ରାସ୍ତା ଗୁଡ଼ିଏ ପାରିହେଇ ନାୟକ ପଡ଼ାର ଆବୁଡ଼ାଖାବୁଡ଼ା ରାସ୍ତା ପହଞ୍ଚିଲା ବେଳେ ସୁମନ୍ତ କହିଲା, 'ହୁଣ୍ଡା ଲୋକଟାଏ ଥିଲା ଓକିଲ । ନିଜ ସ୍ଥିତି ଅସମ୍ଭାଳ, କିଏ ତାକୁ କହୁଥିଲା ସାଧୁ ନାୟକଙ୍କ ଜମି ସମ୍ଭାଳିବାକୁ । ଏବେ କଣ ହେବ

ତା ସ୍ତ୍ରୀ, ତା ପିଲାଙ୍କ ଭବିଷ୍ୟତ ? ବିଧୁ ନାୟକଙ୍କ ଟଙ୍କା ପଇସା ଯାହା ଫ୍ରିଜ୍ କରାଯାଇଚି ବ୍ୟାଙ୍କ୍‌ରେ, କେହି ନହେଲେ ସିଏ ଲଢ଼ି କିଛି ଗୋଟିଏ ଫଇସଲା କରିଥାନ୍ତା ଅନ୍ତତଃ । ଏବେ ତମ କାହ୍ନୁର ବି ଭବିଷ୍ୟତ ଲାଗି ଆଉ ଆଶା ନାଇଁ ଜାଣ ।'

ଏଲି ପ୍ରଥମ କରି ଶୁଣିଲା ସୁମନ୍ତ ମୁହଁରୁ କାହ୍ନୁ କଥା । ବିଧୁ ନାୟକଙ୍କ ବ୍ୟାଙ୍କରେ ଥିବା ଟଙ୍କା କଥା । ସହର ସାରା ଏଠି କ'ଣ ସବୁ କଥା ଜାଣି ପେଟ ଭିତରେ ଲୁଚେଇ ରଖିଥାନ୍ତି ?'

ଗାଡ଼ିରୁ ଓହ୍ଲେଇ ସେଇ ପ୍ରଥମ ଦିନପରେ ପୁଣିଥରେ କମଳା ନିଳୟ ସାମ୍ନାରେ ଠିଆ ହେଇଥିଲା ଏଲି । ରାସ୍ତା ଉପରେ ଆଜି ଦି'ଚାରିଟି ସ୍କୁଟର, ସାଇକଲ ଠିଆହେଇଚି । ଘର ଭିତରକୁ ଯିବାଲାଗି ପାହାଚ ଉପରେ ଏଣେତେଣେ ହେଇ ପଡ଼ିଚି କେତେଗୁଡ଼ିଏ ଜୋତା ଚପଲ । ସଦ୍ୟ ଜଣେ ଯିଏ ଆସି ସାଣ୍ଡାଲ ଖୋଲିରଖିଲା ତରତର ପାଦରେ, ମୁହଁକୁ ଦେଖି ଏଲିକୁ ଲାଗିଲା କୋଉଠି ଦେଖାହେଇଚି ଯା ସାଙ୍ଗେ । ଭିତରକୁ ପଶିବା ପୂର୍ବରୁ ପିଲାଟି ଏଲି ଆଡ଼େ ଚାହିଁଲା, ନମସ୍କାର କରି ପାଖକୁ ଆସି କହିଲା, 'ଆରେ, ଆପଣ । ଚିହ୍ନିପାରୁଚନ୍ତି ମୋତେ, ମୁଁ ରାଜେଶ ସାହୁ । ଦେଖାହେଇଥିଲା ଏଇଠି, ଆପଣ ଡ. ନାୟକଙ୍କ ବିଷୟରେ ପଚାରୁଥିଲେ । ମୋତେ ଆଜ୍ଞା ପରେ ଜଣାପଡ଼ିଲା କମଳା ନିଳୟ ତାଙ୍କରି ଘର ବୋଲି ।'

ଏଲି କିଛି କହିଲା ନାଇଁ । କହିଲା ନାଇଁ ଯେ ରାଜେଶ ହିଁ ଠିକ୍ କହିଥିଲା ସେଦିନ । ଏଲି ନିଜେ ଜାଣିନଥିଲା ଯେ ଏତେ ବେଶୀ ବଦଳି ଯାଆନ୍ତି ଘର ଓ ମାଲିକ କେତେଟା ବର୍ଷ ଭିତରେ ବୋଲି । ଜାଣି ବି ଜାଣିନଥିଲା, ଦୋଷ ତାଆରି ଥିଲା ।

ଏଲି ସୁମନ୍ତ ପଛେ ପଛେ ଘର ଭିତରକୁ ଯାଉ ଯାଉ ଧୀର ସ୍ୱରରେ କହିଲା ପିଲାଟିକି, 'ହଉ ଚାଲ ପରେ କଥା ହେବା ।'

ଯେଉଁ କୋଠରୀଟି ଦେଇ ସେମାନେ ଭିତରକୁ ପଶିଲେ, ସେଇଟି ତଳ ଶୋଇଲା ଘର ଥିଲା ସେବେ, ସେଇଠୁ ଦାଣ୍ଡ ବାରଣ୍ଡାକୁ କବାଟ ଅଛି ବୋଲି ଏଲିକୁ ଜଣା ନଥିଲା । ଭିତରକୁ ପଶିଲା କ୍ଷଣି ଆଖି ଆଗରେ ଦିଶିଲା ତାର ଚିହ୍ନା ଅଗଣା, ଆମ୍ବଗଛ, ଚଉରା, ବେଦୀ ।

ଲମ୍ବା ବାରଣ୍ଡାଟିରେ ତଳେ ଧଳା ଚାଦର ଘୋଡ଼ାଇ ଶୁଆଯାଇଚି ରଘୁ ଓକିଲଙ୍କ ପାର୍ଥିବ ଶରୀରକୁ । ଚାପା କାନ୍ଦଣା ଶୁଭୁଚି ସ୍ତ୍ରୀ ଲୋକଙ୍କ ଭିତରୁ । କାନ୍ଥକୁ ଆଉଜି ପଥର ମୂର୍ତ୍ତି ଭଳି ଯିଏ ଫାଙ୍କା ଆଖିରେ ବସିଚି, ଆଉ କେତେଜଣ ପଙ୍ଖା କରୁଚନ୍ତି ତାଙ୍କୁ, ସିଏ ନିଶ୍ଚେ ରଘୁ ଓକିଲଙ୍କ ସ୍ତ୍ରୀ । ତାଙ୍କରି ପାଖରେ ସେମିତି ସ୍ତବ୍ଧ ମୁହଁରେ ବସିଚନ୍ତି ବାର ଚଉଦ ବର୍ଷ ପୁଅ ଝିଅ ଦିଇଟି, ଓକିଲଙ୍କ ପୁଅ ଝିଅ ହେବେ ।

ଚାଦର ଭିତରୁ ରଘୁ ଓକିଲର ମୁହଁଟି ଦିଶୁଚି, ଆଗଠାରୁ ପୂରାପୂରି ଭିନ୍ନ । ଗହୀର ରେଖାରେ ଭର୍ତ୍ତି ହାଡୁଆ, ରୋଗଣା ମୁହଁଟାଏ, ମୃତ୍ୟୁକୁ ବି ଭ୍ରୂକୁଟୀ କରିଚି ସତେଅବା । ଗତଥର ଦେଖା ବେଳେ ଏଇ ଲୋକଟିର ଯେଉଁଭଳି ଚିତ୍ରଟିଏ ଏଲି ମନରେ ଆଙ୍କିଦେଇଥିଲା, ତାଠାରୁ କେତେ ଭିନ୍ନ ଲାଗୁଚି ସେଇ ମଣିଷଟିର ମୁହଁ, ଆଜି ତା ଅନୁପସ୍ଥିତିରେ ।

ପୁରୀ । ଦି'ଦିନ ରହଣୀ ଏଠି । ତାପରେ କଲିକତାରୁ ଉଡ଼ାଜାହାଜରେ ଏଲି ଚାଲିଯିବ ଏ ଦେଶ ଛାଡ଼ି, ଫେରିଯିବ ପୁଣି ତା'ର ପରିଚିତ ସହରକୁ, ହେଲା ବା ଦିନକୁ ଦିନ ତା ବି ଅପରିଚିତ ପାଲଟି ଯାଉଥାଉ । ଏଇଠି, ଦୂରରୁ ଯେଉଁ ମାଟି ଦିଶୁଥିଲା କେଡ଼େ ଆପଣାର, କେତେଦିନୁ ତାକୁ କୋଳେଇ ନେବାକୁ ବାହୁମେଲି ବସିଚି ବୋଲି ମନରେ ବିଶ୍ୱାସ ଆସୁଥିଲା, କାହିଁ ସେଭଳି କିଛି ଆପଣାପଣ ମିଳିଲା ନାହିଁ ତ । ବରଂ ମନରେ ସାଇତା ଛବିସବୁ ବଦଳିଗଲା ଗୋଟି ଗୋଟି କରି, ଆରୋପି ହେଇଗଲା ତା ଉପରେ ଆଉରି ଗୁଡ଼ିଏ ଗୋଳିଆ ମୋଳିଆ ଚିତ୍ର ।

ଯାଉ ଯେମିତି ଚାଲିଗଲା ଏଇ ଦିନ କିଛି । ମନରେ ଆଶା ଥିଲା ଥରେ ଆସିବାକୁ, କିଛି ଦିନ ବିତାଇବାକୁ ପୁଣିଥରେ । ତେବେ ଦିନମାନ ଧରିରଖି ତ ହୁଏନାହିଁ, ଗତକାଲିର ନୁହେଁ କି ଆଜିର ନୁହେଁ । ଏତେ କାହିଁକି ଆଉ କାତରପଣ । ଦେଖିବାକୁ ମନେହୁଏ ଥରେ, ଅଧାରେ ରହି ଯାଇଥିବାପରି ମନେହୁଏ ଯେଉଁ ଛବିମାନ । ପୁଣି ଆଖିରୁ ଉହାଡ଼ ହେଇଯାଇଥାଏ ଯେଉଁ ଅଧାଦେଖା ପ୍ରିୟ ଚିତ୍ର କେତୋଟି । ଥାଉ । ଯେତିକି ହେଲା ଥାଉ ଏଥର ।

ନୂଆ ଛବି କୋଟୋଟି ତିଆରି ହୁଏ । ଆଉ କିଛି ଛବି ତିଆରି ହେବାର ସମ୍ଭାବନା ଦିଶେ । ଆଷାଢ଼ ଆକାଶର କଳାମେଘ କେବେ ନ ବର୍ଷି ଭାସିଚାଲିଲା ଭଳି ଆପେ ଧୀରେ ଅବା କେବେ ଲିଭିଯାଏ ସେ । ତିଆରି ହୋଇନଥିବା ସେ ଛବି ବି ମନେ ରହିଯାଏ ।

ପୁରୀ ଆସିବାର କାର୍ଯ୍ୟକ୍ରମ ଦିନ କେଇଟାରେ ଠିକ୍ କରିପକାଇଥିଲା ଏଲି । କେତେ ପୂର୍ବ ପରିଚିତଙ୍କୁ, ସମ୍ପର୍କ ଭୁଲିସାରିଥିବା ବନ୍ଧୁ ବାନ୍ଧବଙ୍କୁ ଖୋଜି ପଚାରିଲା ପରେ ଶେଷକୁ କାହ୍ନୁର ଖବର ତାକୁ ମିଳିଥିଲା । ଖିଆଲଟି ଆସୁଥିଲା ତାର, ଯେ ସୁମନ୍ତକୁ ସାଙ୍ଗରେ ଯିବାକୁ ଡାକିବ କି । କେତେଦିନୁ ସୁମନ୍ତ କହିଆସୁଚି, ଯେ ଏଲିର ଡାକିବା ପଦେ କୁ ସେ ଅପେକ୍ଷା କରି ରହିଚି ବୋଲି । ଡାକିବ କି ଏଲି । ସୁମନ୍ତର ଡାକରାର ଉତ୍ତର ଦେବାକୁ ସାହସ କରିବ, ସେ ଦାୟିତ୍ୱ ନେବ କି ଏଥର । ହେଲେ ପୁଣିଥରେ କେତେଦିନ ଧରି ସୁମନ୍ତର ଦେଖା ନଥିଲା ।

ଆଉ ବେଶିଦିନ ବିତିବାକୁ ନଦେଇ ଏଥର ଏକୁଟିଆ ବାହାରିପଡ଼ିଲା ଏଲି । ଆସିବାର ପୂର୍ବଦିନ ସୁମନ୍ତର ଚିଠିଟିଏ ଆସିଲା ଡାକରେ । ବିଚିତ୍ର ଗୋଟିଏ ଭୟ ହେଉଥିଲା ଏଲିର, ଚିଠିଟି ଖୋଲିଲା ବେଳେ । ଲଫାପା ଚିରି ଭିତରୁ କାଗଜଟିର ଭାଙ୍ଗ ଖୋଲିଲା ବେଳେ ତା ହାତ ଥରୁଥିଲା । ଏ ଭିତରେ ଏମିତି କେତେ ଆଶା ଆସିଯାଇଥିଲା କି ତା ମନକୁ ଯେ ଏବେ ଡରୁଥିଲା ସେ ଆଶାଭଙ୍ଗକୁ ଏମିତି ?

ସୁମନ୍ତ ଲେଖିଥିଲା, ସାଧାରଣ ସମ୍ଭାଷଣ ଟିଏ ପରେ, 'ମନେଅଛି ଏଲି, ଥରେ ତୁମେ ମୋ ଗାର୍ଲଫ୍ରେଣ୍ଡ କଥା ପଚାରିଥିଲ । ଟାଳିବାକୁ ଚେଷ୍ଟାକରି ବି ମୁଁ ପାରିନଥିଲି । କହିଦେଇଥିଲି ଯେ ଝିଅଟି ମୋ ହାତ ଧରି ବାଟ ଚାଲିବା ଅପେକ୍ଷା ତା ବାପାଙ୍କ ଦେଖେଇଲା ବାଟରେ ଚାଲିବାକୁ ଠିକ୍ ମଣିଲା । ଜାଣ, ସେଇ ଝିଅଟି ପୁଣି ସାହସ ବାନ୍ଧି ତା ବାପାଙ୍କୁ ଅମାନ୍ୟ କରିବାକୁ ସ୍ଥିର କରିଚି, ମୋ ହାତ ଧରି ଖାଲ ଢିପ ବାଟରେ ଚାଲିବାକୁ ଶ୍ରେୟସ୍କର ମଣିଚି, ତା ମା ବାପାଙ୍କ ନିରାପଦ ଘରୁ

ବାହାରିଆସିବାକୁ ସାହସ କରିଚି । ତାର ଫୋନ୍‌ଟିଏ ହିଁ ମୋର ସବୁ ଭବିଷ୍ୟତ ପନ୍ଥା ନିର୍ଣ୍ଣୟ କରିବାଲାଗି ଯଥେଷ୍ଟ ଥିଲା । ମୁଁ ଉଚିତ୍ କରୁଚି କି ନାହିଁ ଜାଣିନାହିଁ ଏଲି । ହେଲେ ତମର ଶୁଭେଚ୍ଛା, ସ୍ନେହ ଉପରେ ଆସ୍ଥା ରଖୁଚି ।'

ସେଦିନ ଅନେକ ରାତି ଯାଏଁ ଚେଇଁଥିଲା ଏଲି, ଜିନିଷ ସବୁ ସଜାଡ଼ିଲା ତାର ଦୁଇଟି ସୁଟ୍‌କେଶରେ । କେତେ ଲୁହ ଆହୁରି ଥିଲା ତା ଆଖିରେ, ଏ ମାଟିରେ ଗୋଡ଼ ଦେଲା ପରେ ଆହୁରି କୋହ ଲାଗି ନୂଆ କାରଣ ବି ନିଜ ପାଖେ ଜୁଟାଇ ଦେଇଥିଲା ସେ କେତେବେଳେ, ଭାବି ଭାବି ନିଜେ ଆଶ୍ଚର୍ଯ୍ୟ ହେଉଥିଲା ।

ସକାଳୁ ସମୁଦ୍ର କୂଳରେ ଏକୁଟିଆ ଖୁବ୍ ଘେରାଏ ବୁଲୁଥିଲା । ପିଲାଦିନେ ମାଆ ଆଉ ବବିଙ୍କ ସାଙ୍ଗେ ଏମିତି ସେ ବୁଲିଥିଲା ଥରେ ଏଇ ସମୁଦ୍ରକୂଳରେ ଅନେକ ବେଳ, ବାପା ଆଉ ଜେଜେ ଯାଇଥିଲେ ମନ୍ଦିର ଦର୍ଶନକୁ । ଆଜି ଅନେକ ଲୋକଙ୍କ ଭୀଡ଼ ଭିତରେ ଏକୁଟିଆ କୂଳେ କୂଳେ ଅନେକ ବାଟ ଚାଲିଥିଲା ସେ । ସମୁଦ୍ର ଢେଉରେ ବାରମ୍ବାର ପାଦ ଧୋଇହେଇ ଯାଉଥାଏ, ପୁଣି ଢେଉ ଫେରିଯାଏ, ଦର୍ପଣ ପରି ଓଦା ବାଲିରେ ଆସ୍ତେ ଥାପିହେଇଯାଏ ପାଦ । ଚାଲୁ ଚାଲୁ ସମୁଦ୍ରକୁ ଅନାଏ ସେ, ଭାବେ କାହିଁ ଥିବ ତା'ର ଅନ୍ୟ ତଟ ମାନ, କେତେ କେତେ ଅନ୍ୟ ଦେଶ ଅନ୍ୟ ମାଟିକୁ ଛୁଉଁଥିବ । କେଉଁ ମାଟିରେ ସବୁ ଏଣିକି ଏଲିର ପାଦ ପଡିବ, ପୁଣି ଛାଡ଼ି ଯିବାକୁ ହେବ । ଏଇ ମାଟିକୁ ଆଉ ଏଲି ଫେରିବ କି ନାହିଁ କିଏ ଜାଣେ । ଗତଥର ଯେଉଁ ମୁହଁ ମାନଙ୍କୁ ଛାଡ଼ିଯାଇଥିଲା, ଯେଉଁ ସବୁରୁ ଅନେକେ ହଜିଗଲେ, ଆଉକିଛି ବଦଳିଗଲେ । ସେମିତି ଏଥର ଛାଡ଼ିଯାଉଥିବା ଛବିସବୁ ସାଙ୍ଗେ ଆଉ କେବେ ପୁଣି କେମିତି ରୂପନେଇ ଭେଟହେବ କେଜାଣି ।

ଅନାହୂତ କଥାଟି ଘଟିଲା ଠିକ୍ ସେତେବେଳେ । ସମୁଦ୍ର ବାଲିରେ ଦୂରରୁ ଛୋଟ କାଟିଆ ଶୋଭାଯାତ୍ରା ପରି ଦଳଟିଏ ଆସୁଥିବାର ଦେଖିଲା ଏଲି । କିଏ ଜଣେ ଧଳା ଲୁଗା ପିନ୍ଧି ସନ୍ୟାସିନୀ ହେବେ, ଆଗେ ଆଗେ ଚାଲୁଥାନ୍ତି, ତାଙ୍କ ପଛେ ପଛେ କୀର୍ତ୍ତନ କରିକରି ଚାଲିଥାନ୍ତି ଦଳେ ଲୋକ । ଏଲି କଡ଼କୁ ଠିଆହେଇଯାଇ ତୁନି ହେଇ ଦେଖିଲା, ଅଧିକାଂଶ ବୁଢା, ଅଥବା ପୌଢ଼ ବୟସର ଲୋକେ ମଗ୍ନ ହେଇ ତାଳି ବଜେଇ ଝୁଲି ଦୋହଲି ଚାଲିଚନ୍ତି କେତେ ଗଦ୍‌ଗଦ ଭାବରେ । ତାଙ୍କରି ଭିତରୁ ଜଣେ ଏଲିକୁ ଦେଖି ରହିଗଲା, ପୁଣି ହାତ ହଲେଇଲା ଚିହ୍ନା ଭଙ୍ଗୀରେ ।

ହାତ ଯୋଡ଼ି ଆସୁ ଆସୁ ଖଣ୍ଡେ ଦୂରରୁ ସେ ଡାକଦେଲେ 'ଡ. ପ୍ୟାଟ୍ରିକ୍, ଆପଣ ଏଠି ଯେ ?'

ଏଲି ଚିହ୍ନିଲା, ଆରେ, ଇଏ ତ ବିଶୁ ଡାକ୍ତର । ଧୋତୀ କୁର୍ତ୍ତା ପିନ୍ଧିଛନ୍ତି, କପାଳରେ ଚନ୍ଦନ ଟୀକା । ପୂର୍ବରେ ଯାହା ଟିକିଏ ସାମାଜିକ ଗାମ୍ଭୀର୍ଯ୍ୟ ଥିଲା, ଆଦୌ ନାହିଁ । କହିଲେ, 'ମୋ ଗୁରୁଙ୍କ ଦର୍ଶନ ଲାଗି ଆସିଥିଲି । ଆଉ ଆପଣ ?'

ଏଡ଼େ ଖୁସି ଦିଶୁଥିଲେ, ସତେକି ସାନ ପିଲାଟିଏ ଖେଳ ପଡ଼ିଆକୁ ଆସିଚି । ଏଲି ପଚାରିଲା, 'ଗୁରୁ ? ସିଏ କିଏ ?'

'ଜଣେ ସନ୍ୟାସୀ । ଋଷିକେଶରୁ ଆସିଚନ୍ତି ।'

ତାପରେ ଏଲି ବୁଝିଲା ତାର ପଚାରିବାର ନଥିଲା । ଗୁରୁ ଶିଷ୍ୟ ପରମ୍ପରା ବିଷୟରେ ଭାଷଣଟିଏ ଦେଇ ବସିଲେ ସିଏ । ଏଲି କହିଲା, 'ମୁଁ ପଢ଼ିଚି କିଛି କିଛି ଏବିଷୟରେ । ଏବେ କିନ୍ତୁ ମୋ ପାଖେ ସମୟ ନାହିଁ, ଯିବାକୁ ଅଛି କାମରେ ।'

'ଓ, କାମରେ ଆସିଚନ୍ତି ପୁରୀକୁ । ତେବେ ମନ୍ଦିର ଦର୍ଶନ କରିବେ ନିଶ୍ଚୟ ?'

'କହିପାରୁନି । ମୋତେ ପିଲାଦିନେ ମନ୍ଦିର ଭିତରକୁ ଯିବାକୁ ବାରଣ କରାଯାଉଥିଲା ତ ।'

ନିରାଶ ହେଲାଭଳି ଦେଖାଗଲେ ବିଶ୍ବ ଡାକ୍ତର । ହେଲେ ମୁହୂର୍ତ୍ତକେ ପୁଣି ଉତ୍ସାହରେ ପଚାରିଲେ, 'ସମୁଦ୍ରରେ ସୂର୍ଯ୍ୟୋଦୟ ଦେଖିଲେ ତ ?'

'ହଁ । ଆଗରୁ ଦେଖିଚି ।'

'ଏଇତ । ତାହେଲେ ନୂଆକରି ଆଉ ଦେଖିଲେ କ'ଣ ? ସ୍ମୃତି ସବୁ ପୋଛିପକାନ୍ତୁ ମନରୁ । ପୁଣି ଅନାନ୍ତୁ ଭଲକରି ସମୁଦ୍ରକୁ, ସୂର୍ଯ୍ୟକୁ...'

କୌଣସି ମତେ ତାଙ୍କଠୁ ଖସି ପଳେଇଆସିଲା ଏଲି ।

ସେଇଠୁ ଯାଇଥିଲା ସେ ମନ୍ଦିରକୁ । ସାଲୁଆର କାମିଜ ପିନ୍ଧିଥିଲା ସେ ଆଜି, କପାଳରେ ଟିକିଲିଟିଏ ଲଗାଇଥିଲା, ବେକ ଉପରଯାଏ ବାଳ ବଢ଼ିଚି ଏ ଭିତରେ । କେହି ତାକୁ ରୋକିଲେ ନାହିଁ ଆଜି ମନ୍ଦିର ସିଂହଦ୍ୱାର ପାଖେ । କାହାକୁ କିଛି ନପଚାରି ସିଧା ଚାଲିଗଲା ସେ ଭିତରକୁ । ବୁଲି ବୁଲି ଦେଖିଲା ସବୁ ବେଢ଼ା ଭିତରଯାକ । କେତେ ନାହିଁ କେତେ ଥର ପିଲାଦିନର ଘଟଣାଟି ମନେପଡ଼ିଚି ତାର, ବିବ୍ରତ କରିଚି ତାକୁ ଗତ ଅନେକ ବର୍ଷରେ, ହେଲେ ମନ୍ଦିର ଭିତରଟି ଦୃଶ୍ୟ କଥା ନା ସେ ପଚାରିଚି କାହାକୁ ନା କଳ୍ପନା କରିଚି କେବେ । ସ୍ମୃତିର ଅଂଶ ହୋଇ ବି ଅନୁଭବର ବାହାରେ ଥିଲା ଯାହା, ଆଜି ଅନାୟାସ ହାତ ପାଆନ୍ତାକୁ ଆସିଚି । କେଉଁ ଯୁଗର ଓରମାନ ମେଣ୍ଟାଇ ବୁଲି ବୁଲି ହୋଟେଲକୁ ଫେରିଲା ବେଳକୁ ସୂର୍ଯ୍ୟ ମୁଣ୍ଡ ଉପରେ ଉଠିସାରିଥିଲେ ।

॥୨୬॥

ସୁନ୍ଦର ହୋଟେଲଟି । ଠିକ୍ ସମୁଦ୍ର କୂଳରେ । ଲାଉଞ୍ଜରୁ ସମୁଦ୍ର ଦିଶେ । ଲହଡ଼ି ଗର୍ଜନ ଶୁଭେ । ସେଇଠି ଦେଖିଲା ସେ ପିଲାଟିକି, ଦଳେ ଟୋକାଙ୍କ ଭିତରେ ହୋ ହୋ ହେଉଥିଲା ସିଏ ବି । ଦେଖିଲା ବେଳକୁ ଏଲିକୁ ଲାଗିଥିଲା, ଏଇ ବୋଧେ ସେଇ ଯାହାକୁ ସେ ଖୋଜୁଥିଲା ଏତେଦିନୁ । କାହ୍ନୁ ।

ଦଳେ ଟୋକା, ଝଙ୍କାଏ ପବନ ପରି ପଶିଆସିଲେ ହୋଟେଲ ଭିତରକୁ । ବେଶଭୂଷାରୁ ଜାଣିହେଉଥିଲା, ହୋଟେଲର ପରିଚିତ ହେଲେ ବି ଏମାନେ କେବେହେଲେ ଭଦ୍ର ଗ୍ରାହକ କିମ୍ବା ସ୍ୱାଗତଯୋଗ୍ୟ ଅତିଥି ନୁହେଁନ୍ତି । ତଥାପି ସେମାନଙ୍କ ସ୍ୱାଗତ ହେଉଚି । ଆତିଥ୍ୟ ହେଉଚି ଅନ୍ୟ ସମସ୍ତଙ୍କଠାରୁ ବେଶୀ । ପାଖରେ ଠିଆହେଇ ଆଦେଶ ଲାଗି ଅପେକ୍ଷା କରିଥିବା ପରିଚାରକଙ୍କ ମୁହଁରେ ଯେଉଁ ନିକୁଚା ହସ, ତା କେବେ ସାଧାରଣ ଗ୍ରାହକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଆଖି ଆଉ

ହୁଭଙ୍ଗୀ ଠାରୁ ଆରମ୍ଭ କରି ସେ ଯୁବକମାନଙ୍କ ହାତ ବାହୁ ହଲାଉବାର ଠାଣୀ, କପାଳରୁ ଝୁଲିଆସିଥିବା ବାଳକୁ ଛାଟିବା ଢଙ୍ଗଠାରୁ ତାଙ୍କ ଜୋତାମିଶା ପାଦକୁ ଟେବୁଲ ଉପରେ ଥୋଇବାର ଦର୍ପ କହିଦେଉଥିଲା ଯେ ତାଙ୍କର ଭିନ୍ନ କିଛି ପୃଷ୍ଠଭୂମି ରହିଛି ।

ତାଙ୍କରି ଭିତରେ ବସିଥିଲା ସେ, ସାବନା ହେଇ ପିଲାଟି, ମୁହଁର ପିଲାଳିଆ ବୟସକୁ ଦେଖିଲେ ଶରୀରଟି ବେଶୀ ଟିକିଏ ବଳିଷ୍ଠ, ସମୟଠୁ ବେଶୀ ବଢ଼ିଯାଇଥିଲା ପରି । ଦଳଟି ଯାକ ନିଃସନ୍ଦେହରେ କେଉଁଠି କସରତ ଆଦି କିଛିରେ ମାତିଛନ୍ତି, ତାଙ୍କ ବପୁବଳ ହାବଭାବ ସବୁ ସେଇଆ କହୁତି । ଅନ୍ୟ ଗ୍ରାହକଙ୍କ ବରାଦକୁ ପଛକୁ ରଖି ଆଗନ୍ତୁକ ଦଳଟିର ଟେବୁଲକୁ ଯାବତୀୟ ବ୍ୟଞ୍ଜନ ଆଣି ଦିଆଯାଉଥିଲା ଅବିଳମ୍ବେ । ଏଲି ପନ୍ଦର ମିନିଟ ଚା ଜଳଖିଆକୁ ଅପେକ୍ଷା କଲାପରେ ନିଜ ରୁମ୍‌କୁ ଫେରିଯାଇଥିଲା । ତା ପାଖରେ କାହ୍ନୁର ଠିକଣା ଅଛି, ଫୋନ୍ ବି ଅଛି । ଯାଇ ତାକୁ ଭେଟିବାକୁ ହେବ ଆଜି ।

ଚା' ଆଣିଥିବା ହୋଟେଲ ଟୋକାକୁ ପଚାରିଲା ସେ, 'କିଏ କି ସେମାନେ ? ସେଇ ଟୋକା ଦଳଟି ?'

ଦାନ୍ତ ଦେଖାଇ ଉତ୍ତର ଦେଲା ଟୋକାଟି, 'ଚେହେରାରୁ ବୁଝିଲେନି ଆଜ୍ଞା । ଦାଦା ପରା ସବୁ ।'

'ମାନେ ?'

'ରାଏ ସାହେବଙ୍କ ଚାମଚ ସବୁ ପରା, ଟ୍ରେନିଂ ପାଇ ବଢ଼ୁଚନ୍ତି ଗଳି ଗଳିରେ । ପଇସା ବାଲାଙ୍କ ଅଡ଼ର ପାଇଲାକ୍ଷଣି କାମ କରିବେ । ସେ ଯୋଉ କାମ ହେଉ ।'

'କିଏ ସେ ଦେଉଚି ଏମିତି କାମ ଏଠି ?'

କପ୍‌ରେ ଚା ଢାଳୁ ଢାଳୁ କହିଲା ସେ 'ସମସ୍ତଙ୍କର କାମ ପଡ଼େ ଆଜ୍ଞା, ଆଜିକାଲି ଶୀଘ୍ର ମନମାଫିକେ କାମଟିଏ କରିବାକୁ ଇଛାକଲେ ଦରକାର ଏଇପରି ତାକତବାଲା ଟୋକଦଳ । ତାଙ୍କରି ଭିତରେ ପୁଣି ଲିଡର ଅଛନ୍ତି , ସେମାନେ ଗଳି ଗଳି ବୁଲି ଗଜା ବାଛିବେ, କୁସ୍ତି କସରତ ଶିଖାଇ ଟ୍ରେନିଂ ଦେବେ ।'

ହୋଟେଲ ଟୋକା ରଖିଦେଇ ଯାଇଥିବା ଚା' ଜଳଖିଆ ଟେବୁଲ୍ ଉପରେ ଥଣ୍ଡା ହେଇଗଲା । ଏଲି ବିଛଣାରେ ଚିତ୍ ହୋଇ ଶୋଇ ଛାତରେ ଘୁରୁଥିବା ପଙ୍ଖାକୁ ଅନେଇଥିଲା । ସଦ୍ୟ ଭେଟିଥିବା ସତ୍ୟର କଠୋରତାକୁ ହୃଦୟଙ୍ଗମ କରୁଥିଲା ଧୀରେ ଧୀରେ ।

ଉପରଓଳି ଖରା ନଇଁନଥାଏ ଆଉରି, ଏଲି ବାହାରିପଡ଼ିଲା । କାହ୍ନୁର ଘର ଠାବ କରିବାକୁ ହେବ । ତାକୁ ପାଳିଚନ୍ତି ଯିଏ, ଅରୁଣା ଆଉ ତା ସ୍ୱାମୀ, ସେମାନଙ୍କୁ କହିବାକୁ ହେବ କଥାଟି ।

ଅରୁଣା ସମ୍ପର୍କରେ କେତେ ପ୍ରକାର କଥା ଶୁଣିଚି ଯେ ଏଇ ଗତ ଦିମାସ ରହଣୀ ଭିତରେ । କାହ୍ନୁ ବିଷୟରେ ବି କିଛିକିଛି । ଖାଲି କହିବାକୁ କେହି ପ୍ରସ୍ତୁତ ନଥିଲେ, କାହ୍ନୁ ଜୀବନରେ ହସ୍ତକ୍ଷେପ କରିବାକୁ ବି ନୁହେଁ । ଏଲି ରିକ୍ସାଟିଏ ନେଇ ରାସ୍ତା ରାସ୍ତା ହେଇ ଖୋଜୁଥିଲା, ଭାବିଯାଉଥିଲା ବି ଯେ ଠିକ୍ କେତେଦୂର ଯାଏ ତାର କର୍ତ୍ତବ୍ୟ, କେଉଁଠାରୁ ଆରମ୍ଭ ହେବ ହସ୍ତକ୍ଷେପ ।

ପଚାରିବାରୁ ରାସ୍ତାର ଲୋକଟି ହଁ କଲା, ଏଇ ସେ ଗଳି । ଗଳି ରାସ୍ତାକୁ ପ୍ରାୟ ଆବୋରିପକାଇ କଣ୍ଢେସା କାରଟି ଖଣ୍ଡେ ବାଟରୁ ଦିଶୁଥାଏ, ପୁରୁଣା ହେଇ ଏଠି ସେଠି ଖାପଛଡା ରଂଗ ଜଣା ପଡ଼ି ଯାଉଥାଏ ପଛକେ । ଏଇ ସେ ଗାଡ଼ିଟି ନିଶ୍ଚେ, ଏତେ ଚର୍ଚ୍ଚା ଯାଉ ଏଳି ଶୁଣିଥିଲା । ବିଧୂ ନାୟକ ଗାଡ଼ିଟି କିଣିପକାଇ ସେତେବେଳେ ଯାହା ପଇସା ହାତରେ ଥିଲା ପ୍ରାୟ ସାରିଦେଇଥିଲେ ।

ଗଳିର ଆଉ ପାଞ୍ଚଟା ଘର ପରି ଛୋଟିଆ ସାଧରଣ ଘରଟିଏ, ବାହାରେ ବୋର୍ଡ ଲଗାଯାଇଚି, 'ଜସ୍ମିନ୍ ହର୍ବାଲ୍ ବିଉଟୀ ପାର୍ଲର' । ଏ ଗଳିକୁ ଦେଖିଲେ ଏଳିର ବିଶ୍ୱାସ ହେଉନାହିଁ ଏଠି ବିଉଟୀ ପାର୍ଲରକୁ ଗ୍ରାହକ ଆସୁଥିବେ । ସୌନ୍ଦର୍ଯ୍ୟ ବଢ଼ାଇବା ଲାଗି ପଇସା ଖର୍ଚ୍ଚ କରୁଥିବେ ଗୃହିଣୀ ମାନେ, ବା ଏଭଳି ଘର ଝିଅମାନେ ।

କଲିଂ ବେଲ୍‌ରେ ହାତ ନ ବାଜୁଣୁ ଦରଆଉଜା କବାଟ ସେପଟୁ ଶୁଭିଲା, 'ଆସ, ଭିତରକୁ ଚାଲିଆସ ।' ଭିତରେ ପାଦ ଦେଲା ମାତ୍ରେ ଯେଉଁ ସାନ କୋଠରୀଟିଏ ସେଇଟି ହିଁ ସମୁଦାୟ ଦୋକାନ । କବାଟ ପାଖେ ଠିଆ ହେଇ ସାମ୍ନା କାନ୍ଥରେ ଏ ମୁଣ୍ଡରୁ ସେମୁଣ୍ଡ ଯାଏଁ ଦର୍ପଣ, ତା ଆଗରେ ପଡ଼ିଚି ତିନୋଟି ଚଉକୀ । ସେଥିରୁ ଦୁଇଟିରେ ଦୁଇଜଣ ନାରୀ ବସିଚନ୍ତି, ଜଣେ ଶାଢ଼ୀ ଓ ଅପର ସାଲୁଆର କମିଜରେ । ସ୍ତ୍ରୀଟିଏ ଠିଆହେଇ ଜଣଙ୍କର ମୁହଁରେ ଲେପ ବୋଳି ଦେଉଚି, ବସିଥିବା ଚଉକୀ ପଛପାଖକୁ କୁଶନ ଓ ସାନ ତକିଆକୁ ଆଉଜିଯାଇଚି ଗ୍ରାହକଟି ଯଥାସମ୍ଭବ ଶୋଇବା ଠାଣୀରେ । ଆରେକର ମୁଣ୍ଡ ବାଳରେ ଝିଅଟିଏ ମୋଟା ବ୍ରଶ୍‌ଟିଏ ଧରି କାଦୁଅ ଭଳି କିଛି ଗୋଟାଏ ଲଗାଇଦେଉଚି । ଦର୍ପଣ ତଳକୁ ଥିବା ଲମ୍ବା ପଟା ଥାକଟିରେ ନାନାଦି ପ୍ରସାଧନ ସାମଗ୍ରୀ, ଡାକ୍ତରୀ ଜିନିଷ ପରି ଦିଶୁଥିବା କେତେକ ଜିନିଷ, ତୁଳା, କଚୁରୀ ଆଦି । ଗୋଟିଏ କଣରେ ପ୍ଲାଷ୍ଟିକ ଫୁଲ ତୋଡ଼ା । ଉପର କାନ୍ଥରେ ମାଳା ପିନ୍ଧିଥିବା କିଏ ଜଣେ ସାଧୁ ବାବାଙ୍କ ଫଟୋ । ବାଁ ହାତି କାନ୍ଥ ଆଲମାରୀଟିଏରେ ଠାକୁର, ବିକ୍ରି ପାଇଁ ବୋଧେ ରଖା କ୍ରିମ ପାଉଡ଼ର ଡବା ଶିଶି ଗୁଡ଼ିଏ ଓ କିଛି କାଗଜପତ୍ର । ଗ୍ରାହକଙ୍କୁ ଦେଖା ଚାହାଁ କରୁଥିବା ଦିଜଣ ସ୍ତ୍ରୀ ଲୋକଙ୍କ ଭିତରୁ ଯିଏ ଦିହାତ ପାପୁଲିରେ ପିଠଉ ଭଳି କଣ ମେଞ୍ଚାଏ ନେଇ ଅଧା ଯୋଡ଼ା ହାତରେ ସ୍ୱାଗତ କଲା, ସିଏ ନିଶ୍ଚୟ ଅରୁଣା ।

'ଅଞ୍ଜୁ ମାଉସୀ ନିଶ୍ଚେ ତମେ ? ଡକ୍ଟର କ'ଣ ତ... ?'

ଭାବିଲା ପରି ହେଇ ପାଖରେ ଖାଲି ପଡ଼ିଥିବା ଗ୍ରାହକ ଚଉକୀଟିକୁ ହାତ ଦେଖାଇଦେଲା ସୁଠାମ ସୁନ୍ଦରୀ ସ୍ତ୍ରୀ ଟି, ପିଲାଦିନେ ଏଳି ଦେଖିଚି ନିଶ୍ଚୟ, ଏବେ ଚିହ୍ନା ଚିହ୍ନା ଲାଗୁଚି ଚେହେରାଟି । ହଁ କରି ବସୁ ବସୁ ଅରୁଣା ଉଚ୍ଛୁଳା ହସ ହସି କହିଲା, 'କଣ ତ ତମ ନାଁ ଆଜିକାଲି, କ'ଣ ଗୋଟାଏ ସାହେବ ନାଁ ନାଇଁ ?'

ଏଥର ଏଡ଼େ ଜୋର୍ ହସିଲା ଅରୁଣା ଯେ ସତେକି ଥାକ ଉପରୁ କାଚବାସନ ଗୁଡ଼ାଏ ପଡ଼ି ଝଣ୍‌ଝାଣ ଭାଙ୍ଗିଯାଉଚି । ସାଙ୍ଗରେ କାମ କରୁଥିବା ପରିଚାରିକା ପରି ଝିଅଟିକୁ କହିଲା, 'ଜାଣିଚୁ ଇଏ ମୋର ମାଉସୀ ହେବେ । ବିଲାତରେ ଥାଆନ୍ତି, ମୋ ମାଆଙ୍କ ନିଜ ମାମୁଝିଅ ଭଉଣୀ, କିନ୍ତୁ ଅଧା ଇଂରେଜ, ମାନେ ତାଙ୍କ ମାଆ ଜଣେ ମେମ୍ ।'

ଆଉ କିଛି ହସ । ପୁଣି ଚଉକୀର ମୁହଁଟିରେ ପିଠଉ ପ୍ରସାଧନ ବୋଳୁ ବୋଳୁ ଏଲିକୁ କହିଲା, 'କିଛି ଭାବିବନି, କାମରେ ଲାଗିଚି । ତମ ଫୋନ୍ ପାଇଲା ବେଳୁ ଭାବୁଚି ତମ କଥା, ହେଲେ କହିବାକୁ ଭୁଲିଗଲି ଯେ ମୋ ପାର୍ଲର ବନ୍ଦ ହୁଏ ସଞ୍ଜ ଛଅଟାରେ ।'

ଏଲି କହିଲା, 'କିଛି ଯାଏଆସେ ନାହିଁ । ତମେ କାମ କର, ମୁଁ ବସିଚି । କାହ୍ନୁ ଅଛି ଘରେ ?'

'କାହ୍ନୁ ପରା ଯାଇଚି ଖେଳିବାକୁ । ସେ କ'ଣ ସଞ୍ଜ ଆଗରୁ ଫେରେ କି ? ଆଗରୁ ତାକୁ କହିଥିଲି ତମର ଆସିବାର ଅଛି ବୋଲି । ହେଲେ ଆଜି ଆଉ କହିବାକୁ ସବୁିଧା ହେଲାନି ।'

ଯାପରେ ତାର ଦି ଗ୍ରାହକଙ୍କ ଉପରକୁ ତାର ଧ୍ୟାନ ଗଲା । 'ଓଃ, ଏ ବ୍ରଣ ଗୁଡ଼ାଏ ତ ତମ ଚେହେରା କୁ ନଷ୍ଟ କଲା । ଆମ ଚନ୍ଦନ ଲେପ ଟା କିଣି ଲଗାନ୍ତ ଯଦି ନିୟମିତ, କୁଆଡ଼େ ପଳାନ୍ତା, ମାସକରେ ଭୁଲିଯାନ୍ତ ବ୍ରଣ କି ଜିନିଷ । ତମର ତ ବିଶ୍ୱାସ ନାଇଁ ଆମ ହର୍ବାଲ ଜିନିଷରେ, ସେଇ ଟିଭି ଦେଖି ବିଦେଶୀ ଜିନିଷ କିଣୁଥା ବେଶୀ ପଇସା ଦେଇ, ଚେହେରାଟାକୁ ବିଗାଡୁଥା ।'

ଚଉକୀ ଉପର ମୁହଁଟି କ'ଣ କହିବାକୁ ଚେଷ୍ଟା କଲା ଲେପର ଖୋଳ ଭିତରୁ, ସାଙ୍ଗେ ସାଙ୍ଗେ ଅରୁଣା ପାଟିକଲା, 'ନା ନା ପାଟି ଖୋଲିବନି ଜମା । ମୁହଁରେ ମାସ୍କ ଲାଗିଥିଲା ବେଳେ କଥା କହିଚ ଯଦି ଓଠ ଦିପାଖେ ରିଙ୍କଲ୍ ଆଉରି ଗାଢ ହେଇଯିବ ।'

ମଝିରୁ ହଠାତ୍ କହିଲା, 'ଆଚ୍ଛା ଅଞ୍ଜୁ ମାଉସୀ, ତମକୁ ମୁଁ ଅଞ୍ଜୁ ମାଉସୀ ଡାକିଲେ ଚଳିବ ତ ? ନା ତମର ନୂଆ ଇଂଲିଶ ନାଁ ରେ ଡାକିବି ? ମାଉସୀ ଡାକିବି କିନ୍ତୁ ଯୋଉ ନାଁ ପଛେ ହେଉ ।'

ଏଲି ହସି କହିଲା, 'ଅଞ୍ଜୁ ମାଉସୀ ବୋଲି ଡାକ । ମୋତେ ଖୁସୀ ଲାଗିବ । ତମର ଡାକ ନାଁ ରୁନା, ମୋର ମନେଅଛି ।'

'କାହ୍ନୁ ଜାଣେ ତମ କଥା । ହେଲେ କାଇଁକି ବେଶୀ ଖୁସି ହେଲାନି ତମେ ଆସିବା ଖବର ଶୁଣି ।'

ଅନ୍ୟ ଅଚିହ୍ନା ଲୋକଙ୍କ ଆଗରେ କାହ୍ନୁ ବିଷୟରେ କେତେ କେମିତି କହିବା ଠିକ୍ ହେବ ବୁଝିନପାରି ଚୁପ୍ ରହିଲା ଏଲି । ଚଉକୀର ମୁହଁକୁ ଆଦେଶ ଦେଲାଭଳି କହିଲା ଅରୁଣା, 'ବାସ୍, ଏଥର ଜମା ହଲଚଲ ନହେଇ ଚୁପଚାପ୍ ବସିଥା । ମୁଁ କହିଲେ ମୁହଁ ଧୋଇବ ।'

ସୁନାପିଲା ପରି ନିଶ୍ଚଳ ଆଉଜି ଯାଇଥିବା ମୁହଁଟିର ଦୃଷ୍ଟି ବାରମ୍ବାର ଏଲି ନିଜ ଉପରେ ବାରୁଥାଏ । ଅରୁଣା କହିଲା, 'ଏ ମା, ଭୁଲିଗଲି, ତମ ଆଖି ଦିଇଟା ବୁଜିଦିଏଁ, ଏଣିକି ତେଣିକି ଚାହିଁଲେ ତମ ରିଲାକ୍ସ କରିବ କେମିତି ?'

ଦୁଇଟି ଗୋଲ୍ ଆକାରର ତୁଳା ନେଇ ଗୋଟିଏ ଗିନାରେ ବୁଡାଇ ରୁନା କହିଲା, 'ଏଇ ହେଲା ଗୋଲାପ ଜଳ । ବାସ୍, ଦେଖ କେମିତି ରିଲାକ୍ସ କରିଦେବ ଆଖିକୁ ।'

ମୁଖାଭିତରୁ ଅନେଇଥିବା ଅନିଚ୍ଛୁକ ଆଖି ଦିଇଟିକୁ ତୁଳାରେ ଢାଙ୍କିଦେଇ, ଷ୍ଟୁଲଟାଏ ଟାଣି ଏଥର ଏଲି ପାଖରେ ବସିପଡ଼ିଲା ରୁନା । ପଚାରିଲା, 'କାହ୍ନୁ କୁ ଦେଖିଲେ ଚିହ୍ନିବ ତମେ ଅଞ୍ଜୁ ମାଉସୀ ? ତା ଫଟୋ ତ ଦେଖିନଥିବ ?'

'ଦେଖିଚି ।'

ଏଲି କହିଲାନାହିଁ ଯେ ଖାଲି ଫଟୋ ନୁହେଁ, କାହ୍ନୁକୁ ବି ସେ ଦେଖିସାରିଚି, ଆଜି ସକାଳେ ।

ଅରୁଣା ଏଥର ଉପସ୍ଥିତ ତା ଗ୍ରାହକଙ୍କୁ ଭୁଲିଯାଇ ଗପିବସିଲା ନାନା ଆଡୁ ନାନା କଥା । ତା ମାଙ୍କ କଥା, ତା ପିଲାଦିନେ ମନେଥିବା ବିଧୂ ଅଜାଙ୍କ ସାଙ୍ଗେ ସାନ ସାନ ଘଟଣା କଥା, ତା ବାହାଘରକୁ ବିଧୂ ଅଜା କିଛି ଦେଇନଥିଲେ ବୋଲି ପରେ କ୍ଷତିପୂରଣ ଦେବାକୁ କଥା ଦେଇଥିବା କଥା, ପୁଣି ଦିଆ ବଚନ ପୁରା କରିବା ପୂର୍ବରୁ ତାଙ୍କର ଇହଲୀଳା ତ୍ୟାଗ କରିବା କଥା । ବିଧୂ ଅଜାଙ୍କ ଗୁଣ ଗରିମା, କେମିତି ତାଙ୍କ ଯୋଗ୍ୟ ନଥିଲେ ତାଙ୍କର ସହର କି ପରିବାର ଲୋକେ, ଏମିତି କି ରାଜ୍ୟର ଲୋକେ ।

ମୁହଁରେ ବୋଳ ଶୁଖିଯାଇଥିବା ସ୍ତ୍ରୀ ଚଉକୀ ଉପରୁ ଗୁଁ ଗୁଁ ହେଇ କହିଲା, 'ଉଠିବି ଏଥର ?'

'ଓ, ରହ । ହଉ ଉଠ, ସମୟ ହେଇଗଲା, ଚାଲ ମୁହଁ ଧୋଇପକାଅ । ଟିକିଏ ବେଶୀ ବେଳ ହେଇଚି, କିନ୍ତୁ ସେଥିରେ ତମର ଲାଭ, କ୍ଷତି ନାହିଁ ।'

ରୁନା ତଉଲିଆ ନେଇ ଡାହାଣ କାନ୍ଥ ପାଖ ବାଥରୁମ୍ କୁ ବାଟ ଦେଖାଇଦେଲା ସ୍ତ୍ରୀ ଟିକୁ । ସେଇଠି ଦୁଆରମୁହଁ ପାଖେ ଠିଆହେଇ ତାକୁ କିଛି ନିର୍ଦ୍ଦେଶ ଦେଉ ଦେଉ ଏଲିକୁ ଆଉରି କହିଲା, 'ପ୍ରଭୁ ଜଗନ୍ନାଥଙ୍କ ଅସୀମ ଦୟା ଯେ ବିଧୂ ଅଜାଙ୍କ ଶେଷବେଳକୁ ଅନ୍ତତଃ ଆମେ ସବୁ ଥିଲୁ । ନହେଲେ କ'ଣ ହେଇଥାନ୍ତା ତାଙ୍କର, ସେଇ ଭଗବାନଙ୍କୁ ଜଣା ।'

ଏଲି ଏଥର ପଚାରିଲା, 'ଶେଷବେଳ ବୋଲି କହୁଛ ଯେ, ସେଭଳି ଅସୁସ୍ଥ ଥିଲେ କି ? ଦୁର୍ଘଟଣା ରେ ସିନା...'

ଏକଥାର ଶୀଘ୍ର ଉତ୍ତର ଦେବା ଦରକାର ନଥିଲା ଭଳି ରୁନା ଗ୍ରାହକଙ୍କ ଆଡ଼େ ଅନେଇଲା । ମୁହଁ ଧୋଇସାରି ଆସି ଦର୍ପଣରେ ନିଜକୁ ପ୍ରଶଂସାରେ ଦେଖୁଥିବା ମହିଳାକୁ ନିଜ ଆଙ୍ଗୁଠି ଟିପରେ ଟିକିଏନାକୁ କ୍ରିମ ଲଗାଇବାକୁ ଦେଇ ରୁନା ତାକୁ ପଚାରିଲା, 'କଣ ଖୁସି ? କେମିତି ଦେଖାଗଲ ଏଥର ? ଦିଇ ଧାପ ଗୋରା ହେଇଗଲ ନା ନାହିଁ ?'

କ୍ରିମ ଲଗେଇ ଏପାଖ ସେପାଖରୁ ନିଜ ମୁହଁକୁ ଅନେଇ ମହିଳା ଆହୁରି ଖୁସି ଦେଖାଗଲେ । ତାଙ୍କଠୁ ଟଙ୍କା ନେଇ ଠାକୁର ଫଟୋକୁ ଛୁଇଁଇ ଆଲମାରୀ ଡ୍ରୟାରରେ ରଖିଦେଲା ଅରୁଣା, ବଳକା ପଇସାପାଇଁ ଅପେକ୍ଷା କରିଥିବା ମହିଳାଙ୍କ ହାତକୁ ସାନ ଡବାଟିଏ ବଢ଼େଇଦେଇ କହିଲା, 'ଏଇଟିକି ନିଅ, ପଇସାକୁ ଲୋଭ କରନାହିଁ, ମୁହଁରେ ଲଗେଇ ଶୋଇବ, ସାତଦିନରେ ଦେଖିବ କ'ଣ ଦେଖାଯାଉଚ ।'

ଏ ଭିତରେ ଆଉ ଗ୍ରାହକଟି ଓ ପରିଚାରିକା ଯାଇସାରିଥିଲେ । ଖାଲି ହେଇଥିବା ଫ୍ୟାନ ତଳ ଚଉକୀଟିରେ ବସିପଡ଼ି ରୁନା କହିଲା, 'ଓଃ, କି ଶାନ୍ତି । ଆଜି ଆସିବେନି କେହି, ସରିଲା ମୋ ଦିନଟି । ହଁ, କଣ ପଚାରୁଥିଲ ଟି ତମ ବାପାଙ୍କ କଥା ?'

ପୁଣି ଘଡ଼ି ଦେଖି କହିଲା, 'ଜାଣ, ପାର୍ଲର ବନ୍ଦ ହେବାକୁ ଆଉରି ଅଧଘଣ୍ଟା ଉପରେ ଅଛି । କହିବ ଯଦି ତମକୁ ବଢ଼ିଆ ଫେସିଆଲଟିଏ ଦେଇଦେବି, ଦେଉଦେଉ ଗପ କରିବା । ଘଣ୍ଟାଏ ଲାଗିବ କିନ୍ତୁ ।'

ଏଲି ଢମାରୁ ପ୍ରସ୍ତୁତ ନଥିଲା ଏଥିଲାଗି । କହିଲା, 'ଖାଲି ସେମିତି ଗପ କରିବା ଚାଲ, ଅଯଥା କାମରେ ବ୍ୟସ୍ତ ରହିବା କାହିଁକି ?'

ରୁନା ହସିଲା, କାଚବାସନ ଝଣଝାଣ ଭାଙ୍ଗିବାର ହସ । 'ମୁଁ ତମଠୁ ପଇସା ନେବିନି ମ । ତମେ ମୋ ମାଉସୀ ପରା । ମୋ ତରଫରୁ ଗିଫ୍ଟ ହେବ ଇଏ । ଲେଟେଷ୍ଟ ଟେକନିକ୍ ର ଫ୍ରୁଟ୍ ଫେସିଆଲ, ସଜ ଫଳ କୋରି ତମ ମୁହଁରେ ଲେପ ଦେବି ।'

ଏଲି ତଥାପି ଟଳିବାକୁ ଚେଷ୍ଟା କଲା, 'ଆଜି ଥାଉ ପ୍ଲିଜ୍, ପୁଣି କେବେ...'

ଏଲିର ହାତ ଟାଣି ନିଜ ସ୍ୱରରେ ଆଉରି ଟିକିଏ ଗେହ୍ଲା ଛିଦି ମିଶେଇ ରୁନା କହିଲା, 'ଆଉ କେବେ ଆସିବ ତମେ ମୋ ଘରକୁ କହିଲ ? ଉଠ ।'

ନିଜ ହାତରେ ଆପ୍ରନ ପିନ୍ଧାଇଦେଇ ଦର୍ପଣ ସାମ୍ନାରେ ଏଲିକୁ ବସାଇଦେଇ ସେ କହିଲା, 'ଲଣ୍ଡନରୁ ଆସିଚ ବୋଲି ଆମ ଉପରେ ତମର ବିଶ୍ୱାସ ନାଇଁ ନୁହେଁ ? କିଛି ଶସ୍ତା ବାଜେ ଜିନିଷ ମୁଁ ବ୍ୟବହାର କରିବିନି, ତମ ଆଖିଆଗରେ ଲେପ ତିଆରି କରିବି, ହେଲା ? କିଛି କୋଉଠି ଆପତ୍ତି ଥିଲେ ମନା କରିଦେବ, ମୁଁ ମାନିଯିବି ।'

ଗୋଟି ଗୋଟି ତା ଆଗରେ ଶିଶି ଡବାର ଲେବଲ ଦେଖାଇଲା ରୁନା, କହିଲା, 'ବିଶ୍ୱାସ ହେଉଚି ନା ନାଇଁ କହିଦିଅ । ମୁଁ ବି କହିରଖୁଚି, ମୋ ହାତର ଫେସିଆଲ ତମେ ଯଦି ଲଣ୍ଡନର ପାର୍ଲର ରେ ବସି ମନେ ପକେଇବ...।'

କପାଳ ଗାଲ ମୁହଁରେ ରୁନା କ୍ରିମ୍ ଲଗେଇଦେଲା, ତାର ସ୍ପର୍ଶ କୋମଳ, ଚିକ୍‌କଣ । ଚଟପଟ୍ ଆଙ୍ଗୁଳିମାନ ବେକ ପଛ ମୁଣ୍ଡ ସମେତ ଘଷି ଦେଉଚି, କେତେବେଳୁ ଟଣକୁଥିବା ମାଂସପେଶୀଙ୍କୁ ମନେଇନେଉଚି ତା ମିଠା ହାତ ।

'ଇସ୍ ! କଣ କରିରଖିଚ ମ ତମ ଚମକୁ, ଅଞ୍ଜୁ ମାଉସୀ ? ମୋର ମନେହେଉଚି ଇଣ୍ଡିଆକୁ ଆସିଲାଦିନୁ ଭଲକରି ଥରେ ହେଲେ ମୁହଁକୁ ସଫା କରିନଥିବ । ମୁହଁରେ କିଛି ଖରାପ ସାବୁନ ଲଗାଉଚ ନା କଣ ? ଓ ସେଇଥି ଲାଗି ଏଡ଼େ ଶୁଖିଲା ହେଇଚି ତମ ଚମ । ମନେରଖିଥା, ମୁହଁରେ ଏଣୁ ତେଣୁ ସାବୁନ ଜମା ଲଗେଇବନି ଟି...'

ମୁହଁ, ଓଠ ଚାରିପାଖ ସାରା ପଟପଟ କ୍ରିମ୍ ଭିତରୁ ଏଲି କହିଲା, 'ମୋ ବାପାଙ୍କର ନିଶ୍ଚେ ଭଲ ଯତ୍ନ ନେଇଥିବ ତମେ ନାଇଁ ?'

'ତମେ ନାଇଁ ମ, ତୁ କହିବ ମୋତେ । ହେଲେ କେଡ଼େ ସୁନ୍ଦର ଓଡ଼ିଆ କହୁଚ ମ ତମେ । କାହ୍ନୁ ତ ବ୍ୟସ୍ତ ହେଉଥିଲା, କହୁଥିଲା, ମୁଁ ମୋ ନାନୀକୁ ଭେଟିବି କାହିଁକି, ମୁଁ ତ ଇଂଲିଶରେ କଥାବାର୍ତ୍ତା କରିପାରିବିନି ।'

'କଣ ପଢୁଚି ସେ ?'

'ଆରେ ଆରେ, କଥା କହନି ମ ମାଉସୀ । ଖାଲି ଆଖି ବୁଜି ଚୁପ୍‌ଚାପ୍ ରହ, ମୋ କଥା ଶୁଣ । କାହ୍ନୁ ପରା ପଢୁଚି ନବମରେ ।'

ରୁନାର କଥା ଏଣିକି ଆଉଟିକିଏ ବ୍ୟକ୍ତିଗତ ଆଡ଼କୁ ମୁହେଁଇଲା । 'ତମକୁ ନିଷ୍ଟେ ଲୋକେ ଚୁଗୁଲି କରିଥିବେ ନାଇଁ, ଯେ ମୁଁ କାହ୍ନୁକୁ ନେଇଆସିଲି ତା ବାପାଙ୍କ ପଇସା ଲୋଭରେ ? ଖୁବ୍ ଲୁଣ ମସଲା ଲଗେଇ କହିଥିବେ ମୋ ନାଁରେ, ନାଇଁ ମାଉସୀ ?'

ଏଲି ଅଡୁଆରେ ପଡ଼ିଗଲା । ଏତେବେଳକୁ ରୁନା ନରମ ବ୍ରଶ୍‌ଟିଏ ନେଇ ବୋଳ ଲଗାଉଥିଲା ତା ମୁହଁ ସାରା । ମୁଣ୍ଡ ଲାଡ଼ି ନାହିଁ କଲା ଏଲି । ରୁନା କହିଲା, 'ବ୍ୟସ୍ତ ହୁଅନି, ଆଉ କେହି ତ ନାହାନ୍ତି ଏଠି ଶୁଣିବାକୁ । ମୁଁ ଜାଣେ କିଏ ସବୁ ମୋ ନାଁରେ ଚୁଗୁଲି କରିଥିବେ ।'

ସେଇଠୁ ବିଭିନ୍ନ ସମ୍ଭାବିତ ବନ୍ଧୁ ପରିଜନଙ୍କ ନାଁ ନେଇ ରୁନା କହିଲା କ'ଣ ସବୁ ସେମାନେ କହିଥିବେ ଓ ତାଙ୍କୁ ଗାଳିକଲା । ରୁନାର ବ୍ରଶ୍ ଏତେବେଳକୁ ଏଲିର ବେକ ଓ ଦୁଇ ହାତ ଉପରେ ବୋଳ ଲାଗଉଥାଏ, ଠିକ୍ ସେମିତି ଯତ୍ନଶୀଳ, କଅଁଳ ତା ହାତ, ତା ଦାଡୁଆ ସ୍ୱରରେ ଠିକ୍ ଓଲଟା ।

'ତମେ ମାଉସୀ ଯାହା ମୋ ଉପରେ ଧାରଣା କରି ଏଠିକି ଆସିଥିବ ନା, ମୁଁ ଠିକ୍ ଅନୁମାନ କରି ପାରୁଚି । ହେଲେ ଏତିକି ଜାଣିଥାଅ, କାହ୍ନୁ ମୋ ପାଖରେ ରହିଲା ଦିନୁ ପାହୁଲାଟାଏ ତା ଖର୍ଚ୍ଚ ବାବଦରେ କେହି ମୋତେ ଦେଇନାହାନ୍ତି । ଏତେ ଭଲଲୋକୀ ଯିଏ ସବୁ ଦେଖାଉଚନ୍ତି, କେହି ଭଲା ଜଣେ ସେତେବେଳେ ଆଗେଇ ଆସିଥିଲେ ତାକୁ ପାଖରେ ରଖିବାଲାଗି ?'

ଏଲିର ମୁହଁ, ବେକ ପୁରା ଦୁଇହାତରେ ବୋଳ ଲଗା ସରିଥାଏ । ଦି ଆଖି ବି ବୁଜା ହେଇଚି ଓଦା ତୁଳାରେ । ପାଖ ଚଉକୀରେ ବସି ଅରୁଣା ତାର ଉଦ୍‌ଗାର ଚଲେଇଚି ।

'କେମିତି ମୁଁ ପାଳିଚି କାହ୍ନୁକୁ, ମୋ ଛଡ଼ା କିଏ ଜାଣେ ? ଦିନାକେତେ ପ୍ରାଇଭେଟ ସ୍କୁଲରେ ଚାକିରୀ କରିଥିଲି, ସିଏ ବି ଚାଲିଗଲା । ଯୋଗକୁ ବିଉଟିସିଆନ୍ ଟ୍ରେନିଂ ଟାଏ ମିଳିଗଲା, ଏବେ ଏଇ ପାର୍ଲର ଟି ଭରସା । ମୋ ବର କଥା ତ ଜାଣିଥିବ କି ନାଇଁ । ମୋତେ ପଇସା ଦିଏ ନାହିଁ, ତେଲେଙ୍ଗା ଭୁଷୁଣ୍ଡା ଲୋକଟାଏ ମୋତେ ଫସେଇଦେଇ ବାହାହେଲା । ଭାରୀ କଞ୍ଜୁସ୍, ନିଜ ଉପରେ ସବୁ ପଇସା ଉଡ଼େଇଦେବ ପଛେ ମୋତେ ଦେଲାବେଳକୁ ତା ପ୍ରାଣ ବାହାରିଯିବ । ପ୍ରଥମେ ଭାରୀ କଳିଗୋଳ ହେଉଥିଲା ଆମର, ମାଡ ମରାମରି ଯାଏଁ କଥା ଯାଉଥିଲା । ଏବେ ଚଳିଯାଉଚି ।'

ଏଲି ମନକୁ ଆସୁଥିବା ପ୍ରଶ୍ନ ସବୁ ଚିପି ରଖିବାକୁ ଚେଷ୍ଟା କରୁଥିଲା ମନେ ମନେ । ଶେଷଟି ହେଲା, 'ତୋ ସ୍ୱାମୀ ରାଜି କେମିତି ହେଲା କାହ୍ନୁକୁ ରଖିବାକୁ ?'

ତା ମନ ପଢ଼ିନେଲା ପରି ରୁନା କହିଲା, 'ସମସ୍ତଙ୍କ ସାଙ୍ଗେ ମୋ ବରର ବି ଧାରଣା ଥିଲା ଯେ କାହ୍ନୁ ସାଙ୍ଗରେ ବିଧୂ ଅଜାଙ୍କ ଧନ ସମ୍ପତ୍ତି ଯାକ ବଳେ ଟାଣିହେଇ ଆସିଯିବ । ସମସ୍ତଙ୍କ ସାଙ୍ଗେ ମୋର ବର ବି ପଚାରେ, କୁଆଡ଼େ ଗଲା ସେ ପଇସା ? ମୁଁ କି ଜାଣେ ଗୋ କୁଆଡ଼େ ଗଲା ? ତମେ କହ, ଯଦି ଜାଣିଥିବ ?'

ଏଲିର ମୁହଁ ଉପରେ ବୋଳ ଏବେ ମୁଖାଟିଏ ପିନ୍ଧିଲା ପରି ଲାଗୁଥିଲା । ରୁନା କହୁଥିଲା, 'ବିଧୂ ଅଜା ଯେତେବେଳେ ଏକୁଟିଆ ଯାଇ ଗାଁରେ ରହିଲେ, ମୋ ବାପା ବି ରିଟାୟାର କରି

ରହୁଥାନ୍ତି ସେଇ ପାଖରେ ବୋଲି ମୁଁ ଯାଇ ତାଙ୍କ ପାଖରେ ରହେ, ମୋ ବର ସାଙ୍ଗେ କଳିଗୋଳ ଯେବେ ହୁଏ । କାହ୍ନୁ ବିଚରା ମା ଛେଉଣ୍ଡ ହେଇ ବାର ହୀନସ୍ତା ହେଉଥାଏ, କେହି ବନ୍ଧୁ ବାନ୍ଧବ ବିଧୂ ଅଜାଙ୍କ ମୁହଁ ଚାହୁଁନଥାନ୍ତି । ତାଙ୍କ ସ୍ତ୍ରୀ ଟି ତ ବିଚାରୀ ମଲା । ସିଏ ବଞ୍ଚିଥିଲା ବେଳେ ତାକୁ ଦିନରାତି ଖାଲି ଜଳାଇ ମାରିଲେ ଅଜା, ଏଣେ ମଲାପରେ ଶୋକ ଏମିତି ବଳିଗଲା ଦେଖିବ କ'ଣ, ଖିଆପିଆ ଛାଡ଼ି ମଦ ପିଇ ଖାଲି ପାଗଳ ପରି ହେଉଥାନ୍ତି । କାହ୍ନୁକୁ ବା ପଚାରେ କିଏ ? ଆମେ ଥିଲୁ ବୋଲି ଅଜା ବଞ୍ଚି ରହିଲେ, ନହେଲେ ସେ ଏକ୍ସିଡେଣ୍ଟ ନହେଇଥିଲେ ବି ବେଶୀ ଦିନ ଆଉ ତାଙ୍କର ନଥିଲା ଜାଣ । ମୋ କାହ୍ନୁଟି ଆରେଇ ଗଲା ମୋତେ ସେଇ ଦିନୁ । ମୋ ପାଖ ଛାଡ଼େନାହିଁ, ଅଜା ବଞ୍ଚିଥିଲା ବେଳେ ବି । ସେଇଦିନୁ ମୋ ପାଖେ ରଖିଯାଇଚି । ଏଥିରେ ଆଉ ଷଡଯନ୍ତ୍ର କ'ଣ କଲି କହିଲ । କୋଉଠି ଆଉ ଛାଡ଼ିଥାନ୍ତି ତାକୁ ?'

ଟିକିଏ ବେଳ ଚୁପ୍ ରହି ପୁଣି ଯେତେବେଳେ ତା ସ୍ୱର ଶୁଭିଲା, ଏଲି ବାରିଲା, ରୁନା କାନ୍ଦୁଚି ।

'ମୋ ବର ପାଖେ ମୁଁ କ'ଣ  ଜମା ରହିଥାନ୍ତି କହୁଚ ? ଖାଲି କାହ୍ନୁ ଲାଗି ଫେରିଲି । ଫେରିଆସିଲି ଏ କାଳିଆ ଭୁଷୁଣ୍ଡା ପାଖକୁ, ହେଲେ କହିରଖିଲି, ମୋ ଉପରକୁ ହାତ ଉଠେଇଲୁ ମାନେ ଜାଣିଥା ।'

ନାକୁଆ କାନ୍ଦୁରା ସ୍ୱରରେ ହସିପକେଇଲା ରୁନା, ଏଥର କାଚ ବାସନ ଭାଙ୍ଗିଲା ନାହିଁ, ପାଣି ପୁରିଲା ଗିନା ମୀନ ବାଜିଲା ପରି ଶୁଭିଲା ପ୍ରାୟ । କହିଲା, 'ସେଇ ବିଧୂ ଅଜାଙ୍କ ଗଡାଘରକୁ ଅନେଇବସିଚି ସେଇ ଭୁଷୁଣ୍ଡା ବି । କେବେ ଶିକା ଛିଣ୍ଡିବ । ହେଲେ ମଝିମଝିରେ ତାର ଧୈର୍ଯ୍ୟ ବି ଭାଙ୍ଗେ ଯେ...'

ପଙ୍ଖା ପବନରେ ମୁହଁର ଲେପ ଶୁଖିବାକୁ ଛାଡ଼ିଦେଇ ଭିଜା ତୁଳାପଟି ତଳେ ଆଖିବୁଜି ବସିଚି ଏଲି । ପରିବେଶଟି ଏତେ ନୂଆ ଯେ ମଝି ମଝିରେ କିଛି କ୍ଷଣ କୋଉଠି ବସିଚି ମନେ ବି ପଡୁନାହିଁ ସ୍ପଷ୍ଟକରି । କେବଳ ସ୍ୱରଟିଏ ଶୁଭୁଚି ରୁନାର, ଆଉ କେଉଁ ଗ୍ରହ ରୁ ଆସିଲା ପରି ।

ଏଥର ପୁଣି ବଖାଣୁଥିଲା ରୁନା ତା'ର ଦାଢୁଆ ସ୍ୱରକୁ ଫେରିଯାଇ, 'ତମ ବାପା ବି ଖାସା ଲୋକ ଜଣେ ଥିଲେ ଗୋ ମାଉସୀ । ଅଧା ସାହେବ ତ ଅଧା ଆଦିବାସୀ । ପ୍ରଥମେ ଯେବେ ଚାଷ କରିବେ ବୋଲି ଗାଁ କୁ ଆସି ରହିଲେ, କିଛିଦିନ ଭଲ ରହିଲେ, ଦିନେ ଦେଖିଲା ବେଳକୁ ମୁଣ୍ଡରେ ବୋଝେ ବାଳ ଦାଢ଼ି ବଢ଼ିଗଲାଣି, ଘରେ ରୋଷେଇବାସ ନାହିଁ, ଲୁଗାପଟାର ବି ଠିକଣା ନାହିଁ, ଯାଇ ଗାଁର ମଳିମୁଣ୍ଡିଆ ସାଙ୍ଗେ ମିଶି ମଦ ପିଉଚନ୍ତି । ବୁଝାସୁଝା କରି ତାଙ୍କୁ ମୋ ବାପା ନିଜଘରକୁ ନେଇଆସିଲେ । ଓଃ, କ'ଣ କହିବି ତାଙ୍କ ଦଶା ।'

ଟିକିଏ ରହି ରୁନାର ଟିକିଏ ନରମିଲା ସ୍ୱରରେ କହିଲା, 'ତମେ ଜ୍ୟୋତିକୁ ଜାଣିନା ମୁଲକୁ,  ନାହିଁ ? ତମ ସାବତ ମା କୁ ? ଦୁଃଖିନୀ ଟିଏ । ଏମିତି ଜୀବନ ଏମିତି ମରଣ କାହାକୁ ନହେଉ ।'

ଏଲି ନିଜ ମୁହଁକୁ ହାତକୁ ଛୁଇଁ ପରଖିଲା । ସୌନ୍ଦର୍ଯ୍ୟ-ବୃଦ୍ଧିକାରକ ଫଳ ଲେପ ଏବେ ଶୁଖି ବୁଢ଼ାପଟା ଭଳି ହେଇଗଲାଣି ।

ସେ ମୁଖା ଭିତରୁ ଅଖାଦୁଆରେ ଅଳ୍ପ ଓଠ ଖୋଲି ସେ ପଚାରିଲା, 'ମୁହଁ ଧୋଇବି ?'

ରୁନା କହିଲା, 'ବ୍ୟସ୍ତ ହୁଅନା, ମୁଁ ଘଡ଼ି ଦେଖୁଚି, ଆଉ ପାଞ୍ଚ ମିନିଟ୍ । ତମେ ଅଞ୍ଜୁ ମାଉସୀ ବାହା ହେଇନା ନାଇଁ ? ଭଲ କରିଚ । ବାହାହେଇ କୋଉ ଝିଅ ସୁଖରେ ରହିଲାଣି ସତରେ ? କିଏ ମୁହଁ ପୋତି ରହୁଚି, କିଏ ପାଟିତୁଣ୍ଡ କରି, ଏତିକି । ଯାହା ହାତ ଧରି ରହିଥିବ, ସିଏ ତମ ପଛରେ ଦଗା ଦେଉଥିବ, ନହେଲେ ସନ୍ଦେହ କରି ତମ ତ୍ରୁଟି ଧରିଥିବ । ଦିଇଟା ଯାକ ଦୁଃଖ ।'

ଏଲିକୁ ଖୋଳପାଟି ବ୍ୟତିବ୍ୟସ୍ତ କଲାଣି, ଉପରର ଶୁଖିଲା ଲେପ ମୁହଁଚମର ପୁରୁଣା ଭାଙ୍ଗ ଜାଗା ମାନଙ୍କରେ ଫାଟିଲାଣି, ସେ ଜାଣିପାରୁଚି ।

'ଆଚ୍ଛା ମାଉସୀ, ଗୋଟିଏ କଥା କହିବି, ଆମ ବିଧୂଅଜା ତାଙ୍କ ଗୋରା ସ୍ତ୍ରୀ କୁ ସନ୍ଦେହ କରୁଥିଲେ କି, ମାନେ ତମ ମା କୁ ?'

ଆଖପାଖ ମୁହଁଚମରେ ଗୁଡ଼ାଏ ଫାଟ ହେଇଯିବାକୁ ଦେଇ ଏଲି ଏଥର ମୁହଁ ଖୋଲିଲା, 'ନା ଜମା ନୁହେଁ କେବେବି ନୁହେଁ ।'

'ନାଇଁ ? ହେଲେ ଅଞ୍ଜୁ ମାଉସୀ, ତମେ ତ ତାଙ୍କ ଝିଅ ଯେତେହେଲେ, ତମେ କେମିତି ଜାଣିବ ସ୍ୱାମୀ ସ୍ତ୍ରୀଙ୍କ ଭିତିରି କଥା ?'

ଏଲି ନିଜ ଆଖି ଉପରୁ ତୁଳା କାଢ଼ିଦେଇ ସିଧା ହେଇ ବସିଲା, କହିଲା, 'ଆଉ ହେବନି ମୋ ଦେଇ । ମୁହଁ ଧୋଇପକାଏଁ ଏଥର ।'

ଅରୁଣା ଉଠିପଡ଼ି ତା ହାତକୁ ତଉଲିଆ ଦେଲା, ବାଥରୁମ୍ କବାଟ ଖୋଲିଦେଲା ।

ବେସିନ ଉପରେ ମୁହଁକୁ ଆଗ ଗୁଡ଼ାଏ ପାଣି ଛାଟିପକେଇଲା ଏଲି । ବତୁରା ଖୋଳପାକୁ ଧୋଇଦେଲା ଆସ୍ତେ ଘଷି ଘଷି । ତଉଲିଆରେ ମୁହଁ ପୋଛି ଦର୍ପଣ ଦେଖିଲା ବେଳକୁ ରୁନା କହୁଥିଲା, 'ସେଇ ସନ୍ଦେହ ଜ୍ୟୋତି ବିଚାରୀ କୁ ଖାଇଲା । ଚାକିରୀ କରିବାକୁ ଘରୁ ବାହାରିଯାଏ, ଏଣେ ବିଧୂ ଅଜା ସବୁଆଡ଼ୁ ଏକୁଟିଆ ହେଇ ଘରେ ବସିଥାନ୍ତି । ପହଞ୍ଚିଲା କ୍ଷଣି ବିଚାରୀ ଥକା ମାରିନଥିବ, ଘରେ ଛାଡ଼ିଯାଇଥିବା ପିଲାଟିର ମୁହଁକୁ ଚାହିଁନଥିବ, ବର୍ଷିଯିବ ଯାବତ୍ କଥାର କୋରଡ଼ା । କ'ଣ ନା କାହାକୁ ଭେଟିଲୁ, କିଏ ସେ ଅମୁକ । ଦିନ ରାତି ଯଦି ତମ ବରଟା ପଛରେ ପଡ଼ିଯିବ, ତମେ କରିବ କ'ଣ କହୁନା ? ବିଚାରୀ ବେକରେ ଦଉଡ଼ି ଦେଇଦେଲା ଶେଷକୁ । ହେଲେ କାହାର କ'ଣ ଗଲା, କୋଳର ପିଲାଟି ଅନାଥ ହେଇଗଲା ସିନା ।'

ବାହାର କବାଟ ଖୋଲି କିଏ ଜଣେ ପଶିଲା, ଡକାଡ଼କି କି ଠକ୍ ଠକ୍ କିଛି ନାଇଁ । ସିଧା ଆସି ଘର ଭିତରେ ।

ସିଏ କାହ୍ନୁ ବୋଲି ଏଲି ଚିହ୍ନି ପାରିଲା । ୟାକୁ ଇ ତ ଦେଖିଥିଲା ସେ ସକାଳେ ହୋଟେଲ ରେ । ସାଇକେଲରେ ଆସିଚି ଧଇଁସଇଁ ହେଇ, ଝାଳରେ ଟୀ-ସାର୍ଟ ଟା ଓଦା ପ୍ରାୟ । ଠିକ୍ ଏମିତି ଦିଶୁଥିବେ ବାପା ଦିନେ ।

ଋନା କହିଲା, 'ଦେଖୁଛ ତ, କହୁନଥିଲି ? ଖେଳରୁ ତାକୁ ଫୁରସତ ନାହିଁ, ଫେରୁଚି ଆସି ଅନ୍ଧାର ହେଲାବେଳକୁ ।'

ଭିତରକୁ ଯାଇ ସାରିଥିଲା କାହ୍ନୁ । ପଛରୁ ଋନା ପାଟିକଲା, 'ଆରେ ନମସ୍କାର ନକରି ଚାଲିଯାଉଚୁ । ଇଏ କିଏ ଆସିଚନ୍ତି ଚିହ୍ନିଲୁ ଦେଖି, ଆ ଏଠିକି ମୋ ସୁନାଟା ।'

ପୁଣି ସେ କହିଲା, ଏଲିକୁ, 'ଏମିତି ପରା ଜିଦ୍‌ଖୋର ଟୋକା । ମୋ ମୁଣ୍ଡ ଖାଇଗଲାଣି । ତା ସ୍କୁଲ ମାଷ୍ଟରମାନେ କହନ୍ତି ଭାରୀ ବୁଦ୍ଧିଆ ବୋଲି, ହେଲେ ପାଠରେ ମନ ଦେଲେ ସିନା ।'

ତାପରେ ସ୍ୱର ଧୀମା କରି ଏଲି ଆଡ଼କୁ ଟିକିଏ ନଇଁପଡ଼ି କହିଲା, 'ହେଲେ କିଛି ଚିନ୍ତା କରିବାର ନାହିଁ ମ ମାଉସୀ, ଖୁବ୍ ବଡ଼ ମଣିଷଟିଏ ହେବ ଆମ କାହ୍ନୁ ତମେ ଦେଖିବ ।'

ଏଲି ଋନାର ମୁହଁକୁ ଅନେଇ ଭାବୁଥିଲା କହିବା ଠିକ୍ ହେବ କି ନାହିଁ, ଆଜି ସକାଳେ କାହ୍ନୁର ବଡ଼ ମଣିଷ ହେବାର ଆଦ୍ୟ ଲକ୍ଷଣ ଯାହା ସେ ଦେଖିଚି । ଋନା ହୁଏତ ଆଉ ସବୁ ମାଆଙ୍କ ପରି ପୁଅର ଅବାଟକୁ ମୁହାଁଇବା ଦେଖିପାରୁନାହିଁ, ଆକଟ କରିବା ଦୂରର କଥା ।

ଟିକିଏ ବେଳ ପରେ ଜାମା ଜୋତା ବଦଳି ମୁହଁ ଧୋଇ କାହ୍ନୁ ଆସିଲା । ଦୃଷ୍ଟି ଭୂଇଁରେ ରଖି ଗୋଟିଏ ପ୍ରସାଧନ ଚଉକୀରେ ବସିପଡ଼ିଲା ।

ଅରୁଣା କହିଲା, 'ନାନୀ ଇଏ, ତୋ ଅଞ୍ଜୁ ନାନୀ । ନମସ୍କାର କର ।'

ହାତ ଅଣ୍ଟନାକୁ ଉଠେଇ ମୁଣ୍ଡ ଟୁଙ୍ଗାରି ଛୋଟିଆ ନମସ୍କାର ଟିଏ କଲା କାହ୍ନୁ । ବଡ଼ କଳା ଆଖିର ଦୃଷ୍ଟି ବି ଉଠିଲା କ୍ଷଣକ ଲାଗି, ଛିଟିକାଏ ହେବ ହସ ଥାଇ । ୫ଣ ୫ଣ ହସିପକେଇ ଋନା କହିଲା, 'କିରେ ସବୁଦିନିଆ ପରି କଣ ହଉଚୁ । କେବେ ଭାବିଥିଲୁ ନାନୀକୁ ଦେଖିବୁ ବୋଲି, ଆମ ଘରକୁ ସିଏ ଆସିବେ ବୋଲି ?'

ଏଲିକୁ ସିଧା ଅନେଇ ଏଥର କାହ୍ନୁ କହିଲା, 'ତମ ଫଟୋ ଦେଖିଚି, ତମ ପିଲାଦିନର ।'

'ବାପାଙ୍କ ପାଖରେ ?'

ମୁଣ୍ଡ ଟୁଙ୍ଗାରି ହଁ କଲା କାହ୍ନୁ । ଅରୁଣା କହିଲା, 'ଏ ମା, ଦେଖୁଚ, ତମକୁ ମୁଁ କପେ ଚା ବି ଦେଇନି । ରାତିରେ ଆଜି ଖାଇକରି ଯିବ ଆମ ଘରେ ମାଉସୀ, ଯାହା ଥିବ ଆମ ଗରିବ ଘରେ ।'

ଶୀଘ୍ର ଶୀଘ୍ର ଆଲମାରୀ ଡ୍ରୟାର ରେ ଚାବି ପକେଇ ଅରୁଣା ଭିତର ଘରକୁ ଚାଲିଗଲା । ଏଲି ଭାବୁଚି, ଏକଥା ସେ ଆଜିଯାଏଁ କାହିଁ ଭାବିନଥିଲା, ଯେ ଦେଖାହେଲେ କାହ୍ନୁ ସାଙ୍ଗେ କି ଗପ

କରିବ ? ସ୍କୁଲ, ପାଠରୁ କଥା ଆରମ୍ଭ କଲା ଏଲି । କାହ୍ନୁର ଦିପଦ ଉତ୍ତର ସବୁ କଥା ଲାଗି । ଏଲି ନିଜ ବିଷୟରେ କହିଲା, ନିଜ ଡାକ୍ତରୀ ପେଶା, ଭାରତରେ ତାର କାମ । କାହ୍ନୁ ଏଯାଏଁ ତାକୁ ଥରେ ହେଲେ ସମ୍ବୋଧନ ନକରି କଥା କହୁଥିଲା, ଦି ଚାରିଟା ସହଜ ପ୍ରଶ୍ନ ବି ପଚାରିଥିଲା । କିଛି ସମୟ ଦୁହେଁ ଚୁପ୍ ହେଇଗଲା ପରେ କାହ୍ନୁ ହଠାତ୍ ବ୍ୟକ୍ତିଗତ କୁ ଚାଲିଆସି ପଚାରିଲା, 'ତମେ ମୋତେ ଭେଟିବାକୁ ଆସିଚ ସତରେ ? ପୁରୀକୁ ?'

'ଖାଲି ପୁରୀକୁ କାହିଁକି, ଭାରତକୁ ଆସିବା ଲାଗି ବି ମୁଖ୍ୟ କାରଣରୁ ଗୋଟିଏ ତୁ ହିଁ ଥିଲୁ ।'

'ଏତେଦିନ ପରେ ?'

ଏଲି ର ପୁଣି କୈଫୟତ ଦେବାର ପାଳି, ଯେ ସେ ଜାଣିନଥିଲା କାହ୍ନୁର ଥିବା କଥା ।

ଏଥର ଠାଇକିନା ପ୍ରଶ୍ନଟି, 'କାହିଁକି ମୋ ପାଖକୁ ଆସିଚ ?'

ଟିକିଏ ଭାବି ଏଲି କହିଲା, 'ଠିକ୍ କରି କହିପାରିବନି ରେ କାହ୍ନୁ । ଦେଖିବାକୁ ଇଚ୍ଛା ହେଲା, ବାସ୍ ସେତିକି । ତୋର କେବେ ଇଚ୍ଛା ହେଇଚି କି ତୋର ଭାଇ ଭଉଣୀଙ୍କୁ ଦେଖିବା ଲାଗି ?'

କାହ୍ନୁ ଟିକିଏ ଆଶ୍ଚର୍ଯ୍ୟ ରେ ଅନେଇଲା ଏଲିକୁ, ଅଳ୍ପ ହସି କହିଲା, 'ନା ତ । ତମ କଥା ମୋର ମନେ ନଥିଲା । ଏବେ ସେଦିନ ମମି କହିଲା ବୋଲି ।'

'ବାପାଙ୍କ କଥା ମନେପଡ଼େ ?'

କାହ୍ନୁ କେଇଟିକ୍ଷଣ ନିଷ୍ପଳ ଅନେଇଲା ଏଲି ମୁହଁକୁ । ମୁଣ୍ଡ ହଲେଇ ନାହିଁ କଲା । ତା ମୁହଁରେ ରାଗ କି ଶ୍ଳେଷ କିଛି ହେଲେ ନଥିଲା । ଏଲି ପୁଣି ପଚାରିଲା; 'ବାପାଙ୍କୁ ତ ନିଶ୍ଚେ ତୋର ମନେଥିବ । ତୁ ବୋଧେ ଚାରି ପାଞ୍ଚ ବର୍ଷର ହେଇଥିଲୁଣି ।'

କାହ୍ନୁ ଅନ୍ୟ ଆଡ଼େ ଚାହିଁ କହିଲା, 'ଟିକେ ଟିକେ ମନେଅଛି । କିନ୍ତୁ ଏଠି ସମସ୍ତେ ଜାଣନ୍ତି ଡାଡି ମୋ ବାପା ବୋଲି ।'

ଏଲି ବୁଝିଲା, ଥାଉ ଏବେ ସେ କଥା । ପଚାରିଲା, 'ତୋ ମା ବିଷୟରେ ମୁଁ ଶୁଣିଚି, ଭାରୀ ଭଲ ମଣିଷ ଥିଲେ ସେ ।'

କାହ୍ନୁ ଚୁପ୍ ରହିଲା, ତାର ଦୃଷ୍ଟି ପୁଣି ଭୂଇଁରେ ଥିଲା । ଏଲି ଜାଣିଲା, ଏ ବିଷୟ ଆଉରି ଦୁରୂହ । ହଠାତ୍ ତାକୁ ଚମକାଇ ଦେଇ କାହ୍ନୁ କହିଲା, 'ମୋ ମା କୁ କେହି ଭଲ ପାଉନଥିଲେ, ମୁଁ ଜାଣିଚି । କାହିଁକି ତମେ ତା କଥା ଉଠାଉଚ ?'

ଏଲି ଥତମତ ହେଇଗଲା, କହିଲା, 'ମୁଁ ତ କାହିଁ ସେକଥା ଜାଣିନି ।'

କାହ୍ନୁ ଆଉ ଟିକିଏ ଚଡା ସ୍ୱରରେ କହିଲା, 'ମୁଁ ସାନ ହେଇଥିଲି । ହେଲେ ମୋ ମା କଥା ମୋର ମନେଅଛି । ତମେ କାହିଁକି ମୋ ପାଖକୁ ଆସିଚ ଅସଲ କଥାଟା କହୁନ କାହିଁକି ?'

ନିଜ ଅବିବେକୀ ପଣ କଥା ଏଇ ମାତ୍ର ଏଲି ମୁଣ୍ଡକୁ ଆସୁଥିଲା । କାଇଁକି ସେ ଏକଥା ଭାବିନଥିଲା ? କାହ୍ନୁ ଜୀବନର କ'ଣ ସବୁ ଘଟି ଯାଇଚି, ପିଲାଟି ଦିନରୁ ତା'ର କେଉଁଭଳି ଅନୁଭବ ମିଳିଥିବ, କିପରି ଦିନମାନ ସେ କାଟିଆସିଚି ସେ କଥା । ଏଲି ଏଥର ନିଉନ ହେଇ କହିଲା, 'ସରି କାହ୍ନୁ, ମୋର ଭୁଲ୍ ହେଇଚି । ଆଉ କେବେ ଉଠାଇବି ନାଇଁ ସେ କଥା । ହେଲେ ତୋତେ ମୁଁ ସତରେ ଭେଟିବି ବୋଲି ଆସିଲି, ତୁ ଯଦି ନ ଚାହିଁବୁ ଆଉ ଭେଟିବିନି ।'

ଏକଥାର ଜବାବ ଦେଲାନାହିଁ କାହ୍ନୁ । ଚା ନେଇ ଅରୁଣା ଆସିଲା, କାହ୍ନୁକୁ କହିଲା, 'ଗଲୁ ବାପା ଗ୍ୟାସ୍ ଚୁଲିରେ କ୍ଷୀରଟା ବସିଚି, ବନ୍ଦ କରିଦେବୁ ।'

କାହ୍ନୁ ଭିତରକୁ ଗଲାପରେ ଅରୁଣା ଏଲି ହାତକୁ ଚା କପ୍ ଦେଇ କହିଲା, 'ଗଲା କଥା ଆଉ ଖୋଳିତାଡ଼ି କି ଲାଭ ଏଲି ମାଉସୀ ? ଛାଡ଼, ଯେମିତି ଅଛି ସେ ଛାଡ଼ିଦିଅ ତାକୁ । ଯଥେଷ୍ଟ ହଇରାଣ ହେଲୁଣି ଆମେ ।'

ଚା ଟିକକ କଷ୍ଟରେ ଢୋକି ଏଲି କହିଲା, 'ବିଶ୍ୱାସ କର, ମୋତେ ଜଣାନାହିଁ ତମେ ହଇରାଣ ହେବା କଥା । ସରି ।'

ଚା ପିଉ ପିଉ ଓଠ ଚାପି ହସିଲା ଅରୁଣା । କହିଲା, 'କାହ୍ନୁ ମୋତେ ଛାଡ଼ି ଯିବନି । ତମେ ଫରେନ୍ ଯିବା ଲୋଭ ଦେଖେଇଲେ ବି ନୁହେଁ । ଆଉ ତମେ ମୋତେ କଣ ସାହାଯ୍ୟ କରିବ, ତାକୁ ପାଳିବା ଲାଗି ?'

'ତମେ ଭୁଲ ବୁଝିଚ ରୁନା, ମୁଁ ତାକୁ ବିଦେଶ ଯିବାକୁ ଡାକୁନାଇଁ ଏବେ । ହଁ, ତା ପାଠ ପଢ଼ାରେ କେବେ କିଛି ଦରକାର ପଡ଼ିଲେ ମୁଁ ଅଛି, ଏତିକି କହିବି ।'

ଅନାୟାସ ଚା ପିଉ ପିଉ ଅରୁଣା କହିଲା, 'ତା ମା ଯେମିତି ଦୁଃଖ ପାଇ ମଲା, ସେ କଣ ଜାଣିନି ଭାବିଚ ? ତା ବାପାର ଟଙ୍କା ପଇସା ଅଛି, ଗଣ୍ଡଗୋଳିଆ ହେଇ ହେଉ ପଛେ, ତା ବି ସେ ଜାଣେ । କାହାରି କାଇଁକି ତାକୁ ସହାଯ୍ୟ କରିବା ଦରକାର ହେବ ?'

ଏଲି ତୁନି ହେଇ ବସି ତା କଥା ଶୁଣିଲା ଆଉରି କିଛି ବେଳ । ଚା ସାରିଦେଇ କହିଲା, 'ହଉ ରୁନା, ମୁଁ ଉଠେ ଏଥର । ଚମତ୍କାର ଲାଗିଲା ତମର ଫେସିଆଲ ଟି, ତା ଦାମ ଟି କିନ୍ତୁ ମୋତେ ଦେବାକୁ ହେବ ।'

ମୁହୂର୍ତ୍ତକେ ମୁହଁ ଭାବ ବଦଳାଇ ଜିଭ କାମୁଡ଼ି ଏଲିର ପର୍ସ ଖୋଲୁଥିବା ହାତକୁ ଧରିପକେଇଲା ଅରୁଣା । 'ଅଞ୍ଜୁ ମାଉସୀ, ତମେ ରାଗିଇ କି ମୋ ଉପରେ ? ଛି, ଛି, ମୋ ମାଉସୀଠୁ ପଇସା ନେବି ?'

ଘରୁ ବାହାରି ଆସିଲା ବେଳେ ପୁଣି କେତେ କରି କହିଲା ଅରୁଣା, ତା ଗରିବ ଘରେ ଖାଇଦେଇ ଯିବାଲାଗି । ହେଲେ ଏଲି ମନାକଲା, କହିଲା ତାକୁ କଲିକତା ଯିବାକୁ ହେବ, 'ଗୁଡାଏ କାମ ଅଛି ରୁନା, ଟ୍ରାଭେଲ ଏଜେଣ୍ଟ କୁ ଫୋନ୍ କରି ଫେରିବା ଟିକେଟ ପକ୍କା କରିବାକୁ ହେବ । ଏଠି ରିକ୍ସା କୋଉଠି ମିଳିବ ?'

'ଆରେ, ତମେ ତ ଟାକ୍ସିରେ ଆସିଥିବ ବୋଲି ମୁଁ ଭାବିଥିଲି, ସାହେବ ଝିଅ ହେଇ ରିକ୍ସାରେ ଆସିଚ ତମେ ?'

ଏଲି କହିଲା, 'ଏଇ ଅଳ୍ପ ବାଟ ତ ହୋଟେଲ ଟା ।'

'ନାଇଁ, ଜମା ଅଳ୍ପ ବାଟ ନୁହେଁ । ଚାଇ ଗଳି ମୁଣ୍ଡରେ ରିକ୍ସାରେ ବସେଇ ଦେଇ ଆସିବି । ଆମ ଗାଡ଼ିଟା ଖରାପ ଅଛି, ନହେଲେ...'

ଗଳି ମୁଣ୍ଡରେ ପହଞ୍ଚି ଅରୁଣା କହିଲା, 'ଜୁହାର କରୁଚି ଗୋ ଅଞ୍ଜୁ ମାଉସୀ । ତମର ବିଲାତରେ କାହାଠୁ ଜୁହାର ପାଇବ, ଏଇଠୁ ନେଇକରି ଯାଅ । ହେଲେ ମୋ କାହ୍ନୁକୁ ନେବା କଥା ଆଉ କେବେ ହେଲେ ଭାବିବ ନାଇଁ ଗୋ, ମନକୁ ବି ଆଣିବ ନାଇଁ ।'

ଏଲି ତା କାନ୍ଧରେ ହାତ ଦେଇ କହିଲା, 'ମୁଁ ନିଜେ ହୁଏତ ଚାଲିଆସିବି କେବେ । ପାଖରେ କୋଉଠି ରହିବି, ଦେଖା ହେବ ।'

ଅରୁଣା କୁ ହଠାତ୍ ଜବାବ ପଇଟିଲା ନାଇଁ । ଭୂରୁ କୁଞ୍ଚାଇ କହିଲା, 'ତମେ ତମ ଦେଶ କୁ ଫେରିଯାଅ ମାଉସୀ, ତମର କି କଥାର ଅଭାବ କହିଲ ? କାହ୍ନୁ ମୋତେ ମା ବୋଲି ମାନିଚି, ଆମ ଦିହିଙ୍କ ଭିତରେ ଫାଟ ତିଆରି କଲେ ତମର କି ଲାଭ ?'

ଏଲି କହିଲା, 'ତମେ ତା ମା, ମୁଁ କ'ଣ ମନା କଲି । ଆଉ ମୁଁ ତା ବଡ଼ ଭଉଣୀ ନୁହେଁ ?'

ଅରୁଣା ତଥାପି ତା ହସର ପ୍ରତ୍ୟୁତ୍ତର ନଦେଇ କହିଲା, 'କାହ୍ନୁର ଭଲମନ୍ଦ ବୁଝିବାକୁ ମୁଁ ଅଛି । ଧରିନିଅ ମୁଁ ତାକୁ ଜନ୍ମ କରିଚି ।'

କହିବ କି ନାଇଁ ନ ଭାବୁଣୁ ଏଲି ମୁହଁରୁ ବାହାରିଗଲା, 'କାହ୍ନୁ କେମିତି ପିଲାଙ୍କ ସାଙ୍ଗେ ମିଶୁଚି, ତାର ଖିଆଲ ରଖିଚ ରୁନା ? ଆଜି ତାକୁ ଯେଉଁ ପିଲାଙ୍କ ମେଳରେ ଦେଖିଲି ମୁଁ, ମନ ଶାନ୍ତି ଲାଗୁନି । କୋଉ ବାଟରେ ସେ ଯାଉଚି ଖବର ରଖୁଚ ତ ?'

ଅରୁଣା ଏଥର ହସିଲା କହିଲା, 'କାହ୍ନୁର ମା ଯଦି ବଞ୍ଚିଥାନ୍ତା, ଧର ଏକୁଟିଆ ପାଳୁଥାନ୍ତା ତାକୁ, ତମେ ଆସି ଉପଦେଶ ଦିଅନ୍ତ ନା କ୍ଷୋତି ଶୁଣନ୍ତା ତମ କଥା ?'

'ହୁଏତ କହିଥାନ୍ତି ତାଙ୍କୁ ବି, ସୁଯୋଗ ପାଇଥିଲେ ହୁଏତ ସେ ଶୁଣନ୍ତେ ମୋ କଥା, ପୁଅଟି ତାଙ୍କର ଅବାଟରେ ଯାଉଛି ବୋଲି ଜାଣିଲେ ।'

'କାହାକୁ ତମେ ଅବାଟ କହୁଚ ମୁଁ ଜାଣିଚି । କାହ୍ନୁର ଭବିଷ୍ୟତ କଥା ତମକୁ ଚିନ୍ତା କରିବାକୁ ହେବନି ।'

'କିଏ ଜଣେ ନେତା ପାଳିଥିବା ଗୁଣ୍ଡା ଦଳରେ ସେ ଟ୍ରେନିଂ ପାଉଚି, ତମେ ଖବର ରଖିଚ ସେ କଥା ?'

'ଗୁଣ୍ଡା ଦଳ କାହିଁକି ହେବେ ? ରାଏ ସାହେବଙ୍କ ଲୋକେ ସବୁ ଗୁଣ୍ଡା ବୋଲି ତମକୁ କିଏ କହିଲା ? ଏତେ ବଡ଼ ରାଜ ନେତା, ଏତେ ସମ୍ପତ୍ତି ପ୍ରତିପତ୍ତି ତାଙ୍କର, ତମେ ଜାଣିଚ ? ଯେପରି ଲୋକ, ପୁଅ ପରି ପାଳିଚନ୍ତି ସେମାନଙ୍କୁ, ଯାହାଙ୍କୁ ତମେ ଦେଖିଲ ବୋଲି କହୁଚ ।'

ଅରୁଣାର ମୁହଁରେ ଏଥର ଯେଉଁ ହସ ଥିଲା, ଧିମା ବିଜୁଳିବତୀ ଆଲୁଅରେ ଚିହ୍ନିବାକୁ ଟିକିଏ ବେଳ ଲାଗିଲା ଏଲିକୁ ।

'ବୁଝିଲ ମାଉସୀ, ଆମ କାହ୍ନୁ ଯେମିତି ମୋ ପୁଅ, ସେମିତି ରାଏ ସାହେବଙ୍କ ପୁଅ । କାହ୍ନୁ କଥା ସିଏ ବୁଝିବେ, ମୋତେ କଥା ଦେଇଚନ୍ତି । ତା ବାପା ଜେଜେଙ୍କ ଠାରୁ ଯାହା ମିଳିବା କଥା ସିଏହିଁ ତାକୁ ଦିଏଇ ପାରିବେ, ଆଉ କେହି ନୁହେଁ ।'

ଏଥର ଏଲିର ମୁହଁରୁ ହସ ପୁରାପୁରି ଲିଭିଯାଇଥିଲା । ପଚାରିଲା ସେ, 'ରୁନା, କାହ୍ନୁର ବାପା ଜେଜେବାପା କଣ ରାଏ ସାହେବଙ୍କ ଜିମାରେ ଛାଡ଼ି ଥାଆନ୍ତେ କାହ୍ନୁକୁ ? ସୁଖ ସୁବିଧା ଟିକିଏ ଲାଗି ଏମିତି ବାଟ କାହିଁକି ଦେଖାଉଚ ପିଲାଟିକି ?'

ହଠାତ୍ ସ୍ୱର ଭଙ୍ଗେଇ ଅରୁଣା ରାସ୍ତାରେ ଘଣ୍ଟି ବଜେଇ ଯାଉଥିବା ରିକ୍ସାଟାଏ ଡାକିଲା, 'ଏ ରିକ୍‌ସା, ରିକ୍‌ସା । ତମେ ରିକ୍ସାବାଲା ଆଜିକାଲି ଡାକିଲେ ଶୁଣୁନ କିରେ ?'

ତାପରେ ଅତି ଆପଣାର ସ୍ୱରରେ କହିଲା ଏଲିକୁ, 'ଏଥର ମୋର ଉପଦେଶ ବି ଟିକେ ଶୁଣ ଅଞ୍ଜୁ ମାଉସୀ । ତମେ ଏଥର ବାହା ହେଇ ପଡ଼ । ବର ଅଭାବ ହେବେ ନାହିଁ । ଏତେ ବଡ଼ ଫରେନ ପଢୁଆ ଡାକ୍ତର ତମେ, ତମକୁ କୋଉ କଥା ଜଣା ହେବ ?'

ଏଲି ରିକ୍ସାକୁ ଚଢ଼ିଲାବେଳେ ଅରୁଣାର ଝଣତ୍‌କାର ହସ ଶୁଭିଲା, 'ଆମ ଗରିବ ଲୋକଙ୍କ ଚିନ୍ତା ଛାଡ଼ିଦିଅ । ତମ ବିଲାତରେ ସୁଖରେ ରହ ଯାଇ ।'

ରିକ୍ସା ସିଟ୍‌ରେ ବସି ଏଲି ଦେଖିଲା, ତଳେ ଅରୁଣା ଠିଆ ହେଇଚି, ନିଜ ମାଟିରେ ଗୋଡ଼ ଥାପି ତା ରାଜ୍ୟରୁ ବହିଷ୍କାର ଅଦେଶ ଦେଉଚି କେଉଁ ମହାରାଣୀ ଅବା ସିଏ । ଏଲି ହସିପକେଇ କହିଲା 'ନାହିଁ ରୁନା । ମୁଁ ଫେରିବି ଏଠିକି । ମୋ ଦେଶ, ମୋ ଘରକୁ । ଗରିବ ଲୋକଙ୍କ ପାଇଁ ଚିନ୍ତା ବି କରିବି, ତାଙ୍କ ସେବା ବି ।'

ରିକ୍ସା ଚାଲି ଯାଉ ଯାଉ ଏଲି ଫେରି ଦେଖିଲା, ଅରୁଣା ଠିଆହୋଇଯାଇ ଅନେଇଥିଲା ତା ଯିବା ବାଟକୁ । ଏଲିର ମନେପଡ଼ିଗଲା ଅନେକ ବର୍ଷ ତଳର ଅରୁଣାକୁ । ଘଡ଼ି ଘଡ଼ିକେ ରୂପ ବଦଳୁଥିବା ବାଦେଇ, କଜେହୀ, ଗେହ୍ଲେଇ, ସୁନ୍ଦରୀ ରୁନାକୁ । ହାତ ହଲେଇ ବଡ଼ ପାଟିରେ କହିଲା ଏଲି, ' କାହ୍ନୁକୁ କହିଦେବ, ନାନୀ ଆଶୀର୍ବାଦ ଦେଉଚି, ସେ ଭଲ ମଣିଷ ହେଉ । ତମକୁ ବି ଆଶୀର୍ବାଦ, ଜସ୍ମିନ ପାର୍ଲର ଆଉରି ବହୁତ ବଡ଼ ହେଉ । ଭଲରେ ଥାଅ ରୁନା ।'

ରିକ୍ସା ଭିଡ଼ ଗହଳି ସରୁ ଗଳି ରାସ୍ତାରୁ ବାହାରି ଆସିଲା । ବେକ ପିଠିର ଝାଳ ଭିଜା ଦେହରେ କାହୁଁ ଅଚାନକ ଶୀତଳ ପବନ ଆଉଁସିଗଲା । ଅଜାଣତରେ କେତେବେଳେ ଏଲିର ବଢ଼ିଯାଇଥିବା ନିଶ୍ୱାସ ଗତି ଆପେ ଧିମେଇଗଲା । ଆଗରେ ଅଚାନକ ବିସ୍ତାର, ସମୁଦ୍ରର ଅନ୍ଧାର ପକ୍ଷ ରାତିର ଲକ୍ଷେ ତାରା ଚାହିଁଚନ୍ତି ତଳକୁ, ସୃଷ୍ଟି ଆରମ୍ଭ ଦିନରୁ ସେମିତି ନିର୍ନିମେଷ । ତଳେ ଗାଢ ଅନ୍ଧାରରେ ଆତ୍ମଲୀନ ସମୁଦ୍ର । ଧଳା ଧାଡ଼ି ଧାଡ଼ି ଲହଡ଼ିଙ୍କ ଧାଁ ଦଉଡ଼ ଖେଳ ଚାଲିଚି । ତାଙ୍କ

ଗଣତିରେ କେତେ ପୁରୁଣା ହୋଇଥିବ କେଜାଣି, ଏ ଘରୁ ସେ ଘର, ଏ ଗଳିରୁସେ ଗଳି ଧାଇଁଥିବା ମଣିଷମାନଙ୍କ ଏଇ ବ୍ୟତିବ୍ୟସ୍ତ ସହରଟି ।

ଆଖି ପୋଛି ବୋଳ ମାନୁନଥିବା କୋହକୁ ଆୟତ୍ତ କରୁକରୁ ଏଲି ମନେ ପକେଇଦେଲା ନିଜକୁ ଫେରିଯିବାର ପ୍ରସ୍ତୁତି ଏବେ । ଅନେକଦିନରୁ କେତେମତେ ତିଆରି କରିଥିବା ଏଇ କାର୍ଯ୍ୟକ୍ରମ ଟି ଶେଷ ହେଇଚି । ଯା ପରବର୍ତ୍ତୀ କାମ ଚିଠା ତିଆରି କରିବା କଥା ସେ ମନକୁ ଆଣିନାହିଁ ଏ ଯାକେ । ଏଇ ସହରଟି, ଅଚିହ୍ନା କିନ୍ତୁ ପିଲାଦିନର ଅଲିଭା ଛବି କେତୋଟି ଛପାହେଇ ଯାଇଚି ଯାରି ଦେହରେ । ପାଖ କେଉଁଠୁ ଭାସି ଆସୁଥିବା ଧୂପ ବାସ୍ନା ଝଲାକଏ ବି ଚିହ୍ନା । ରିକ୍ସାର ବଡ଼ ବଡ଼ ଚକ ଦୁଇଟି ଉପରେ ସିଟରେ ଏମିତି ବସି ଖୋଲା ପବନ କୁ ବେଢ଼େଇ ହେଇ ଯିବାର ଅନୁଭବ, ପରିଚିତ ଆଉ ସ୍ୱପ୍ନୀଳ । ପ୍ୟାଡେଲ ସାଙ୍ଗେ ବୁଲୁଥିବା ଚକ ସାଙ୍ଗେ ମିଶି ଗଡ଼ି ଯାଉ ଯାଉ ପଛପାଖ ଜୀବନ ଓ ସାମ୍ନାରେ ଥିବା ଦିନ ମାନଙ୍କରୁ ଏକାବେଳେ ଛିଟିକି ଯାଇ କିଛି ଫାଙ୍କା ମିଳିଗଲା ପରି ଲାଗିଲା କାହିଁକି ଏଲିକୁ । ଗତକାଲି କି ଆସନ୍ତାକାଲି ବିଷୟରେ କିଛି ଆଉ କରାଯାଇନପାରେ ଏବେ ।

ଅଥବା କେବେ ବି । ପବନକୁ ମୁହଁ କରି କେବଳ ଯାତ୍ରା କରାଯାଇପାରେ ହୋଟେଲ ପହଞ୍ଚିଲା ଯାଏଁ ଅନ୍ତତଃ ।

ଏଥର ମୁହଁ ପୋଛି ନେଉ ନେଉ ନିଜ ଗାଲରେ ହାତ ମାରିଲା ସେ, ଆଉ ଦେଖିଲା ନିଜ ଚମ ହାତକୁ କଅଁଳ ଲାଗୁଚି, ଆଉ ସତେଜ । ଟିକିଏ ଆଗର ଫ୍ରୁଟ୍ ଫେସିଆଲ୍ ମନେପଡ଼ିଲା, ପୁରୁଣା ମଇଳା ଚମକୁ ସେ ଘଷି ଘଷି ଧୋଇପକାଇଚି ପରା ।

ଏଣିକି ଯେମିତି ଟୁରିଷ୍ଟ ହେଇ ଦେଖୁଚି ସେ । ଦେଖୁଚି ବି ତାକୁ ଦେଖୁଥିବା ନିର୍ଲିପ୍ତ ପ୍ରକୃତିକୁ । ଛାଇଅନ୍ଧାର ସମୁଦ୍ର ବାଲିରେ ମୁଣ୍ଡରେ ହାତ ଦେଇ ହତାଶ ଭଙ୍ଗୀରେ ବସିଥିବା ଯୁବକଟି, ବିଦେଶୀ କାର୍‌ଟିଏ ରୁ ଓହ୍ଲେଇ କଳରୋଳରେ ଦନ୍ତ ବିଞ୍ଚି ବିଞ୍ଚି ବାଲିକୁ ଓହ୍ଲେଇ ଯାଉଥିବା ପରିବାରଟି, ଅଥବା ଟିକକ ଆଗରୁ ନିଶବ୍ଦରେ ଲୁହ ପୋଛୁଥିବା ଏଲି, କେମିତି ଦଶୁଥିବେ ସେମାନଙ୍କ ଦୂରନ୍ତ ଆଖିରେ ? ବୋଧେ କିଛି ଭିନ୍ନ ନୁହେଁ ଆଉରି ଅଗଣିତ ଚିତ୍ର ଠାରୁ, ଯାହା ପ୍ରତି କ୍ଷଣ ଆଙ୍କି ହେଇ ଲିଭିଯାଉଥାଏ ତାଙ୍କ ଆଗରେ, ଯୁଗଯୁଗାନ୍ତରୁ । ଅଳ୍ପ କିଛି ବେଳ ଲାଗି ହେଉ ପଛେ, ଏଲି ମନସ୍ଥ କଲା ଆପଣାକୁ ଦେଖିବାଲାଗି, ଦୂର ନକ୍ଷତ୍ରଟିଏ ବା ଦୃଷ୍ଟି ସେପାରି ସାନ ତରଙ୍ଗଟିରେ ଆସୀନ ହେଇ । ନିଜକୁ, ନିଜ ଚାରିଆଡକୁ, ଅତୀତ ଭବିଷ୍ୟତର ଅଧାଲିଭା ଅଥବା ଅସ୍ପଷ୍ଟ ଛବି ସବୁକୁ ଏକମାତ୍ର ମିଳିଥିବା ଦୂରବୀନ୍ ଟି ନେଇ ଦେଖିବାର ଝୁଙ୍କଟିଏ ତାକୁ ଡୁବାଇଦେଲା ପରବର୍ତ୍ତୀ କିଛିକ୍ଷଣ ।





**ଯଶୋଧାରା ମିଶ୍ର**

ଜନ୍ମ ସମ୍ବଲପୁର । ରାଉରକେଲାରେ ସ୍କୁଲ, ରେଭେନ୍‌ସା କଲେଜରୁ ବି.ଏ. ଓ ବାଣୀବିହାରରୁ ଏମ୍.ଏ. । ଜବଲପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି ।

୧୯୮୦ରୁ ମଧ୍ୟପ୍ରଦେଶର ବିଭିନ୍ନ ସରକାରୀ କଲେଜରେ ଇଂରାଜୀ ସାହିତ୍ୟରେ ଅଧ୍ୟାପନା, ତଥା ଦୁଇବର୍ଷ ଦିଲ୍ଲୀ ସାହିତ୍ୟ ଏକାଡେମୀରେ ଚାକିରୀ । ସମ୍ପ୍ରତି ଦିଲ୍ଲୀରେ ବସବାସ ଓ ମଧ୍ୟପ୍ରଦେଶ ସରକାରଙ୍କ ଦିଲ୍ଲୀସ୍ଥିତ କାର୍ଯ୍ୟାଳୟରେ ପଦସ୍ଥ ।

ଗଳ୍ପ ସଂକଳନ 'ଦ୍ୱୀପ ଓ ଅନ୍ୟାନ୍ୟ ଗଳ୍ପ' 'ଜହ୍ନରାତି,' 'ଦେଖଣାହାରି' ଓ 'ରେଖାଚିତ୍ର' ଓ ଉପନ୍ୟାସ 'ପକ୍ଷୀଜନ୍ମ' ପ୍ରକାଶିତ । ହିନ୍ଦୀ ଓ ଇଂରାଜୀରୁ ଦୁଇଟି ଉପନ୍ୟାସ ଅନୁବାଦ ଏବଂ କିଛି କବିତା ତଥା ଅନ୍ୟ ଲେଖା ମଧ୍ୟ ପ୍ରକାଶିତ । ଦୁଇଟି ଗଳ୍ପ ସଂଗ୍ରହ ହିନ୍ଦୀକୁ ଅନୁଦିତ ।

କଥା ସଂସ୍ଥା ଦ୍ୱାରା ପ୍ରକାଶିତ 'ବେଷ୍ଟ ଅଫ୍ ଦି ନାଇନ୍‌ଟୀଜ୍' ଗଳ୍ପ ସଂଗ୍ରହରେ ତଥା ଅନେକ ବିଶିଷ୍ଟ ଓଡ଼ିଆ ହିନ୍ଦୀ ଓ ଇଂରାଜୀ ସଂକଳନରେ ଗଳ୍ପ ଓ କବିତା ସ୍ଥାନିତ ।

ଓଡ଼ିଶା ସାହିତ୍ୟ ଏକାଡେମୀ (୧୯୯୦), ପୁସ୍ତକ ମେଳା ପୁରସ୍କାର (୧୯୯୦), ଝଙ୍କାର ପୁରସ୍କାର (୧୯୯୫), କଥା ପୁରସ୍କାର (ଦିଲ୍ଲୀ ୧୯୯୬) ଏବଂ ଅକ୍ଷୟ ସ୍ମୃତି ସମ୍ମାନ ପୁରସ୍କାର (୨୦୦୪)ରେ ପ୍ରାପ୍ତ ।

